# ଭାଗବତ କଥା

ଅଷ୍ଟମ ଖଣ୍ଡ

ଲେଖକ

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଶ୍ରୀ ଅନନ୍ତ ମିଶ୍ର

ଅନୁବାଦ

ଡକ୍ଟର ଭଗବାନ ପଣ୍ଡା

ପ୍ରକାଶକ



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ଅଷ୍ଟମ ଖଣ୍ଡ

ପ୍ରକାଶକ

**ଶ୍ରୀ ଅନନ୍ତ ମିଶ୍ର**

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**

କଟକ-୭୫୩୦୦୨

ପ୍ରଥମ ସଂସ୍କରଣ

**୧୯୮୩**

ପ୍ରଚ୍ଛଦ

**ଶ୍ରୀ ଅଧୀତ ମୁଖାର୍ଜୀ**

ମୁଦ୍ରଣ

**ସଦାନନ୍ଦ ପ୍ରିଣ୍ଟିଂ ପ୍ରେସ୍**

କଟକ

ମୂଲ୍ୟ

ବନ୍ଧାଇ-ପନ୍ଦର ଟଙ୍କା

ସାଦା ବାର ଟଙ୍କା

# BHAGABAT KATHA

**8th Part**

**Sri Prabhudata Brahmachari**

Publisher

**Sri Anant Misra**

**Cuttack Students' Store**

Cuttack-753002

First Edition

1983

Price : Deluxe Rs. **15**/-

Popular Rs. **12**/-

# ସୂଚୀ

# ପ୍ରଥମ ସୃଷ୍ଟି

ମହୀଂ ପ୍ରତିଷ୍ଠାମଧ୍ୟସ୍ୟ ସୌତେ ସ୍ୱାୟମ୍ଭୁବୋ ମନୁଃ ।
କାନ୍ୟନ୍ୱତିଷ୍ଠଦ୍ ଦ୍ୱାରଣି ମାର୍ଗାୟାବରଜନ୍ମନାମ୍ ।।

## ରୂପ୍‌ପନ୍ଥ

(ଭାଗ-୩-୨୦-୧)

ଶୌନକ ପୁଛେ—ସୂତ ! ବିଦୁରକୀ ବାତ ବତାଓ ।
ପୁନି ଜୋ କହୀ କଥା ତାହି ଅବ ସୌମ୍ୟ ସୁନାଓ ।।
କୃଷ୍ଣ କଥା ଅତି ବିମଲ ଗଙ୍ଗ ସମ ଯହ ଅଘହରନୀ ।
ଭବସାଗର କେ ପାର କରନ କୁଁ ଦୃଢ଼ତର ତରନୀ ।।
ଖର, କୁକର, ସୂକର ସରିସ, ବୃଥା ଧରି ତନୁ ବହହିଁ ।
ହତଭାଗୀ ମୃତବତ୍ ପୁରୁଷ, ଜୋ ନ କଥା ଶୁନି ସୁଖ ଲହହିଁ

ଯେ କୌଣସି କାର୍ଯ୍ୟର କିଛି ନା କିଛି କାରଣ ରହିଛି । ସୃଷ୍ଟି ରଚନା ପ୍ରଥମ ରୂପ ଅତି ସୂକ୍ଷ୍ମ ; କିନ୍ତୁ ସେହି ସୂକ୍ଷ୍ମ ରୂପ, ପରେ ସ୍ଥୂଳରୂପ ଧାରଣ କରେ । ବିଭିନ୍ନ ପ୍ରକାର ଅସୁବିଧା ହେତୁ ରହିବା ଦର ଖଣ୍ଡିଏ ତିଆରି କରିବା ପାଇଁ ମନରେ ସଂକଳ୍ପ ଜାତ ହୁଏ । ସଂକଳ୍ପ ସହିତ ମନରେ ଘରର ରୂପରେଖ ସ୍ୱତଃ ସୃଷ୍ଟି-ହୋଇଯାଏ । ସେଥିପାଇଁ ଯେଉଁ ଯନ୍ତ୍ର କରାଯାଏ ସେଥିରେ ଇଚ୍ଛାର ସ୍ଥୂଳରୂପ ରୂପାୟିତ ହୁଏ । ଘର ଯେତେବେଳେ ତିଆରି ହୋଇଯାଏ, ସେତେବେଳେ ସାଧାରଣ ଲୋକେ ଘରର ପ୍ରଶଂସାରେ ଶତମୁଖ ହୋଇଉଠନ୍ତି । ଯେଉଁ ଘର ତିଆରି ହୋଇସାରିବା ପରେ ଲୋକେ ଜାଣନ୍ତି, ତାହା ତିଆରି କରିଥିବା ଲୋକର ମନରେ ବହୁ ଆଗରୁ ତିଆରି ସରିଥିଲା । ତା'ପୂର୍ବରୁ ଏହା କାରଣ ରୂପରେ ଥିଲା । ପ୍ରଥମ କାରଣ କିଛି ନ ଥିଲେ ଘର ତିଆରି ହୋଇପାରି ନ ଥାନ୍ତା । ମୁଁ ହିନ୍ଦୀଙ୍କର କାରଣ ଅତି ସାଧାରଣ ।

ପଥରମୂର୍ତ୍ତି ତିଆରି କରୁଥିବା ଲୋକ ପଥରରେ ଭଗବାନ୍ ବିଷ୍ଣୁଙ୍କ ମୂର୍ତ୍ତି ତିଆରି କରେ ; କିନ୍ତୁ ପ୍ରଥମେ ମୂର୍ତ୍ତିନିର୍ମାତା ତା'ମନରେ ମୂର୍ତ୍ତିର ଚିତ୍ର ଅଙ୍କନ କରେ । ପରେ ଛେଣି ଆଦି ନେଇ, ସେ ନିଜ ମନର କଳ୍ପିତ ମୂର୍ତ୍ତିକୁ ଖୋଳି ଖୋଳି ତିଆରି କରିଥାଏ । ଯେତେବେଳେ ମୂର୍ତ୍ତି ତିଆରି ହୋଇଯାଏ, ସେତେବେଳେ ଲୋକେ କହନ୍ତି, ଶିଳ୍ପୀର ମୂର୍ତ୍ତି ଅତି ମନୋହର ; କିନ୍ତୁ, ସେ ମୂର୍ତ୍ତି ଶିଳ୍ପୀ ମନରେ ବହୁପୂର୍ବରୁ ତିଆରି ହୋଇସାରିଥିଲା । ଶ୍ରୀବିଷ୍ଣୁଙ୍କମୂର୍ତ୍ତି ଶିଳ୍ପୀ ମନରେ ଅବ୍ୟକ୍ତ ରୂପରେ ଥିଲା । ନିର୍ମିତ ପ୍ରସ୍ତର ମୂର୍ତ୍ତିରେ ତାହା ବ୍ୟକ୍ତ ହୋଇଛି । ଶିଳ୍ପୀ ଅବ୍ୟକ୍ତଶକ୍ତିଠାରୁ ବ୍ୟକ୍ତ କରିବାର କଳା ଲାଭ କରିଥାଏ ; କାରଣ ସମସ୍ତେ ଅବ୍ୟକ୍ତ ପାଷାଣର ବିଷ୍ଣୁ-ମୂର୍ତ୍ତିକୁ ବ୍ୟକ୍ତ କରିପାରନ୍ତି ନାହିଁ । କେବଳ ସାମର୍ଥ୍ୟ ଥିବା ଲୋକହିଁ ଅବ୍ୟକ୍ତକୁ ବ୍ୟକ୍ତ କରିବା ନିମିତ୍ତ ସମର୍ଥ ହୋଇଥାଏ ।

ଏହି ଜଗତର ପ୍ରବାହ ନିତ୍ୟ ଓ ଶାଶ୍ୱତ । ଏହାର ଆଦି ନାହିଁ କି ଅନ୍ତ ନାହିଁ । ଅନନ୍ତକାଳରୁ ଏହା ପ୍ରବାହିତ ହୋଇଆସୁଛି, ଅନାଦିକାଳ ପର୍ଯ୍ୟନ୍ତ ଏହିପରି ପ୍ରବାହିତ ହେଉଥିବ । ସେହି କାଳର ଇଚ୍ଛାରୁ ବ୍ରହ୍ମା ଜନ୍ମଗ୍ରହଣ କଲେ । ବ୍ରହ୍ମାଙ୍କ ସ୍ମୃତିରୁ ପ୍ରାଚୀନ ମୁନିଋଷିଗଣ ଓ ସଂସାରର ସମସ୍ତ ଉପକରଣ ସୃଷ୍ଟି ହେଲେ ; କାରଣ ଭୂତ ପ୍ରଚ୍ଛନ୍ନ ସଂସାର ବ୍ରହ୍ମାଙ୍କ ମନରେ ସ୍ୱତଃ ପ୍ରକଟିତ ହୁଏ । ଏହାକୁ ସୂକ୍ଷ୍ମ-ସୃଷ୍ଟି କହନ୍ତି । ସୂକ୍ଷ୍ମ ସୃଷ୍ଟି ଅନ୍ତର୍ଗତ ପଦାର୍ଥ ଗୁଡ଼ିକରେ ବାସନାର ପ୍ରାବଲ୍ୟ ଦେଖାଦେଲେ ସେଗୁଡ଼ିକ ସ୍ଥୂଳରୂପ ଧାରଣ କରନ୍ତି । ଶ୍ରୀ ଭଗବାନ୍ ଜ୍ୟୋତିର୍ମୟ ପ୍ରକାଶ ସ୍ୱରୂପ । ସେହି ପ୍ରକାଶଠାରୁ ଯେ ଯେତେ ଦୂରେଇ ରହେ ସେ ସେତିକି ଅନ୍ଧକାର ଆଡ଼କୁ ଅଗ୍ରସର ହୁଏ । ତମ ବା ଅନ୍ଧକାର ପ୍ରତି ଆଗେଇବା ହିଁ ସ୍ଥୂଳତାକୁ ଗ୍ରହଣ କରିବାର ନିଦର୍ଶନ । ମୁନିଋଷିଗଣ ବ୍ରହ୍ମାଙ୍କଠାରୁ କିଛି ଦୂରରେ ଅଛନ୍ତି । ତାଙ୍କଠାରୁ ଯଥାକ୍ରମେ ପ୍ରଜାପତି, ମନୁ, ମନୁପୁତ୍ର, ମାନବ, ପଶୁ, ପକ୍ଷୀ, ବୃକ୍ଷ, ପାଷାଣାଦି ପ୍ରତ୍ୟେକ କିଛି କିଛି ଦୂରରେ ଅବସ୍ଥାନ କରନ୍ତି । ଏ ପ୍ରକାର ସ୍ଥୂଳତା-ଠାରୁ ନିଜକୁ ଦୂରେଇ ନେଇ ଯେ ଯେତେ ସୂକ୍ଷ୍ମତା ପ୍ରତି ଅଗ୍ରସର ହେବ, ସେ ସେତିକି ଭଗବାନଙ୍କର ନିକଟବର୍ତ୍ତୀ ହୋଇପାରିବ । ଏହାକୁ ସୃଷ୍ଟିଚକ୍ର କହନ୍ତି । ଏହା ନିତ୍ୟ ଚଳନଶୀଳ । ଏହାକୁ ହିଁ ସୃଷ୍ଟି, ପ୍ରଳୟ ଓ ଜନ୍ମ ମୃତ୍ୟୁର ପ୍ରଭାବ ବୋଲି କହନ୍ତି ।

ଭଗବାନଙ୍କ ନାଭିକମଳରୁ ବ୍ରହ୍ମା ସର୍ଷ୍ଟି ହେଲେ । ବ୍ରହ୍ମାଙ୍କଠାରୁ ଦଶ ମାନସ ପୁତ୍ର, ମନୁ ଓ ଶତରୂପାକନ୍ୟା ଜନ୍ମହେଲେ । ଏହିପରି ସୂକ୍ଷ୍ମରୁ ସ୍ଥୂଳରୂପ ଉପସ୍ଥିତି-ଲାଭ କଲା । ଏହା ଲକ୍ଷ୍ୟ କରି ଶୌନକ ମହର୍ଷି ସୂତଙ୍କୁ ପ୍ରଶ୍ନକଲେ—ହେ ମହର୍ଷେ ! ଆପଣ, ବରାହାବତାର ଓ ହିରଣ୍ୟାକ୍ଷ ଉଦ୍ଧାର କଥା ଶୁଣାଇଛନ୍ତି । ଭଗବାନ୍ଙ୍କ

କଥା ଶୁଣି ଶୁଣି ଜୀବନ ଯାପନ କରିବାରେ ହିଁ ମାନବ ଜନ୍ମର ସାର୍ଥକତା ସାଧିତ ହୁଏ । ମହାତ୍ମା ବିଦୁର ଜୀବନର ସଫଳତା ଅର୍ଜନ କରିଛନ୍ତି । ସେ ତୀର୍ଥଯାତ୍ରାଦ୍ୱାରା ନିଜର ଅନ୍ତଃକରଣକୁ ଶୁଦ୍ଧ କରିବା ସଙ୍ଗେ ସଙ୍ଗେ ଭଗବଦ୍ ଭକ୍ତିଦ୍ୱାରା ଇହକାଳ ଓ ପରକାଳକୁ ସାର୍ଥକ କରିଛନ୍ତି । ଏହି ପୃଥିବୀରେ ଗଙ୍ଗାଦେବୀ ଅବତୀର୍ଣ୍ଣା ହୋଇ ନ ଥିଲେ ଏବଂ ଭଗବତ୍ କଥାର ଚର୍ଚ୍ଚା ଆଲୋଚନା ନ ଥିଲେ, କେହି ଏ ସଂସାର ଦୁଃଖସାଗରକୁ ପାର ହୋଇ ଶାଶ୍ୱତ ଶାନ୍ତି ଓ ଅକ୍ଷୟ ସୁଖର ଅଧିକାରୀ ହୋଇ ପାରନ୍ତା ନାହିଁ । କାରଣ ଦେହଧାରୀ ପ୍ରତ୍ୟେକ ସଜ୍ଞାନରେ, ବା ଅଜ୍ଞାନତାବଶତଃ ଅଥବା ମନ, ବଚନ ଓ କର୍ମରେ ନିରନ୍ତର ଅସଂଖ୍ୟ ପାପକାର୍ଯ୍ୟରେ ଲିପ୍ତ ରହିଛି । କେବେ କେବେ ପୁଣ୍ୟକାର୍ଯ୍ୟ ମଧ୍ୟ ହେଉଛି । ଯଦି ସମସ୍ତେ ଯଥାରୀତି ପାପ ପୁଣ୍ୟର ଫଳ ଭୋଗ କରିବେ, ତେବେ ଜୀବକୁ ସର୍ବଦା ନରକର ଅଗ୍ନିରେ ହିଁ ଦଗ୍ଧ ହେବାକୁ ପଡ଼ିବ, ଆଉ ଯଦି ବା ସ୍ୱର୍ଗର ଅନିତ୍ୟ, ଅଯଶବାନ୍, କ୍ଷୟିଷ୍ଣୁ ଭୋଗବିଳାସ ମିଳିବ, ତାହା ମାତ୍ର କେତୋଟି ଦିନପାଇଁ ସମ୍ଭବ ; କିନ୍ତୁ ଭଗବତ କଥା ଓ ତ୍ରିପଥଗାମିନୀ ଗଙ୍ଗା ସଂସାରର ସମସ୍ତ ପାପତାପହାରିଣୀ ଭାବେ ସୁବିଦିତା । ତେଣୁ ଆପଣ, ଦୟାକରି ପାପହାରିଣୀ କଥା ଆମ୍ଭମାନଙ୍କୁ କହନ୍ତୁ, ଯେଉଁ ଯେଉଁ କଥା ମହାତ୍ମା ବିଦୁର ମୈତ୍ରେୟଙ୍କୁ ପଚାରିଥିଲେ । ମୈତ୍ରେୟ ବିଦୁରଙ୍କ ପ୍ରଶ୍ନର ଉତ୍ତର ଦେଇ ଯାହା ଯାହା କହିଥିଲେ, ସେ ସମସ୍ତ ଆମ୍ଭମାନଙ୍କୁ ଶୁଣାନ୍ତୁ ।

ମହର୍ଷି ସୂତ ପ୍ରସନ୍ନ ଚିତ୍ତରେ କହିଲେ—ହେ ଋଷିଗଣ । ଆପଣମାନେ ପ୍ରକୃତରେ ସଂସାର ତାପରେ ସନ୍ତପ୍ତ ପ୍ରାଣୀମାନଙ୍କର ପିତାମାତା, ହିତୈଷୀ ଓ ସୁହୃଦ । ଆପଣମାନଙ୍କ ପ୍ରଶ୍ନର ଉତ୍ତର ମଧ୍ୟରେ ସଂସାରୀ ଲୋକର ମୁକ୍ତିମାର୍ଗ ପ୍ରସ୍ତୁତ ହେଉଛି । ମହାମନା ମୈତ୍ରେୟଙ୍କଠାରୁ ବରାହ ଚରିତ୍ର ଶୁଣୁଥିବାବେଳେ ବିଦୁର ପ୍ରଥମ ସୃଷ୍ଟି ପ୍ରସଙ୍ଗରେ ପ୍ରଶ୍ନ କରିଥିଲେ । ଲୋକ ପିତା ବ୍ରହ୍ମା ମରୀଚ୍ୟାଦି ଦଶପୁତ୍ର, ମନୁ ଓ ଶତରୂପାଙ୍କ ପରେ ଆଉ କ'ଣ କ'ଣ ସୃଷ୍ଟି କରିଥିଲେ ? କେବଳ ବ୍ରହ୍ମା ପରବର୍ତ୍ତୀ ସୃଷ୍ଟି କରିଥିଲେ ନା ଅନ୍ୟମାନେ ମିଳିମିଶି ସୃଷ୍ଟି କାର୍ଯ୍ୟରେ ଭାଗ ନେଇଥିଲେ । ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମୈତ୍ରେୟ କହିଥିଲେ—ବିଦୁର ! ବାରମ୍ବାର ସୃଷ୍ଟି ପ୍ରସଙ୍ଗ ଉଠାଇ ଆପଣ ସୃଷ୍ଟିକର୍ତ୍ତାଙ୍କ ବିଷୟରେ ମୋର ସ୍ମୃତିକୁ ଉଜ୍ଜୀବିତ କରୁଛନ୍ତି । ଏହା ହିଁ ଜୀବର ପରମ ପୁରୁଷାର୍ଥ । ପୂର୍ବରୁ ମୁଁ କହିଛି, ଭଗବାନଙ୍କ ଇଚ୍ଛା ଅନୁସାରେ କାଳ, କର୍ମ ଓ ପ୍ରକୃତିର ସଂସର୍ଗଦ୍ୱାରା ତ୍ରିଗୁଣର ସୃଷ୍ଟି ହେଲା । ସେଥିରୁ ମହାତତ୍ତ୍ୱ, ତ୍ରିବିଧ ଅହଙ୍କାର, ପଞ୍ଚତନ୍ମାତ୍ର, ପଞ୍ଚଭୂତ, ପଞ୍ଚ-ଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ ଓ ସେମାନଙ୍କର ଅଧିଷ୍ଠାତୃ ଦେବତାଗଣ ଉତ୍ପନ୍ନ ହୋଇ ଅଣ୍ଡାକାର ରୂପ ଧାରଣ କଲେ । ସେଥିରେ ପ୍ରବେଶ କରିବା ପରେ ଭଗବାନ୍‌ଙ୍କ ନାଭି କମଳରୁ ବ୍ରହ୍ମା ଏବଂ ତାଙ୍କଠାରୁ ପଞ୍ଚପର୍ବା, ଅବିଦ୍ୟା, ଯକ୍ଷ, ରାକ୍ଷସ, ଦେବତା,

ଅସୁରାଦି ଜନ୍ମହେଲେ । ଦିନ, ରାତି, ସନ୍ଧ୍ୟାଦିଦ୍ୱାରା ବ୍ରହ୍ମା କାଳ ବିଭାଜନ କଲେ । ଏହାପରେ ଅପ୍‌ସରା, ଗନ୍ଧର୍ବ, ଭୂତ, ପିଶାଚ, ନିଦ୍ରା, ତନ୍ଦ୍ରା, ଉନ୍ମାଦ, ପିତର, ସାଧ୍ୟ, କିନ୍ନର, କିଂପୁରୁଷ, ସର୍ପ ଆଦି ସୃଷ୍ଟି ହେଲେ । ଏ ସମସ୍ତ ସୃଷ୍ଟି କରି ମଧ୍ୟ ବ୍ରହ୍ମାଙ୍କର ମନରେ ପରିତୃପ୍ତି ଆସିଲା ନାହିଁ । ତେଣୁ ସେ ପୁରୁଷାକାର ମାନବଶରୀର ସୃଷ୍ଟି କଲେ । ମନୁଷ୍ୟ ଶରୀର ଦେଖି ବ୍ରହ୍ମା ବହୁତ ପ୍ରସନ୍ନ ହେଲେ । ଦେବଗଣ ଆନନ୍ଦରେ ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ—ପିତାମହ ! ଆପଣଙ୍କର ଏ ସୃଷ୍ଟି ଅତୀବ ବିଚିତ୍ର ଓ ଅନୁପମ । ଏହାଦ୍ୱାରା ଆମର ମଧ୍ୟ ଅନ୍ନଜଳର ସୁବ୍ୟବସ୍ଥା ହୋଇଗଲା । ଏମାନେ ଯଜ୍ଞଦ୍ୱାରା ଆମ୍ଭମାନଙ୍କୁ ସନ୍ତୁଷ୍ଟ କରି ଏହି ଦେହରେ ମୁକ୍ତିଲାଭ କରିପାରିବେ । ମନୁମାନଙ୍କ ପରେ ବ୍ରହ୍ମା ତପ, ବିଦ୍ୟା, ଯୋଗ ଓ ସମାଧିଯୁକ୍ତ ଋଷିମାନଙ୍କୁ ସୃଷ୍ଟି କରିଥିଲେ । ସେତେବେଳେ ସ୍ୱାୟଂଭୁବ ମନୁ ଓ ଶତରୂପା ରାଣୀ ସୃଷ୍ଟି ହୋଇଥିଲେ । ଶତରୂପା ହିଁ ସୃଷ୍ଟି ପ୍ରକ୍ରିୟାର ପ୍ରଥମନାରୀ । ସ୍ୱାୟଂଭୁବ ମନୁଙ୍କ ସହିତ ତାଙ୍କର ବିବାହ ହୋଇଥିଲା ।

ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଶ୍ରେଷ୍ଠ କିଏ ବୋଲି ବିଦୁର ପଚାରିବାରୁ ମୈତ୍ରେୟ ହସି ହସି ଉତ୍ତର ଦେଲେ—ବିଦୁର ! ତୁମେ ହିଁ ନିଜେ ତାହା ଚିନ୍ତା କର, କିଏ ପ୍ରକୃତରେ ଶ୍ରେଷ୍ଠ ? ନିଜ ନିଜ ସ୍ଥାନରେ ଉଭୟେ ଶ୍ରେଷ୍ଠ । ଦୁଇହାତ, ପାଦ, କାନ, ଆଖି ଓ ନାସିକା ଛିଦ୍ର ମଧ୍ୟରେ କିଏ ସାନ କିଏ ବଡ଼ ? ବ୍ରହ୍ମାଙ୍କ ଅଙ୍ଗ ହିଁ ଦ୍ୱିଧା ବିଭକ୍ତ ହୋଇଛି ପୁରୁଷ ଓ ସ୍ତ୍ରୀ ଭାବେ । ତେଣୁ କାହାକୁ ବଡ଼ ବା ଶ୍ରେଷ୍ଠ କପରି କୁହାଯିବ ? ଦକ୍ଷିଣାଙ୍ଗରୁ ପୁରୁଷ ଓ ବାମାଙ୍ଗରୁ ସ୍ତ୍ରୀ ସୃଷ୍ଟି ହେଲେ । ସୃଷ୍ଟିପାଇଁ ଉଭୟଙ୍କର ଆବଶ୍ୟକତା ସମାନ । ତେଣୁ ଉଭୟ ସମସ୍ତରୀୟ । ତଥାପି ମୋ ମତରେ ପ୍ରଥମ ପୁରୁଷ (ବ୍ରହ୍ମା) ହିଁ ଉଭୟଙ୍କୁ ସୃଷ୍ଟି କରିଛନ୍ତି । ସେହି କ୍ରମରେ ପିତା ହେଉଛନ୍ତି ଶ୍ରେଷ୍ଠ । ସୃଷ୍ଟିର ବିକାଶ ଶତରୂପାଙ୍କଦ୍ୱାରା ସମ୍ଭବ ହୋଇଛି । ତେଣୁ ମାତା ଶ୍ରେଷ୍ଠ । ମାତା ରୂପରେ ସ୍ତ୍ରୀ ଓ ପତି ରୂପରେ ପୁରୁଷ ଶ୍ରେଷ୍ଠ । ଏ ପ୍ରକାର ଗୌରବବୋଧ ନଥିବା ସ୍ଥାନରେ କଳହ ଅବଶ୍ୟମ୍ଭାବୀ ।

ଏହା ଶୁଣି ବିଦୁର ହସି ହସି କହିଲେ— ମହାତ୍ମନ ! ଆପଣ ପ୍ରକାରାନ୍ତରେ ଉଭୟଙ୍କୁ ସମାନ ବୋଲି ପ୍ରତିପାଦନ କଲେ ; କିନ୍ତୁ ସୃଷ୍ଟି ସର୍ବଥା ସମତାରୁ ସମ୍ଭବ ନୁହେଁ । କେତେକ ମାତ୍ରାରେ ଅସମାନତା ଅବଶ୍ୟ ପ୍ରୟୋଜନ । ବିପରୀତରେ ମଧ୍ୟ ସୃଷ୍ଟି ହୁଏନାହିଁ । ତେଣୁ ଆନୁକୂଲ୍ୟ ଆବଶ୍ୟକ । ମନୁ ଓ ଶତରୂପା ମିଳିତଭାବେ କେତେ ସନ୍ତାନଙ୍କୁ ଜନ୍ମ ଦେଲେ ଏବଂ ସେମାନଙ୍କର ବଂଶବୃଦ୍ଧି କପରି ହେଲା, ତାହା ବୁଝାଇ କହନ୍ତୁ ବୋଲି ବିଦୁର ପଚାରିବାରୁ ମୈତ୍ରେୟ ଉତ୍ତର ଦେଲେ—ଭଗବାନ୍ ମନୁଙ୍କଦ୍ୱାରା ଶତରୂପା ଗର୍ଭରୁ ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ଦୁଇ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ସେ ଦୁହେଁ ରାଜା ହୋଇ ପୃଥିବୀ ପାଳନ କଲେ । ଏ ଦୁଇ ପୁଅଙ୍କ

ବ୍ୟତୀତ ଆକୂତି, ଦେବହୂତି ଓ ପ୍ରସୂତି ନାମରେ ତିନି କନ୍ୟା ଜନ୍ମ ହୋଇଥିଲେ । ମହାଯୋଗୀ କର୍ଦ୍ଦମଙ୍କ ସହିତ ଦେବହୂତିଙ୍କ ବିବାହ ହୋଇଥିଲା । ତାଙ୍କଠାରୁ ନାରାୟଣଙ୍କ ଅବତାରଭୂତ ଭଗବାନ୍ କପିଳ ଜନ୍ମ ଗ୍ରହଣ କଲେ । ଦକ୍ଷ ପ୍ରଜାପତିଙ୍କ ସହିତ ଆକୂତିଙ୍କ ବିବାହ ହୋଇଥିଲା । ତାଙ୍କଠାରୁ ଏତେ ସନ୍ତାନ ଜନ୍ମ ହେଲେ ଯେ, ଚରାଚର ବିଶ୍ୱ ତାଙ୍କର ସନ୍ତାନରେ ପୂରିଗଲା ।

ଏହା ପରେ ବିଦୁର ମହର୍ଷି ମୈତ୍ରେୟଙ୍କୁ ମହାମୁନି କର୍ଦ୍ଦମଙ୍କ ସହିତ ବିବାହ କିପରି ହେଲା ଏବଂ ଭଗବାନ୍ କପିଳ ରୂପରେ କିପରି ଅବତାର ଗ୍ରହଣ କରିଥିଲେ ସେ ସମସ୍ତଙ୍କୁ ବିଷୟ କହିବା ନିମିତ୍ତ ନିବେଦନ କଲେ ।

**ଶୌନକ ମୁନିକୋ ପ୍ରଶ୍ନ ସୂତ ସୁନି ହରଷେ ମନ ମହିଁ ।**
**ପ୍ରେମ ବିକଳ ଅତି ଭୟେ ରୋମ ପୁଲକେ ସବତନ ମହିଁ ।**
**ବୋଲେ-ଋଷିୟେଁ । ସୁନୋ ! ଗୟେ ମନୁ ଶତରୂପା ସଁଙ୍ଗ ।**
**ଦମ୍ପତି ମହିଁ ଅତି ପ୍ରୀତି ପ୍ରେମତେଂ ପୁଲକିତ ଅଙ୍ଗ ଅଙ୍ଗ ॥**
**ହ୍ୱୈ ଜିନତେ ଅତି ସୁଘଡ଼ ସୁତ, ପ୍ରିୟବ୍ରତ ଅରୁ ଉତ୍ତାନପାଦ**
**କାଇଁ ତନୟା ତୀନ ଜଗ, ଯଶ ଛାୟୋ ଜିନତେଂ ବିଶଦ ॥**



## ବିବାହ ନିମିତ୍ତ କର୍ଦ୍ଦମଙ୍କ ତପସ୍ୟା

( ୧୫୦ )

ପ୍ରଜାଃ ସୃଜେତି ଭଗବାନ୍ କର୍ଦ୍ଦମୋ ବ୍ରହ୍ମଣୋଦିତଃ ।
ସରସ୍ୱତ୍ୟାଂ ତପସ୍ତେପେ ସହସ୍ରାଣାଂ ସମା ଦଶ ॥
ତାବତ୍ ପ୍ରସନ୍ନୋ ଭଗବାନ୍ ପୁଷ୍କରାକ୍ଷଃ କୃତେ ଯୁଗେ ।
ଦର୍ଶୟାମାସ ତଂ କ୍ଷତ୍ତଃ ଶାବ୍ଦଂ ବ୍ରହ୍ମ ଦଧଦ୍‌ବପୁଃ ।

(ଭାଗ-୩-୨୧-୬-୮)

ଦେବହୂତି କିହିଁ ଭାଁତି ବିବାହୀ କର୍ଦ୍ଦମ ଋଷି ତେଂ ।
କହି ଭୟୋ କସ ପ୍ରଥମ ବ୍ୟାହ ସୋ ବୈଦିକ ବିଧି ତେଂ ॥
ବିଧି କୀ ଆଜ୍ଞା ପାଇ ଚଲେ କର୍ଦ୍ଦମ ତପ କେ ହିତ ।
ବିଷୟନ ତେଂ ମନ ରୋକି ଲଗାୟୋ ଶ୍ରୀହରି ମହ ଚିତ ॥
ବରଷ ସହସଦଶ ତପ କରୟୋ,
ତନୁ ତେ କୃଶ ଅତହୀଭୟୋ ।
ଭୀଷଣ ତପ ତେ ତୁଷ୍ଟ ହ୍ୱୈ
କମଲନୟନ ଦରଶନ ଦୟୋ ॥

ଭଗବଦ୍ ଆରାଧନା ସକାମ ଭାବରେ ହେଉ ବା ନିଷ୍କାମ ଭାବରେ ହେଉ, ଉଭୟ ପରିଣତି କଲ୍ୟାଣକର । ଭକ୍ତର ହୃଦୟରେ ସେହି ଶ୍ରୀପତି କାମନା ଉତ୍ପନ୍ନ କରିଥାନ୍ତି । ହୃଦୟରେ ସୃଷ୍ଟି ହୋଇଥିବା କାମନାର ପୂର୍ତ୍ତି ନିମିତ୍ତ ହୃଦୟେଶଙ୍କୁ ପ୍ରାର୍ଥନା କରିଯାଏ । ତାଙ୍କରି ଶରଣରେ କାମନାର ପରିତ୍ତି ଘଟେ ଓ ଶେଷରେ ତାଙ୍କରି ପଦଲାଭ ସମ୍ଭବ ହୁଏ । ଦୀନ କ୍ଷୁଧାକୁଳ ବ୍ୟକ୍ତି ଜଣକେ କୌଣସି କୃପଣ ଲୋକକୁ ପ୍ରାର୍ଥନା କଲେ ହୁଏତ କିଛି ଶୁଖିଲା ଶୁଖିଲା ଖାଦ୍ୟ ପାଇପାରେ । ଅନେକ କ୍ଷେତ୍ରରେ ନ ପାଇବାର ସମ୍ଭାବନା ଅଧିକ ଥାଏ ; କିନ୍ତୁ କୌଣସି ଏକ ଉଦାର-ସ୍ୱଭାବ ପୁରୁଷର ଶରଣାର୍ଥୀ ହେଲେ ଦରିଦ୍ରର ତାତ୍କାଳିକ ଦୁଃଖ ଦୂର ହୁଏ ଏବଂ ଭବିଷ୍ୟତ୍ ପାଇଁ କିଛି ନା କିଛି ବ୍ୟବସ୍ଥାର ସନ୍ଧାନ ହୁଏ । କାମନାର ବଶୀଭୂତ ହୋଇ

ସଂସାରୀ ଲୋକ ଯେବେ ମାନବ, ଭୂତ, ପ୍ରେତ, ପିଶାଚାଦିଙ୍କ ଶରଣାପ୍ରାର୍ଥୀ ହେବ, ତେବେ କାମନାର କିଛି ବା ବହୁଅଂଶ ପୂର୍ଣ୍ଣ ହୋଇପାରେ ; କିନ୍ତୁ ସବୁ ସମୟ ପାଇଁ ଦୁଃଖ ଦୂର ହୋଇପାରେ ନାହିଁ । ଭଗବଦ୍ ଆଶ୍ରିତ ବ୍ୟକ୍ତି ଯଦି ନିଜର କାମନା ପୂର୍ତ୍ତି ପାଇଁ ତାଙ୍କୁ ହିଁ ନିବେଦନ କରିବ ତେବେ ତା'ର କାମନାର ପୂର୍ତ୍ତି ସହିତ ପରମାର୍ଥ ପ୍ରାପ୍ତିର ପଥ ମଧ୍ୟ ସୁଗମ ହୋଇଥାଏ । ସେ ଶାଶ୍ୱତ ଶାନ୍ତିର ଅଧିକାରୀ ହୁଏ । ଯେ ନିଜକୁ ଭଗବାନ୍‌ଙ୍କର ଦାସ ବୋଲି କହି କ୍ଷୁଦ୍ର ସଂସାରୀ ପୁରୁଷଙ୍କ ସହାୟତାରେ ସ୍ୱାଭିଳାଷ ପୂର୍ଣ୍ଣ କରିବାର ଆଶା ରଖେ, ସେ ହରିଦାସ ନୁହେଁ, ବିଷୟ ଦାସ ଓ ମାୟାଦାସ ଭାବେ ପରିଚିତ । ସେ ଚୌରାଶିର ଚକ୍ରରେ ସର୍ବଦା ଘୂରିବୁଲେ । ଭଗବାନ୍ କର୍ଦ୍ଦମ ମୁନି ସକାମ ତପସ୍ୟାଦ୍ୱାରା ସ୍ୱକାମନାର ପୂର୍ତ୍ତି ସହିତ ମୁକ୍ତିପଦ ଲାଭ କରିବାରେ ସମର୍ଥ ହୋଇଥିଲେ । ଏହି ପ୍ରସଙ୍ଗ ଆରମ୍ଭ କରି ମୈତ୍ରେୟ କହିଲେ, —ବିଦୁର ! ବ୍ରହ୍ମାଙ୍କ ମାନସ ପୁତ୍ର ମଧ୍ୟରେ କର୍ଦ୍ଦମ ଥିଲେ ଅନ୍ୟତମ । ଶତରୂପାଙ୍କ ସହିତ ସ୍ୱାୟଂଭୁବ ମନୁଙ୍କ ବିବାହ ହୋଇସିବା ପରେ କର୍ଦ୍ଦମଙ୍କ ମନରେ ବିବାହ କରିବାର ଅଭିଳାଷ ଜାଗ୍ରତ ହେଲା । ଭଗବାନଙ୍କ ପ୍ରେରଣାରେ ଏହା ହୋଇଥିଲା । ତେଣୁ ସେ ହାତଯୋଡ଼ି ପିତାମହ ବ୍ରହ୍ମାଙ୍କୁ ନିଜର ପ୍ରାର୍ଥନା ଜଣାଇଥିଲେ ।

ସୃଷ୍ଟିର ପରମ୍ପରାର ନିମିତ୍ତ ବ୍ରହ୍ମାଙ୍କ ମନରେ ବ୍ୟାକୁଳତା ଥିଲା । କର୍ଦ୍ଦମଙ୍କ ଅଭିଳାଷ ଜାଣି କହିଲେ—ବର୍ତ୍ତମାନ ସୃଷ୍ଟିକାର୍ଯ୍ୟ ହିଁ ସର୍ବଶ୍ରେଷ୍ଠ କାର୍ଯ୍ୟ । ତେଣୁ ପ୍ରଜା ସୃଷ୍ଟିରେ ସମସ୍ତଙ୍କର ସକ୍ରିୟ ସହଯୋଗ ଏକାନ୍ତ ଆବଶ୍ୟକ । ବ୍ରହ୍ମାଙ୍କ କଥା ଶୁଣି କର୍ଦ୍ଦମ କହିଲେ—ମହାରାଜ ! ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ ; କିନ୍ତୁ ମୁଁ କିପରି ପ୍ରଜାବୃଦ୍ଧି କରି ପାରିବ ? ଏ ପର୍ଯ୍ୟନ୍ତ ସେ ବିଷୟରେ ମୁଁ କୌଣସି ଉପାୟ ଭାବିପାରୁ ନାହିଁ । ବ୍ରହ୍ମା କହିଲେ—ଭଗବାନଙ୍କ ଭଜନ କରୁଥିବା ବ୍ୟକ୍ତି ପକ୍ଷରେ ଅସାଧ୍ୟ କିଛି ନାହିଁ । ତୁମେ ତପସ୍ୟା କର । ତପସ୍ୟାଦ୍ୱାରା ସମସ୍ତ ସିଦ୍ଧି ସ୍ୱତଃ ସମ୍ଭବ । ତୁମେ ପତ୍ନୀଟିଏ ଇଚ୍ଛା କରୁଛ । ଭକ୍ତିଦ୍ୱାରା ପତ୍ନୀ ମିଳିବେ, ଆଉ ଭଗବାନ ବି ମିଳିବେ ।

ପିତାମହ ବ୍ରହ୍ମାଙ୍କ ଆଦେଶ ଅନୁସାରେ ମହାମୁନି କର୍ଦ୍ଦମ ଅର୍ବୁଦଶୈଳ ନିକଟରେ ବହି ଯାଉଥିବା ଭଗବତୀ ସରସ୍ୱତୀ ନଦୀଙ୍କ ତୀର ଭୂମିରେ ଘୋର ତପସ୍ୟା କରିବାକୁ ଲାଗିଲେ । ଯମ, ନିୟମ, ଆସନ ପ୍ରାଣାୟମ ଆଦି ଯୋଗଦ୍ୱାରା ସମାଧି ଓ ସମାଧିଦ୍ୱାରା ପରାତ୍ପର ପ୍ରଭୁଙ୍କ ଆରାଧନାରେ ନିମଗ୍ନ ହୋଇଗଲେ । ସବୁଆଡ଼ୁ ନିଜର ଚିତ୍ତବୃତ୍ତିକୁ ନିରୋଧ କରି ଭଗବାନ୍‌ଙ୍କ ଶ୍ରୀଚରଣରେ ମନୋନିବେଶପୂର୍ବକ ଦଶ ହଜାର ବର୍ଷ କଠୋର ତପସ୍ୟା କଲେ ।

ଶତରୂପାଙ୍କ ସହିତ ବିବାହ ପରେ ସ୍ୱୟଂଭୁବ ମନୁ ପୃଥିବୀରେ ଗଙ୍ଗା ଓ ଯମୁନା ନଦୀ ମଧ୍ୟସ୍ଥ ବ୍ରହ୍ମାବର୍ତ୍ତ ପ୍ରଦେଶକୁ ସର୍ବଶ୍ରେଷ୍ଠ ଓ ମହାପୁଣ୍ୟପ୍ରଦ ବୋଲି ଭାବି ସେଠାରେ ନିଜର ରାଜଧାନୀ ନିର୍ମାଣ କରାଇଲେ । ବ୍ରହ୍ମାବର୍ତ୍ତରେ ଥାଇ ସେ ପୃଥିବୀକୁ ଧର୍ମପୂର୍ବକ ଶାସନ କରିବାକୁ ଲାଗିଲେ । ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ତାଙ୍କର ଦୁଇଟି ପ୍ରଭାବଶାଳୀ ପୁତ୍ର ଏବଂ ଦେବହୂତି, ଆକୂତି, ପ୍ରସୂତି ନାମରେ ତିନିକନ୍ୟା ଜନ୍ମ ହେଲେ । ଦେବହୂତି ଅତୀବ ଧର୍ମପରାୟଣା, ସୁଶୀଳା, ଭକ୍ତିମତୀ ଓ ସାଧୁ ସ୍ୱଭାବର କନ୍ୟା ଥିଲେ । ସର୍ବଦା ଭଗବାନ୍‌ଙ୍କ ଭଜନ କୀର୍ତ୍ତନରେ ସେ ବ୍ୟସ୍ତ ରହୁଥିଲେ । କେବେହେଲେ ସେ ଖେଳିବା ବା ଅଯଥା ଆଳାପ ଆଲୋଚନାକୁ ସୁଖ ପାଉ ନଥିଲେ । ନୀରବରେ ବସିରହି ଭଗବଦ୍ ଭଜନରେ ତାଙ୍କର କାଳ ଅତିବାହିତ ହେଉଥିଲା । ସେ ଅତୀବ ସୁନ୍ଦରୀ ଥିଲେ । ସମସ୍ତେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଯାଉଥିଲେ । ଟିକିଏ ବାଳିକା ଚତୁର ହେବା ପରେ ଏକଦା ନିଜ ଗୃହ ଉପରି-ଭାଗରେ କନ୍ଦୁକ କ୍ରୀଡ଼ା କରୁଥିବା ବେଳେ ଆକାଶ ମାର୍ଗରେ ଯାଉଥିବା ବିଶ୍ୱାବସୁ ନାମକ ଗନ୍ଧର୍ବ ଦେବହୂତିଙ୍କୁ ଦେଖି ମୋହିତ ହୋଇଗଲା ଓ ଅଣାୟତ୍ତ ହୋଇ ପୃଥିବୀ ପୃଷ୍ଠରେ ଖସି ପଡ଼ିଲା । ସେ ନିଜ ମାନସିକ ପାପର ସାକ୍ଷାତ୍ ଫଳ ଭୋଗକଲା । ଶୁକ୍ଳପକ୍ଷର ଚନ୍ଦ୍ର ପ୍ରତିଦିନ କଳାଏ ବଢ଼ିବା ସଙ୍ଗେ ସଙ୍ଗେ ନିଜର ଶୀତଳକିରଣ-ଦ୍ୱାରା ଅନ୍ୟକୁ ସୁଖୀ କରୁଥିଲେ ମଧ୍ୟ କାମୀଜନର ହୃଦୟକୁ ଯେପରି ଚଞ୍ଚଳ କରେ, ସେହିପରି ଦେବହୂତି ପ୍ରାପ୍ତବୟସ୍କା ହେବାପରେ ସମସ୍ତେ ଆନନ୍ଦିତ ହେଲେ ମଧ୍ୟ ମାତା ପିତାଙ୍କ ଚିନ୍ତା ବଢ଼ିଗଲା । ଦେବହୂତି ବର୍ତ୍ତମାନ ଯୁବତୀ । ମାତା ପିତାଙ୍କ ଇଚ୍ଛା, କୌଣସି ସର୍ବଗୁଣସମ୍ପନ୍ନ ଯୋଗ୍ୟ ବର ସହିତ ପ୍ରାଣପ୍ରିୟା ପୁତ୍ରୀର ବିବାହ, ଦେବେ, ଯେଉଁଠାରେ କନ୍ୟାର ଭାବି ଜୀବନ ସୁଖମୟ ହେବ । ଏହି ଚିନ୍ତାରେ ନିମଗ୍ନ ଥିବାବେଳେ ରାମକୃଷ୍ଣଙ୍କ ଗୁଣଗାନ କରି ବୀଣା ବଜାଇ ନାରଦ ବର୍ହିଷ୍ମତୀ ନାମକ ମନୁଙ୍କ ରାଜଧାନୀରେ ପହଞ୍ଚିଲେ । ବ୍ରହ୍ମପୁତ୍ର ନାରଦଙ୍କୁ ଆସୁଥିବାର ଦେଖି ସପ୍ତଦ୍ୱୀପରେ ଅଧିପତି ମହାରାଜା ସ୍ୱାୟଂଭୁବ ମନୁ ଆସନରୁ ଉଠିପଡ଼ି ଠିଆ ହୋଇଗଲେ ଋଷି ନାରଦଙ୍କୁ ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଓ ଫଳମୂଳ ଦେଇ ମହାରାଜ ଯଥାବିଧି ଅତିଥି ସତ୍କାର କଲେ । ବସିବାକୁ ଆସନ ପ୍ରଦାନ କଲେ । ମହାରାଜାଙ୍କର ଶାସ୍ତ୍ରୀୟ ବିଧାନୋଚିତ ପୂଜାକୁ ସ୍ୱୀକାର କରି ସୁପ୍ରସନ୍ନ ହୋଇ ନାରଦ ଆସନ ଗ୍ରହଣ କରିବା ପରେ ରାଜ୍ୟ, ମନ୍ତ୍ରୀ, କୋଷ, ଅନ୍ତଃପୁର, ପରିବାରବର୍ଗଙ୍କ କୁଶଳ ପ୍ରଶ୍ନ ପଚାରିଲେ । ଉଭୟଙ୍କର କୁଶଳ ଜିଜ୍ଞାସା ପରେ ମହାରାଣୀ ଶତରୂପା ଉପସ୍ଥିତ ହୋଇ ମୁନିଙ୍କୁ ଯଥାବିଧି ପ୍ରଣାମ ଜଣାଇଲେ ଏବଂ ନିଜର ପିଲାମାନଙ୍କୁ ନେଇ ମୁନିଙ୍କ ପାଦତଳେ ନିବେଦନ କଲେ । ସମସ୍ତଙ୍କୁ ଯଥାଯୋଗ୍ୟ ଆଦର ଓ ଆଶୀର୍ବାଦ ପ୍ରଦାନ କରି ଦେବର୍ଷି ନାରଦ ବସିବା ନିମିତ୍ତ ଆଦେଶ ଦେଲେ ।

ବ୍ରହ୍ମପୁତ୍ର ନାରଦ ହସି ହସି ମହାରାଜ ମନୁଙ୍କୁ ପଚାରିଲେ — ରାଜନ୍ ! ଆପଣ ବିଶେଷ ଚିନ୍ତିତ ଥିବାପରି ମନେହେଉଛି । ମୁଁ ଅନୁଭବ କରୁଛି, ଆପଣଙ୍କର କୌଣସି ବିଷୟରେ ଗଭୀର ମାନସିକ ଚିନ୍ତା ରହିଛି । ଆପଣ ଚିନ୍ତାର କାରଣ ମୋତେ କହନ୍ତୁ । ଯଥାଶକ୍ତି ମୁଁ ସେ ଚିନ୍ତାର ସମାଧାନ ନିମିତ୍ତ ଚେଷ୍ଟା କରିବି । ନାରଦଙ୍କର ମଧୁର, ସୁଖଦ ଓ ମମତାମୟ ବାଣୀ ଶ୍ରବଣରେ ଆନନ୍ଦିତ ହୋଇ ମନୁ ଉତ୍ତର ଦେଲେ ବ୍ରହ୍ମନ୍ ! ଏହି ଗୃହସ୍ଥାଶ୍ରମ ହିଁ ମୋ'ଠାରେ ଚିନ୍ତାର ସାଗରରୂପ ଧାରଣ କରିଛି । ଏଠାରେ ଗୋଟିକ ପରେ ଗୋଟିଏ ଚିନ୍ତାର ଉତ୍ତୁଙ୍ଗ ତରଙ୍ଗ ସୃଷ୍ଟି ହେଉଛି । ଧନ ଓ ସନ୍ତାନ— ଏ ଦୁଇଟି ଗୃହସ୍ଥର ଚିନ୍ତାର ପ୍ରଧାନ କାରଣ । ଧନ ନ ଥିଲେ ଧନ-ଲାଭ ନିମିତ୍ତ ଚିନ୍ତା । ଧନ ଥିଲେ ତା'ର ଉତ୍ତରୋତ୍ତର ବୃଦ୍ଧି, ଓ ସୁରକ୍ଷାଦିର ଚିନ୍ତା ଗୃହସ୍ଥକୁ ବ୍ୟାକୁଳ କରେ । ସନ୍ତାନ ନ ଥିଲେ ସେଥିପାଇଁ ଚିନ୍ତା । ସନ୍ତାନ ଥିଲେ ତା'ର ପାଳନ ପୋଷଣ, ଯୋଗ୍ୟ କରିବା ଓ ବିବାହ ଦେବା ଚିନ୍ତା ଲାଗିରହେ । ସବୁଠାରୁ ବଳି ବଡ଼ ଚିନ୍ତା ହେଉଛି ବିବାହଯୋଗ୍ୟା କନ୍ୟାର ବିବାହ । ଧର୍ମ କର୍ମ ବିଷୟରେ ଜ୍ଞାନ ଥିବା ପିତାଙ୍କୁ ଏହି ଚିନ୍ତା, ଯୋଗ୍ୟ ବର ସହିତ କନ୍ୟାର ବିବାହ ନ ହେବା ପର୍ଯ୍ୟନ୍ତ ବ୍ୟଥିତ କରୁଥାଏ । କନ୍ୟାର ବିବାହ ପରେ ମଧ୍ୟ ତା'ର ସୁଖ-ସ୍ୱାଚ୍ଛନ୍ଦ୍ୟ ବିଷୟକ ଚିନ୍ତା ଲାଗିରହିଥାଏ । ଆପଣଙ୍କ କରୁଣାରୁ ମୋର ଧନ ସମ୍ପଦ-ଜନିତ ଦୁଃଖ ନାହିଁ । ଭଗବାନ୍ ପାଞ୍ଚୋଟି ସନ୍ତାନ ଦେଇଛନ୍ତି, ସେଥିରେ ମଧ୍ୟ ମୋର ଚିନ୍ତାର କାରଣ ନାହିଁ । ବର୍ତ୍ତମାନ ଝିଅ ଦେବହୂତି ହିଁ ମୋର ଅଧିକ ଚିନ୍ତାର କାରଣ ହୋଇଛି । ସେ ବର୍ତ୍ତମାନ ବିବାହଯୋଗ୍ୟା । କୌଣସି ଏକ ଭଗବଦ୍ ଭକ୍ତ, ସଦାଚାରୀ, ତପସ୍ୱୀ ବରଟିଏ ସହିତ ତାର ବିବାହ ହେଉ, ଏହା ହିଁ ମୋର ଇଚ୍ଛା । ଏହି ଚିନ୍ତା ମୋତେ ବ୍ୟାକୁଳ କରୁଛି ।

ନିକଟରେ ବସିରହି ଦେବହୂତି ଏସବୁ ଶୁଣୁଥିଲେ ।ା ଲଜ୍ଜାରେ ସଙ୍କୁଚିତ ହୋଇ ସେ ବାରମ୍ବାର ପୃଥିବୀକୁ ଚାହୁଁଥିଲେ ଏବଂ ଅଙ୍ଗୁଷ୍ଠ ନଖରେ ଗାର ଟାଣୁଥିଲେ । ମହାରାଜ ମନୁଙ୍କ କଥା ଶୁଣି ଦେବର୍ଷି ନାରଦ କିଛି ସମୟ ନୀରବ ରହିବା ପରେ ଦେବହୂତିଙ୍କୁ ଲକ୍ଷ୍ୟକରି କହିଲେ — ଝିଅ ! ମୋ ପାଖକୁ ଟିକିଏ ଆସିଲୁ । ତୋ ହାତ ଦେଖେ । ଝିଅଟି ଖୁବ୍ ଲଜ୍ଜିତା ହୋଇ ବାପା ଓ ମା'ଙ୍କ ଆଡ଼କୁ ଚାହିଁଲା । ଉଭୟେ ଏକସଙ୍ଗେ କହିଲେ — ଯା ଝିଅ, ମହର୍ଷି ଡାକୁଛନ୍ତି, ନମସ୍କାର ଜଣାଇ ତାଙ୍କ ଆଗକୁ ଯା । ଦେବହୂତି ଅତୀବ ସମ୍ଭ୍ରମରେ ପ୍ରଣାମ ଜଣାଇ ଲଜ୍ଜାବନତ ମୁଖରେ ଋଷିଙ୍କ ଆଗରେ ଠିଆ ହୋଇଥିଲେ । ମହର୍ଷି କନ୍ୟାର ଅରୁଣ କମଳ ତୁଲ୍ୟ କୋମଳ କରପଲ୍ଲବକୁ ନେଇ ରେଖାରେ ଶୁଭାଶୁଭ ନିରୀକ୍ଷଣ କଲେ । ସବୁତଗରୁ ଦେଖାଶୁଣା ସାରି ନାରଦ କହିଲେ— ରାଜନ୍ ! ଆପଣଙ୍କ କନ୍ୟା ଅତୀବ ଭାଗ୍ୟବତୀ । ଏ ସଂସାରରେ ସେ ଜଣେ ଯଶସ୍ୱିନୀ ମହିଳା ହେବେ ନ. .ତ [illegible]

ମୋର ମନେ ପଡ଼ିଲା, ସରସ୍ୱତୀ ନଦୀ ତୀରରେ ମହାମୁନି କର୍ଦ୍ଦମ କଠୋର ତପସ୍ୟା କରୁଛନ୍ତି । ସେ ହେଉଛନ୍ତି ଦ୍ୱିତୀୟ ପ୍ରଜାପତି । ରୂପ, ଗୁଣ, ବୟସ, ସଦାଚାର ସବୁଦିଗରୁ ସେ ଆପଣଙ୍କ କନ୍ୟାର ଯୋଗ୍ୟତମ । ତାଙ୍କଠାରୁ ବଳି ତପସ୍ୱୀ ଯଶସ୍ୱୀ ଧର୍ମାତ୍ମା ଓ ସତ୍ୟପରାୟଣ ମୁଁ ଅନ୍ୟ କାହାକୁ ଦେଖୁନାହିଁ, ଆପଣ ଏ ଝିଅଟିକୁ ତାଙ୍କୁହିଁ ବିବାହ ଦିଅନ୍ତୁ ।

ଦେବହୂତିର ହାତ ଦେଖି ଦେଖି ଭଗବାନ୍ ନାରଦ କହୁଥିଲେ, ଦେବହୂତିର ହୃଦୟ ଅତୀବ ଉଦାର ଓ ମହନୀୟ । ଲଜ୍ଜାରେ ଦେବହୂତି ସଙ୍କୁଚିତ ହୋଇଯାଉଥିଲେ । ମୁନି ହାତ ଦେଖି ନଥିଲେ ହୁଏତ ସେ ସେଠାରୁ ଦୌଡ଼ି ପଳାଇ ଯାଇଥାନ୍ତେ ; କିନ୍ତୁ ସେ ତା' କରିପାରୁ ନଥିଲେ । ମୁହଁ ତଳକୁକରି ଠିଆହୋଇ ରହିଲେ । ମୁନି ଯେତେବେଳେ ହାତ ତା'ର ଛାଡ଼ିଦେଲେ, ସେ ପ୍ରଣାମ ଜଣାଇ ଭିତରକୁ ଚାଲିଗଲେ । ନାରଦଙ୍କ କଥା ଶୁଣି ଆନନ୍ଦ ମନରେ ମନୁ କହିଲେ — ଭଗବନ୍ ! ମହାମୁନି କର୍ଦ୍ଦମଙ୍କ ପ୍ରଶଂସା ମୁଁ ମଧ୍ୟ ବହୁ ଆଗରୁ ଶୁଣି ଆସୁଛି ; କିନ୍ତୁ ଏଭଳି ପ୍ରସ୍ତାବ ଦେବାପାଇଁ ମୁଁ କେବେ ସାହସ କରିନାହିଁ । ସେ ତପସ୍ୱୀ, ବ୍ରହ୍ମଚାରୀ, ହୁଏତ ମୋ ପ୍ରସ୍ତାବରେ ରାଗିଯିବେ । ଯଦି ସେ ମୋ ଝିଅର ବିବାହ ପ୍ରସ୍ତାବକୁ ସ୍ୱୀକାର କରିବେ, ତେବେ ମୋର ଜନ୍ମ ସଫଳ ହେଲା, ଆଉ ମୁଁ ମଧ୍ୟ ନିଶ୍ଚିନ୍ତ ହୋଇଯିବି । ସେ ସବୁ ଦୃଷ୍ଟିରୁ ମୋ କନ୍ୟାର ଯୋଗ୍ୟ ବୋଲି ମୁଁ ଭାବୁଛି ।

ମହାମୁନି ନାରଦ କହିଲେ — ରାଜନ୍ ! ଆପଣ ଏ ବିଷୟରେ ଆଦୌ ଚିନ୍ତା କରନ୍ତୁନାହିଁ । ମହାମୁନି କର୍ଦ୍ଦମଙ୍କ ମନୋଭାବ ମୁଁ ଜାଣେ । ଦେଖନ୍ତୁ, ବ୍ରହ୍ମଚାରୀ ନୈଷ୍ଠିକ ଓ ଉପକୁର୍ବାଣ ନାମରେ ଦୁଇ ପ୍ରକାର । ଯେ ସାରାଜୀବନ ଅବିବାହିତ ରହି ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରନ୍ତି, ତାଙ୍କୁ ନୈଷ୍ଠିକ ବ୍ରହ୍ମଚାରୀ କହନ୍ତି ; କିନ୍ତୁ ଯେ ବିବାହ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି, ତାଙ୍କୁ ଉପକୁର୍ବାଣ କହନ୍ତି ; କର୍ଦ୍ଦମମୁନି ଉପକୁର୍ବାଣ ବ୍ରହ୍ମଚାରୀ । ବ୍ରହ୍ମଚର୍ଯ୍ୟ ପରେ ଯୋଗ୍ୟା କନ୍ୟା ମିଳିଲେ ସେ ବିବାହ କରିବେ । ତେଣୁ ଆପଣ ନିଜର ସର୍ବଗୁଣସମ୍ପନ୍ନା ଲକ୍ଷଣବତୀ କନ୍ୟା ଦେବହୂତିକୁ ସେହି ତ୍ୟାଗୀ, ତପସ୍ୱୀ, ସର୍ବସମର୍ଥ ମୁନି କର୍ଦ୍ଦମଙ୍କୁ ପ୍ରଦାନ କରନ୍ତୁ । ଏହାଦ୍ୱାରା ସଂସାରରେ ତାଙ୍କର ଯଶ ବଢ଼ିବ, ଆଉ ଆପଣ ମଧ୍ୟ ପରମ ପୁଣ୍ୟର ଅଧିକାରୀ ହେବେ ।

ନାରଦଙ୍କ କଥାରେ ସ୍ୱୟଂଭୁବ ମନୁ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ପ୍ରେମାନନ୍ଦବଶତଃ କଣ୍ଠ ତାଙ୍କର ଅବରୁଦ୍ଧ ହୋଇଯିବାରୁ ସେ କୌଣସି କଥା ହଠାତ୍ କହିପାରିଲେ ନାହିଁ । କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ସେ ବିନୀତଭାବେ କହିଲେ — ମହାମୁନେ ! ଆପଣଙ୍କ ଦୟା ଅବିସ୍ମରଣୀୟ । ଆପଣ ମୋତେ ଏକ

ମହାନ୍ ଚନ୍ତାରୁ ମୁକ୍ତ ହେଲେ । ସଂସାରରେ ସାଧୁସନ୍ଥଙ୍କ ଭ୍ରମଣ ପରର ଉପକାର ସାଧନ ନିମିତ୍ତ ଅଭିପ୍ରେତ । ସେମାନଙ୍କ ଦର୍ଶନ କରିବାମାତ୍ରେ ସଂସାରୀ ଲୋକର ସମସ୍ତ ଦୁଃଖ ଦୂର ହୋଇଯାଏ । ଭଗବନ୍ ! ମୁଁ କାଲି ପତ୍ନୀଙ୍କ ସହିତ କନ୍ୟାକୁ ନେଇ ଭଗବତୀ ସରସ୍ୱତୀ ନଦୀ ତୀରରେ ଥିବା ମହାମୁନି କର୍ଦ୍ଦମଙ୍କ ଆଶ୍ରମକୁ ଯିବି । ବିନୀତ ପ୍ରାର୍ଥନାଦ୍ୱାରା ତାଙ୍କୁ ପ୍ରସନ୍ନ କରିବାରେ ଯତ୍ନଶୀଳ ହେବି ।

ମୈତ୍ରେୟ କହିଲେ — ବିଦୁର ! ସ୍ୱୟଂଭୁବ ମନୁଙ୍କ ଆତିଥ୍ୟ ଓ ସତ୍କାରରେ ସନ୍ତୁଷ୍ଟ ହୋଇ ଦେବର୍ଷି ନାରଦ ବୀଣାବାଦନପୂର୍ବକ ଲୋକାନ୍ତର ଯାତ୍ରା କଲେ । ମହାରାଣୀ ଶତରୂପା କନ୍ୟା ସହିତ କର୍ଦ୍ଦମ ମୁନିଙ୍କ ଆଶ୍ରମକୁ ଯିବା ନିମିତ୍ତ ପ୍ରସ୍ତୁତିରେ ଲାଗି ଗଲେ ।

ଇତି ନାରଦ ମୁନି ଦେବହୂତି ପିତୁ ଠିଁ ଗ ଆସ୍ୟେ ।
କନ୍ୟା ହିତ ଅତି ଖିନ୍ନ ଲଖେ ତବ ବଚନ ସୁନାୟେ ॥
କନ୍ୟାଦାନ ନିମିତ୍ତ ଜାହୁ ଠିଁ ଗ କର୍ଦ୍ଦମ ମୁନି କେ ।
ଅତି ପ୍ରସନ୍ନ ନୃପ ଭୟେ ବୈନ ମୁନିବର କେ ସୁନିକେ ॥
ଯଦି କର୍ଦ୍ଦମ କନ୍ୟା ଗହହିଁ, ମନବାଞ୍ଛିତ ଫଲ ପାଉଁ ଗୋ ।
ପୁତ୍ରୀ ପତ୍ନୀ ସଙ୍ଗ ଲୈ, କାଲି ତହାଁ ହୋ ଜାଉଁ ଗୋ ॥



# କର୍ଦ୍ଦମଙ୍କ ଭଗବଦ୍‌ଦର୍ଶନ
# ଓ ସିଦ୍ଧିଲାଭ

ତଥା ସ ଚାହଂ ପରିବୋଢୁକାମଃ
ସମାନଶୀଳାଂ ଗୃହମେଧ ଧେନୁମ୍ ।
ଉପେୟିବାନ୍ମୂଳମଶେଷମୂଲମ୍
ଦୁରାଶୟଃ କାମ ଦୁଘାଂଘ୍ରିପସ୍ୟ ।।
(ଭାଗ-୩-୨୧-୧୫)

## ରୂପପଦ୍ୟ

ତପପତି, ତପତେ ତୁଷ୍ଟଭଯ୍ୟେ ନିଜରୂପ ଦେଖାଯ୍ୟେ ।
ଅଦ୍‌ଭୁତ ଶୋଭା ସହିତ, ନିରଖି ମୁନି ଚିତ୍ତ ଲୁଭିଯ୍ୟେ ।।
ଚରଣ, ଅଧର, କର, ଅରୁଣ, ମଧୁର ସିରମୁକୁଟ ମନୋହର ।
ଆଯୁଧ ଅସ୍ତ୍ର ସମେତ କମଳ କର ଲିଯ୍ୟେ ଗଦାଧର ।।
ଶ୍ରୀପତି ସମ୍ମୁଖ ନିରଖି କେ, ପରମ ମୁଦିତ ମୁନିବର ଭଯ୍ୟେ ।
ବଡ଼ବଡ଼ାଇ କେ ଦଣ୍ଡସମ, ବିକଳ ମହୀପର ପରିଗଯ୍ୟେ ।।

ଜୀବ ନିଜର କାମନା ପୂର୍ତ୍ତି ନିମିତ୍ତ ଭଗବାନଙ୍କୁ ପ୍ରାର୍ଥନା କରେ । ଏହା ତା'ର ଅପୂର୍ଣ୍ଣତାର ପରିଚୟ ଦିଏ । ଚରାଚର ବିଶ୍ୱର ସୃଷ୍ଟି ସ୍ଥିତି ଓ ପ୍ରଳୟର କର୍ତ୍ତା ଓ ସମସ୍ତ କର୍ମର ନିୟାମକ ପ୍ରଭୁ ପ୍ରତ୍ୟେକ ଘଟରେ ବିଦ୍ୟମାନ । କେଉଁ ଜୀବର କି ପ୍ରକାର କାର୍ଯ୍ୟରେ କଲ୍ୟାଣ ସାଧିତ ହେବ, ତାହା ସର୍ବାଧିକଭାବେ ସେହି ଜାଣନ୍ତି । ମଝିରେ ଆମେ ନିଜର କର୍ତ୍ତୃତ୍ୱ ସ୍ଥାପନ କରିବାକୁ ଯାଇ କେବଳ ଚିନ୍ତାକୁ ହିଁ ବଢ଼ାଇଥାଉଁ । ନିଜ ଭକ୍ତର ଅଭୀଷ୍ଟ ପୂରଣ ନିମିତ୍ତ ଭଗବାନ୍ କଳ୍ପବୃକ୍ଷ ସଦୃଶ ସଦା ସମର୍ଥ ଓ ପ୍ରସ୍ତୁତ ଅଛନ୍ତି । କଳ୍ପବୃକ୍ଷର ଆଶ୍ରୟରେ ମୁକ୍ତି ମିଳେନାହିଁ; କିନ୍ତୁ ଭଗବାନ୍ ବାସୁଦେବ ନିଜ ଆଶ୍ରିତକୁ ଭୁକ୍ତି, ମୁକ୍ତି ଉଭୟ ଫଳଦାନ ନିମିତ୍ତ ସମର୍ଥ । ତାଙ୍କୁ ଆଶ୍ରୟ କରିଥିବା ଜୀବର ଦୁଷ୍ପ୍ରାପ୍ୟ ବୋଲି କିଛି ନ ଥାଏ । ଏହି କଥା ପ୍ରତି ଦୃଷ୍ଟି ଦେଇ ମୈତ୍ରେୟ ମୁନି ବିଦୁରଙ୍କୁ ପରବର୍ତ୍ତୀ ଘଟଣାବଳୀ କହିବାକୁ ଲାଗିଲେ ।

ସ୍ୱୟଂଭୁବ ମନୁଙ୍କୁ ଖବର ଦେଇ ନାରଦ ଚାଲିଗଲେ । ଏଆଡ଼େ କର୍ଦ୍ଦମ ମୁନିଙ୍କର ତପସ୍ୟା ପୂର୍ତ୍ତି ସମୟ ଉପସ୍ଥିତ ହେଲା । ତାଙ୍କର କଠୋର ତପସ୍ୟାରେ ପ୍ରସନ୍ନ ହୋଇ ଭକ୍ତବତ୍ସଳ ଭଗବାନ୍ କର୍ଦ୍ଦମଙ୍କ ଆଗରେ ପ୍ରକଟ ହେଲେ । ମୁନିବର କର୍ଦ୍ଦମ ଆଶ୍ରମରେ ସୁସ୍ଥ ଚିତ୍ତ ହୋଇ ସୁଖାସନରେ ବସିଥାନ୍ତି । ଧ୍ୟାନ ଧାରଣା ମଧ୍ୟରେ ସେ ଶ୍ୟାମସୁନ୍ଦରଙ୍କୁ ସାକ୍ଷାତ୍କାର କରୁଥାନ୍ତି । ଭଗବାନଙ୍କ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ରୂପ ଅମୃତ ପାନରେ ସମାଧିସ୍ଥ କର୍ଦ୍ଦମଙ୍କର ବାହ୍ୟଜ୍ଞାନ ରହୁ ନ ଥାଏ । ଭଗବାନଙ୍କର ଯେଉଁ ମୂର୍ତ୍ତି ସେ ଧ୍ୟାନ କରୁଥାନ୍ତି, ତାହା ହଠାତ୍ ଅନ୍ତର୍ହିତ ହେବାରୁ ତାଙ୍କର ଧ୍ୟାନ ଭଙ୍ଗ ହେଲା । ସେ ଆଖି ଖୋଲିବା ମାତ୍ରେ ଦେଖିଲେ, ଯେଉଁ ମନୋମୟୀ ମୂର୍ତ୍ତିକୁ ସେ ସମାଧିକାଳରେ ଧ୍ୟାନ କରୁଥିଲେ, ସେ ସାକ୍ଷାତ୍ ତାଙ୍କ ଆଗରେ ହସ ହସ ମୁଖରେ ଦଣ୍ଡାୟମାନ । ଶଙ୍ଖ, ଚକ୍ର, ଗଦା ଓ ପଦ୍ମଧାରୀ, ବନମାଳ ପରିହିତ, କୌସ୍ତୁଭମଣି ଶୋଭିତ ପୀତାମ୍ବର ବସ୍ତ୍ର ପରିଧାରେ ବିରାଜମାନ କରିଛନ୍ତି । କୋଟି କୋଟି ସୂର୍ଯ୍ୟ ଚନ୍ଦ୍ର ତୁଲ୍ୟ ନିର୍ମଳ ପ୍ରଭା ଚତୁର୍ଦ୍ଦିଗକୁ ବିଚ୍ଛୁରିତ ହେଉଛି । ବିଦ୍ୟୁତ୍ ପ୍ରଭାକୁ ଲଜ୍ଜିତ କରୁଥିବା ପୀତାମ୍ବର ବାୟୁବେଗରେ ସଞ୍ଚାଳିତ ହୋଇ ଭକ୍ତମାନଙ୍କୁ ଆଶ୍ୱାସନା ଓ ଅଭୟପ୍ରଦାନ କଲାଭଳି ପ୍ରତୀତ ହେଉଛି । କର୍ଣ୍ଣର କମନୀୟ କନକ କୁଣ୍ଡଳ କ୍ରୀଡ଼ାକମଳ ତୁଲ୍ୟ କପୋଳଦେଶରେ ଦୋଳାୟମାନ ରହିଛି । ମନ୍ଦ ମନ୍ଦ ମଧୁର ଈଷଦ୍ହାସ ଭକ୍ତ ହୃଦୟରେ ସଞ୍ଜୀବନୀ ସୁଧା ବର୍ଷଣ କରୁଛି । ବାୟୁଠାରୁ ବେଗଶାଳୀ ବିନତାନନ୍ଦନ ଗରୁଡ଼ଙ୍କ ପୃଷ୍ଠସ୍ଥିତ ଦିବ୍ୟାସନରେ ବିରାଜିତ ଭଗବାନଙ୍କୁ ଅର୍ଦ୍ଧାକାଶରେ ଦେଖି କର୍ଦ୍ଦମମୁନିଙ୍କ ପ୍ରସନ୍ନତାର ସୀମା ରହିଲା ନାହିଁ ସମ୍ଭ୍ରମର ସହିତ ହଠାତ୍ ଦଣ୍ଡାୟମାନ ହୋଇ ଆନନ୍ଦାତିଶଯ୍ୟରେ ସେ ନିଜର କର୍ତ୍ତବ୍ୟ ମଧ୍ୟ ଭୁଲିଗଲେ । କିଂକର୍ତ୍ତବ୍ୟ-ବିମୂଢ଼ ଭଳି ବ୍ୟାକୁଳଭାବେ ସେ ସାଷ୍ଟାଙ୍ଗ ପ୍ରଣିପାତ-ପୂର୍ବକ ଦଣ୍ଡବତ୍ ଦଣ୍ଡାୟମାନ ହେଲେ । ଚକ୍ଷୁଯୁଗଳରୁ ତାଙ୍କର ଅବାରିତ ଆନନ୍ଦାଶ୍ରୁ ବହିଯାଉଥିଲା । ପ୍ରଣାମ ପରେ ସେ ଗଦ୍‌ଗଦ କଣ୍ଠରେ ଭଗବାନ୍ ବାସୁଦେବଙ୍କ ସ୍ତୁତିଗାନ କରିବାକୁ ଲାଗିଲେ ।

ପ୍ରଭୋ ! ସଂସାରର ବାସନାପୂର୍ଣ୍ଣ ପଦାର୍ଥ ଦେଖି ଦେଖି ନୟନଦ୍ୱୟ ମୋର କଳୁଷିତ । ତନ୍ମଧ୍ୟରେ ଆପଣଙ୍କ ଦର୍ଶନ ଓ କୃପାଲାଭ ସମ୍ଭବ ନୁହେଁ । ସାଂସାରିକ ମାୟାର ବଶୀଭୂତ ହୋଇ ଜୀବ ଅବଶଭାବେ ନାନା ଯୋନିରେ ଭ୍ରମଣ କରିଚାଲିଛି । ଇନ୍ଦ୍ରିୟ ସହିତ ସାଧାରଣ ଭୋଗର ସଂସର୍ଗଦ୍ୱାରା ଉପଭୋଗ ଇଚ୍ଛା ବଳବତୀ ହେଉଛି । ସେହି ଉପଭୋଗରୁ ବାସନା ଓ ବାସନାରୁ ସଂସାର ବନ୍ଧନ ବୃଦ୍ଧି ପାଉଛି । ତେଣୁ ସଂସାରର ମୁକ୍ତିଦାତା ଆପଣଙ୍କ ପାଇଁ ଯେ ବିଷୟ ପ୍ରାର୍ଥନା କରେ ଏବଂ ବିଷୟସୁଖ ନିମିତ୍ତ ଆପଣଙ୍କୁ ଉପାସନା କରେ, ତାକୁ କୌଣସି ସମ୍ରାଟଙ୍କଠାରେ କୃପାପ୍ରାର୍ଥନା

କରୁଥିବା ବା କଳ୍ପବୃକ୍ଷତଳେ ବସି ଗଧଦୁଧ ପ୍ରାର୍ଥନା କରୁଥିବା ଲୋକ ସହିତ ତୁଳନା କରାଯାଇପାରେ । ଗଙ୍ଗାତୀରକୁ ଯାଇ ପଙ୍କ ଗଡ଼ିଆ ପାଣି ପିଇବା ଇଚ୍ଛାକରିବା ଅତୀବ ନିନ୍ଦନୀୟ । ଆପଣଙ୍କର ଅଦେୟ କିଛି ନାହିଁ । ଆପଣଙ୍କ ଚରଣାଶ୍ରିତ ମନରେ ଯାହା ଅଭିଳାଷ ତାହା ଆପଣ ପୂରଣ କରନ୍ତି । ଆପଣ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ ସମସ୍ତ ପ୍ରକାର ଭକ୍ତଙ୍କ ମନୋବାଞ୍ଛା ପୂରଣ କରନ୍ତି । ଅର୍ଥାର୍ଥୀକୁ ଅର୍ଥ, ବିଦ୍ୟାର୍ଥୀକୁ ବିଦ୍ୟା, ଧନାର୍ଥୀକୁ ଧନ, ପୁତ୍ରାର୍ଥୀକୁ ପୁତ୍ର, କାମାର୍ଥୀକୁ କାମ ଓ ଭାର୍ଯ୍ୟାର୍ଥୀକୁ ସୁନ୍ଦର ମନୋନୁକୂଳ ଭାର୍ଯ୍ୟାମଧ୍ୟ ପ୍ରଦାନ କରନ୍ତି ।

ଭଗବାନ୍ ହସି ହସି କହିଲେ — କର୍ଦ୍ଦମ ! ହଁ ଲୋକେ ପ୍ରାର୍ଥନା କରନ୍ତି ; କିନ୍ତୁ ଆପଣ ଗତ ଦଶ ହଜାର ବର୍ଷ ଧରି ଘୋର ତପସ୍ୟା କରି ଆସିଛନ୍ତି । ଆପଣ ସେମାନଙ୍କ ଭଳି ପ୍ରାର୍ଥୀ ନୁହନ୍ତି । ଆପଣ ନିଷ୍କାମ ଭାବରେ ମୋର ଆରାଧନା କରିଛନ୍ତି । ପ୍ରଭୁ ବାସୁଦେବଙ୍କ କଥା ଶୁଣି କର୍ଦ୍ଦମ କହିଲେ — ନା ।ମୁଁ ମଧ୍ୟ ସେହି ଅଜ୍ଞ ପୁରୁଷମାନଙ୍କ ମଧ୍ୟରୁ ଆଉ ଜଣେ । ମୋ ତପସ୍ୟା ମଧ୍ୟ ନିଷ୍କାମ ନୁହେଁ । ମନରେ କାମନା ରଖି ମୁଁ ଆପଣଙ୍କୁ ଧ୍ୟାନ କରୁଛି । କିପ୍ରକାର କାମନା ଅଛି ବୋଲି ବାସୁଦେବ ପଚାରିବାରୁ କର୍ଦ୍ଦମ ଲଜ୍ଜିତ ହୋଇ ଧର୍ମ, ଅର୍ଥ, କାମ ଓ ସମସ୍ତ ସୁଖ ପ୍ରଦାୟିନୀ ଏକ ସୁନ୍ଦରୀ କାମଧେନୁ ପ୍ରାର୍ଥନା କଲେ ।

ବାସୁଦେବ ହସି ହସି କହିଲେ — ସମୁଦ୍ର ମନ୍ଥନ ସମୟରେ ପାଞ୍ଚୋଟି କାମଧେନୁ ମିଳିଥିଲେ ; କିନ୍ତୁ ସେଗୁଡ଼ିକୁ ଋଷିମାନେ ହିଁ ନେଇଯାଇଛନ୍ତି । ସେହି ଗାଈ ମଧ୍ୟରୁ ଗୋଟିଏ ନେବାକୁ ଯଦି ତୁମର ଇଚ୍ଛା ଅଛି, ତେବେ କୁହ, ମୁଁ କୌଣସି ଋଷିଠାରୁ ଆଣି ତୁମକୁ ଦେଇଦେବି । ତୁମର ଆଶ୍ରମରେ ବନ୍ଧା ହୋଇ ରହିବ । ତାକୁ ଯାହା ମାଗିବ ସେ ସବୁକିଛି ତୁମକୁ ଯୋଗାଇଦେବ ।

କର୍ଦ୍ଦମଙ୍କ ସଙ୍କୋଚର ସୀମା ରହିଲା ନାହିଁ । ଭଗବାନ୍ ସବୁକଥା ଜାଣି ଶୁଣି ପଚାରୁଛନ୍ତି, ସ୍ପଷ୍ଟଭାବେ ପ୍ରାର୍ଥନୀୟ ବସ୍ତୁ ଜାଣିବାକୁ ଚାହିଁଛନ୍ତି । ତେଣୁ ଲଜ୍ଜିତ ଭାବେ କର୍ଦ୍ଦମ କହିଲେ ଯେ, ଚତୁଷ୍ପଦୀ କାମଧେନୁ ସେ ଚାହୁଁ ନାହାନ୍ତି । ଗୃହପାଦ ଅପେକ୍ଷା ଦ୍ୱିପଦୀ କାମଧେନୁ ଆବଶ୍ୟକ । ଶବ୍ଦ, ରୂପ, ରସ, ଗନ୍ଧ ଓ ସ୍ପର୍ଶ ଆଦି ସୁଖଦ ବସ୍ତୁ ଉତ୍ପନ୍ନ କରୁଥିବା କାମଧେନୁ ଅପେକ୍ଷା ଦ୍ୱିପଦୀ କାମଧେନୁହିଁ ପ୍ରାର୍ଥନାର ବସ୍ତୁ । ସେ ପୂର୍ବୋକ୍ତ ସମସ୍ତ ତନ୍ମାତ୍ରା ସୁଖଦାନ କରେ । ସ୍ୱର ତାର ବୀଣା ବିନିନ୍ଦିତ । ପନ୍ଦର ଷୋହଳ ବର୍ଷ ହେବା ମନୋ ବାଣୀ ଯାହାର ଧୀର ଗମ୍ଭୀର ହୋଇଉଠେ ଏବଂ ରୂପ ଯାହାର ସୁଖଦ, ସର୍ବରସଦାୟିନୀ, ଗନ୍ଧ ଓ ସ୍ପର୍ଶମନୋଜ୍ଞ, ଯାହାକୁ ହୃଦୟର ବନ୍ଧନରେ ବାନ୍ଧି ହେବ, ସେହି କାମଧେନୁ ଆବଶ୍ୟକ । ସେ ଗୃହେଶ୍ୱରୀ, ହୃଦୟେଶ୍ୱରୀ ଓ ଗୃହ-ସ୍ୱାମିନୀହେତୁ ଗୃହିଣୀ ଭାବେ ଅଭିହିତା ।

ବାସୁଦେବଙ୍କ ପାର୍ଶ୍ୱସ୍ଥା ଲକ୍ଷ୍ମୀ ମନେ ମନେ ହସୁଥାନ୍ତି । ଭଗବାନ୍ ତାଙ୍କୁ ଚାହିଁବାମାତ୍ରେ ଚାରିଆଖି ହୋଇଗଲା । ଦୁହେଁ ହର୍ଷଉଠିଲେ । ଆଚ୍ଛା, ତାହାହେଲେ ଅନୁରୂପ ଗୃହିଣୀଟିଏ ଆବଶ୍ୟକ ; ଏବେ ଗୃହସ୍ଥ ହେବାର ଇଚ୍ଛା ଅଛି ବୋଲି ଲକ୍ଷ୍ମୀ-ପତିଙ୍କ ପ୍ରଶ୍ନ ଶୁଣି, କର୍ଦ୍ଦମ ମୁନି ସଲଜ୍ଜ ଭାବେ କହିଲେ —ଭଗବାନ୍ ! କଣ କହିବି ? ଆପଣ ହିଁ ସେ ପ୍ରକାର ଅଭିଳାଷର ମୂଳ ଉତ୍ସ । ଆପଣଙ୍କ ଆଦେଶରୂପ ରଜ୍ଜୁରେ ସମସ୍ତ ଜୀବ ଆବଦ୍ଧ । ଆପଣ ସେମାନଙ୍କୁ ଯେପରି ଇଚ୍ଛା ସେହିପରି ବୁଲାଉଛନ୍ତି । ଏଥିରେ ମୋର ଅପରାଧ କଣ ? ନୋହିଲେ ଆପଣଙ୍କୁ ପ୍ରସନ୍ନ କରି ମୁଁ ତୁଚ୍ଛ ବିଷୟ ସୁଖ ପ୍ରାର୍ଥନା କରିଥାନ୍ତି କାହିଁକି ? ଆପଣଙ୍କ ଭକ୍ତଗଣ ଏ ସଂସାରର ବିଷୟକୁ ଆଉ ଆଖିରେ ମଧ୍ୟ ଚାହାନ୍ତି ନାହିଁ । ଆପଣଙ୍କ କଥାମୃତ ପାନରେ ହିଁ ସେମାନେ ସର୍ବଦା ବ୍ୟସ୍ତ ଓ ବ୍ୟାକୁଳ । ଆପଣଙ୍କ ନାମ ଓ ଗୁଣ କୀର୍ତ୍ତନରେ ସେମାନେ ସର୍ବଦା ଅତୃପ୍ତ ରହନ୍ତି । ଆପଣଙ୍କ ଭାବନାରେ ସେମାନେ ଦେହଧର୍ମକୁ ମଧ୍ୟ ଭୁଲି ଯାଆନ୍ତି । ଆପଣଙ୍କ ଧ୍ୟାନରେ ମଗ୍ନ ରହି, ଆପଣଙ୍କ କୀର୍ତ୍ତିନସୁଧା ପାନ କରି ସେମାନେ ଅଜର ଅମର ହୁଅନ୍ତି । ଆପଣ ସର୍ବତ୍ର ବିଦ୍ୟମାନ । ଆପଣ ସର୍ବଶକ୍ତିମାନ୍ । ଭକ୍ତର ମନୋବାଞ୍ଛା ଆପଣ ପୂରଣ କରନ୍ତି ; କିନ୍ତୁ ଭକ୍ତକୁ ଆପଣ ବୈଷୟିକ ସୁଖ ଦେଇ ସନ୍ତୁଷ୍ଟ ହୁଅନ୍ତି ନାହିଁ । ତେଣୁ ଆପଣ ମୋର ବିବାହ ଅଭିଳାଷ ପୂରଣ କରନ୍ତୁ ଏବଂ ଶେଷରେ ଏ ସଂସାରସାଗରରୁ ମୋତେ ମୁକ୍ତି ଦିଅନ୍ତୁ । ଆପଣଙ୍କ ଭଳି ମୋର ପୁତ୍ରଟିଏ ଜନ୍ମହେଉ । ସେହି ପୁତ୍ରଦ୍ୱାରା ମୋର ଐହିକ ଓ ପାରଲୌକିକ ସୁଖ ସଫଳ ହେଉ ।

ଭଗବାନ୍ ମନେ ମନେ ଭାବିଲେ ମୁନି କେଡ଼େ ବୁଦ୍ଧିମାନ୍ । ତପସ୍ୟାଦ୍ୱାରା ବୁଦ୍ଧି କେତେ ନିର୍ମଳ ହୋଇଛି । ଏକ ସଙ୍ଗେ ସୁନ୍ଦରୀ ଭାର୍ଯ୍ୟା, ମୋର ଭଳି ପୁତ୍ର ଓ ଶେଷରେ ମୁକ୍ତି ପ୍ରାର୍ଥନା । ମୁଁ ଭକ୍ତାଧୀନ । ଭକ୍ତ ଯାହା ମାଗେ ମୁଁ ତାହା ନିର୍ବିଘ୍ନରେ ପୂରଣ କରିଥାଏ । ଏହା ଚିନ୍ତାକରି ବାସୁଦେବ କହିଲେ — ମୁନିବର ! ଆପଣ ଏକ ସଙ୍ଗେ ସବୁକିଛି ମାଗିନେଲେ । ଏହା ଶୁଣି କର୍ଦ୍ଦମ ମୁନି ମନେ ମନେ ଆନନ୍ଦିତ ହୋଇ ଉତ୍ତର ଦେଲେ — ପ୍ରଭୋ ! ସୁମେରୁ ପର୍ବତରେ ପହଞ୍ଚି ସୁବର୍ଣ୍ଣ ବିଷୟରେ କାର୍ପଣ୍ୟ ପ୍ରକାଶ କରିବା ଉଚିତ କି ? ଆପଣଙ୍କ ସାକ୍ଷାତ୍ ପରେ ଆଉ କୌଣସି ଅଭିଳାଷ ଅପୂରଣୀୟ ରହିବା ଉଚିତ ହେବ କି ? ଦୟାସାଗର ଆପଣଙ୍କ ଶରଣ ଲଭି ପରେ ମୁଁ ଅପୂର୍ଣ୍ଣକାମ ରହି ପାରିବି କି ? ଆପଣଙ୍କ ଦର୍ଶନ ସମସ୍ତ କାମନାକୁ ଅଚିରେପୂରଣ କରିଥାଏ ।

କର୍ଦ୍ଦମଙ୍କ ଉତ୍ତର ଶୁଣି ଭଗବାନ୍ କହିଲେ — ମୁନିବର ! ଯେଉଁ ଭାବନା ରଖି ଆପଣ ମୋର ଆରାଧନା, କରିଛନ୍ତି ତାହା ମୋତେ ଅଜଣା ନୁହେଁ । ମୁଁ ଆପଣଙ୍କ ମନୋଭାବକୁ ଭଲଭାବେ ଜାଣେ । ଯେଉଁ ଭାବରେ ମୋର ଆରାଧନା କଲେ ମଧ୍ୟ

ତାହା ନିଷ୍ଫଳ ହୁଏ ନାହିଁ । ତୁମଭଳି ତ୍ୟାଗୀ, ବିରାଗୀ, ମଦ୍‌ଗତମନା ମୁନିଶ୍ରେଷ୍ଠଙ୍କ ତପସ୍ୟା କେବେ କଣ ବ୍ୟର୍ଥ ହୋଇପାରେ ? ମୁଁ ତୁମର ସମସ୍ତ ଇଚ୍ଛା ପୂରଣ କରିବି । ତୁମର ପ୍ରାର୍ଥନା ପୂର୍ବରୁ ମୁଁ ତୁମ ବିବାହ ସ୍ଥିର କରିସାରିଛି । ସମସ୍ତ ଉପକରଣ ପ୍ରସ୍ତୁତ କରାଯାଇଛି । ସମସ୍ତ ପ୍ରକାର ଯୋଗାଯୋଗ ବହୁପୂର୍ବରୁ ପ୍ରସ୍ତୁତ ହୋଇ-ସାରିଛି । କେତେଦିନ ଆଉ ପ୍ରତୀକ୍ଷା କରିବି, ବୋଲି କର୍ଦ୍ଦମମୁନି ପ୍ରଶ୍ନ କରିବାରୁ ଭଗବାନ୍ ହସି ହସି କହିଲେ — କେତେଦିନ ନୁହେଁ କାଲି ହିଁ ତୁମର ଅଭିଳାଷ ପୂର୍ଣ୍ଣହେବ । ତୁମେ ମନୋହାରିଣୀ କନ୍ୟାଟିଏ ଗୃହିଣୀଭାବେ ଲାଭକରିବ ।

କର୍ଦ୍ଦମ ମୁନି ମନର ଔତ୍ସୁକ୍ୟକୁ ଚାପି ରଖି କହିଲେ — ପ୍ରଭୋ ! କୌଣସି କଥା ନାହିଁ, ବିବାହ ପ୍ରସ୍ତାବ ମଧ୍ୟ ନାହିଁ, କିପରି ବିବାହ ହେବ ? କନ୍ୟାଟିଏ କେଉଁଠୁ ମିଳିବ ଏବଂ କିଏ ମୋ ପରି ଧୂଳିଧୂସରିତ କଳେବର ସାଧୁ ସହିତ ନିଜର ଝିଅକୁ ବିବାହ ଦେବ ? କିନ୍ତୁ ଆପଣଙ୍କ ପକ୍ଷରେ କୌଣସି କଥା ଅସମ୍ଭବ ନୁହେଁ । ଆପଣଙ୍କ ନିଃଶ୍ୱାସ ଓ ପ୍ରଶ୍ୱାସ ନେବା ମଧ୍ୟରେ ସୃଷ୍ଟି ଓ ପ୍ରଳୟ ଘଟିଯାଏ । ସାମାନ୍ୟ ବିବାହ କଥା ପଚାରେ କିଏ ? ମୁନିଙ୍କର ଔତ୍ସୁକ୍ୟ ଲକ୍ଷ କରି ଭଗବାନ୍ କହିଲେ, — ମୁନିବର ! ଆପଣ ଧୈର୍ଯ୍ୟ ଧାରଣ କରନ୍ତୁ । ସାଧାରଣ ବ୍ୟକ୍ତିର ଝିଅ କଥା ଛାଡ଼ନ୍ତୁ, ସପ୍ତଦ୍ୱୀପର ଚକ୍ରବର୍ତ୍ତୀ ସମ୍ରାଟ୍ ମହାରାଜ ମନୁଙ୍କ କନ୍ୟା ସହିତ ଆପଣଙ୍କ ବିବାହ ହେବ । ସେ ଝିଅ ମଧ୍ୟ ସାଧାରଣ ଝିଅ ନୁହେଁ, ଲକ୍ଷ୍ମୀଙ୍କ ସଦୃଶ ରୂପ, ଗୁଣ, ବୟସ, ସ୍ୱଭାବ ଓ ଆଚାରଯୁକ୍ତା ପରମା ସୁନ୍ଦରୀ ରାଜପୁତ୍ରୀ । ତାଙ୍କର ସହିତ ତୁମର ବିବାହ ହେବ । ତୁମକୁ କନ୍ୟା ପ୍ରାର୍ଥନା ନିମିତ୍ତ ତାଙ୍କ ଘରକୁ ଯିବା ଦରକାର ନାହିଁ । କନ୍ୟାକୁ ନେଇ ରାଜା ଓ ରାଣୀ ଉଭୟ ଆପଣଙ୍କ କୁଟୀରକୁ ଆସିବେ, ଆଉ ଆପଣଙ୍କ ଚରଣତଳେ କନ୍ୟା ସମର୍ପଣ କରିବେ । ମୋ' ଭକ୍ତଙ୍କର ଅଭିଳାଷ ଯଥାର୍ଥ ମର୍ଯ୍ୟାଦା ସହକାରେ ପୂର୍ଣ୍ଣହୁଏ । ସେମାନଙ୍କର କାମକୁ ମୁଁ ନିଜେ ସମ୍ପାଦନ କରେ ।

କର୍ଦ୍ଦମ ମନେ ମନେ ଭାବିଲେ ହୁଏତ ରାଜକନ୍ୟା ମୋ' ଭଳି ତ୍ୟାଗୀ ଓ ବିରାଗୀର ଆଶ୍ରମରେ ରହିବାକୁ ଆଦୌ ସନ୍ତୋଷଜନକ ମନେ କରିବେ ନାହିଁ । ଫଳରେ ଆମ ଦୁହିଁଙ୍କ ମଧ୍ୟରେ ମାନସିକ ଅମେଳ ଘଟିପାରେ । ଭଗବାନ୍ କର୍ଦ୍ଦମଙ୍କ ମନୋଭାବ ବୁଝିପାରି କହିଲେ — ଦେଖ, ସେ କନ୍ୟାଟି ସୁଶୀଳା, ଶ୍ୟାମା, ସୁନ୍ଦରୀ ଓ ସଦ୍‌ଗୁଣସମ୍ପନ୍ନା । ତୁମକୁ ପତିରୂପେ ପାଇବା ପରେ ସର୍ବେଶ୍ୱର ବିଗ୍ରହ ଜ୍ଞାନରେ ଶ୍ରଦ୍ଧା ସହିତ ତୁମର ସେବା କରିବ । ସେ ମୋର ଆରାଧନା କରୁଛି । ଦଶହଜାର ବର୍ଷ ଧରି ତପସ୍ୟାଦ୍ୱାରା ତୁମ ଭଳି ତା'ର ମନ ମଧ୍ୟ ନିର୍ମଳ ହୋଇଯାଇଛି । ତେଣୁ ତୁମ ଦୁହିଁଙ୍କର ଯୋଗାଯୋଗ ଆଶାନୁରୂପ ହେବ । ଦାମ୍ପତ୍ୟ ପ୍ରେମରେ ତୁମର ଦିନ ଦୁଇ-ଗୁଣ ଓ ରାତି ଚାରିଗୁଣ ବଢ଼ିଯିବ । ମୁନିବର ! ତୁମର ବୀର୍ଯ୍ୟରେ ସେହି ଯଶସ୍ୱିନୀ **ମନୁ କନ୍ୟା ନଅଟି କନ୍ୟାଙ୍କୁ ଜନ୍ମ ଦେବେ ।**

ମହର୍ଷି କର୍ଦ୍ଦମ ହାତଯୋଡ଼ି କହିଲେ — ପ୍ରଭୋ ! ସେ ହିଁ ଯୋଡ଼େ ନୁହେଁ ପୁତ୍ରପୁତ୍ର ନଅଟି କନ୍ୟା ଜନ୍ମ ହେବେ । ସ୍ଥିଅ ହିଁ ସ୍ଥିଅ । ଗୋଟିଏ କନ୍ୟା ପାଇଁ ବର ଖୋଜିବାରେ ପିତା ସର୍ବଦା ଚିନ୍ତିତ ରହନ୍ତି । ନଅଟି କନ୍ୟା ପାଇଁ ମୁଁ କେଉଁଠି ବର ଖୋଜିବି ? ମୋର ମଧ୍ୟ ସାଂସାରିକ ବ୍ୟବହାର ବିଷୟରେ କୌଣସି ଜ୍ଞାନ ନାହିଁ । କର୍ଦ୍ଦମଙ୍କ ସରଳତା ଦେଖି ଭଗବାନ୍ ହସିଦେଇ କହିଲେ— ମୁନିବର ! ବହୁଭାଗ୍ୟ ଥିଲେ ଘରେ କନ୍ୟା ଜନ୍ମହୁଏ । ସଂସାରରେ ଅନ୍ନଦାନ, ଭୂମିଦାନ, ସୁବର୍ଣ୍ଣଦାନକୁ ସର୍ବଶ୍ରେଷ୍ଠ ଦାନବୋଲି କହନ୍ତି, କିନ୍ତୁ କନ୍ୟାଦାନ ଏସବୁ ଦାନଠାରୁ ଶ୍ରେଷ୍ଠ । ସେ ହିଁ ଏ ପୁଣ୍ୟାତ୍ମା ସର୍ବାଭରଣ ଯୁକ୍ତା କନ୍ୟାଦାନ କରି ମାନବ ଅକ୍ଷୟ ପୁଣ୍ୟଭାଗୀ ହୋଇଥାଏ । ଆପଣଙ୍କୁ ବର ଖୋଜିବା ନିମିତ୍ତ କୁଆଡ଼େ ହେଲେ ଯିବାକୁ ପଡ଼ିବ ନାହିଁ । ନଅଟି କନ୍ୟାପାଇଁ ନଅଜଣ ବର ଏଠାକୁ ଆସିବେ । ଏଠାରେ ସେମାନଙ୍କ ବିବାହ ସମ୍ପନ୍ନ ହେବ । ଆପଣଙ୍କ କନ୍ୟାଙ୍କ ଗର୍ଭରେ ଏତେ ପୁତ୍ର ଜନ୍ମ ହେବେ ଯେ ସେମାନଙ୍କଦ୍ୱାରା ସମଗ୍ର ପୃଥିବୀ ପୂରି ଉଠିବ ।

କର୍ଦ୍ଦମ କହିଲେ — ମହାପ୍ରଭୁ ! କନ୍ୟାଙ୍କ କଥା ତ ଠିକ୍ ହେଲା; କିନ୍ତୁ ପୁନ୍ନାମକ ନରକରୁ ଉଦ୍ଧାରକାରୀ ବଂଶ ପ୍ରବାହର ରକ୍ଷକ ପୁତ୍ରଟିଏ ତ ଜନ୍ମ ହେବା ଆବଶ୍ୟକ । ଭଗବାନ୍ ହସି ହସି କହିଲେ — ମୁନିବର ! ମୁଁ ମିଳା ରୂପରେ ଆସିଥିଲି, କିନ୍ତୁ ତୁମେ ମୋତେ ପୁତ୍ରଭାବରେ ଗ୍ରହଣ କରିଛ । ଭକ୍ତର ମୁହଁରୁ ଭୁଲ୍‌ରେ ବାହାରିଥିଲେ ମଧ୍ୟ ସେ କୌଣସି ପ୍ରାର୍ଥନାକୁ ମୁଁ ପୂରଣ କରେ । ତୁମେ କହିଥିଲ — ମୋର ଆପଣଙ୍କପରି ପୁତ୍ରଟିଏ ହେଉ' । ମୁଁ ହିଁ ଏ ସଂସାରରେ ମୋ ସଦୃଶ ସମାନ । ତେଣୁ ମୁଁ ତୁମର ପୁତ୍ର ରୂପେ ଜନ୍ମ ହୋଇ ସଂସାରରେ ତୁମର ଯଶ ବିସ୍ତାର କରିବି ଏବଂ ତୁମ ମାତାଙ୍କୁ ସଂସାରରୁ ମୁକ୍ତ ଦେବି । ଏଥରେ କୁହ, ଆଉ ତୁମେ କଣ ଇଚ୍ଛା କରୁଛ । ତୁମେ ଆଉ ଯାହା କିଛି ମାଗିବ ସେ ସମସ୍ତ ମୁଁ ପୂରଣ କରିବି ।

ଏହା ଶୁଣି ଗଦ୍‌ଗଦ କଣ୍ଠରେ କର୍ଦ୍ଦମ ମୁନି କହିବାକୁ ଲାଗିଲେ — ପ୍ରଭୋ ! ଆଉ କଣ କିଛି ମାଗିବାକୁ ରହିଛି ? ମୁଁ ପହିଲିଭ ନିମିତ୍ତ ତପସ୍ୟା କରିଥିଲି । ରାଜପୁତ୍ରୀ ସୁନ୍ଦରୀ ପତ୍ନୀ, ନଅଟି କନ୍ୟା ଆଉ ଆପଣଙ୍କୁ ପୁତ୍ରରୂପେ ପାଇବା ଏବେ ପତ୍ନୀ ସହିତ ସଂସାର ଦୁଃଖରୁ ଚିରମୁକ୍ତି ଲାଭ କରିବ ଭଳି ବରଲାଭ କରିବା ପରେ ମୋର ଆଉ କୌଣସି ଅଭିଳାଷ ବାକି ରହିଲନାହିଁ । ଭୁକ୍ତି ଓ ମୁକ୍ତି ଉଭୟ ମୋତେ ମିଳିଛି । ମହାନ ଜନଠାରେ ଅଳ୍ପ ପ୍ରାର୍ଥନା କଲେ ମଧ୍ୟ ବହୁତ କିଛି ମିଳିଯାଏ । ଆଉ ଅଧିକ କିଛି ମୋର କହିବାର ନାହିଁ ।

ମୈତ୍ରେୟ ମୁନି ବିଦୁରଙ୍କୁ କହୁଛନ୍ତି — ବିଦୁର ! ଏହା କହି ପ୍ରେମବିହ୍ୱଳ କର୍ଦ୍ଦମ ମୁନି ଭଗବାନ୍‌ଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଆଖି ଉଠାଇବା ପରେ ସେ ଦେଖିଲେ ଗରୁଡ଼ ସାମବେଦ ଉଚ୍ଚାରଣ କରି ଭଗବାନଙ୍କୁ ନେଇ ଉଡ଼ି-ଯାଉଛି । କର୍ଦ୍ଦମ ମୁନି ସେହି ଆଡ଼କୁ ଚାହିଁ ରହିଗଲେ ।

## ଛପ୍ପୟ

କୀନ୍ହୀ ବହୁବିଧି ବିନୟ ବତାଈ ଇଚ୍ଛା ଅପନୀ ।
କାମଧେନୁ ସମ ସୁଖଦ ସୁନ୍ଦରୀ ଗୃହୁ ଧରନୀ ।।
ହରି ହଁସି ବୋଲେ—ବହୁ ମିଲେଗୀ ସରସିଜ ନୟନୀ ।
ମନୁପୁତ୍ରୀ ଅତି ସୁଘଡ଼ ସୁଶୀଲା କୋକିଲ ବୟନୀ ।।
ନୌ କନ୍ୟାହ୍ ହୋୟେଂଗୀ, ନିଜ ଯଶ ତେଂ ଭରିଙ୍ଗୀ ।
ଦେହୁଁ ଜ୍ଞାନ ତବ ତନୟ ବନି, ଆପତରେଂ ମାଁ ତରିଙ୍ଗୀ ।।

# କର୍ଦ୍ଦମମୁନିଙ୍କ ଆଶ୍ରମକୁ
# ମନୁଙ୍କ ଆଗମନ

ମନୁଃ ସ୍ୟନ୍ଦନ ନାସ୍ଥାୟ ଶାତକୌମ୍ଭପରିଚ୍ଛଦମ୍ ।
ଆରୋପ୍ୟ ସ୍ୱାଂ ଦୁହିତରଂ ସଭାର୍ଯ୍ୟଃ ପର୍ଯ୍ୟଟନ୍ମହୀମ୍ ॥
ତସ୍ମିନ୍ନ ସୁଧନ୍ୱନ୍ନହନି ଭଗବାନ୍ ଯତ୍ସମାଦିଶତ୍ ।
ଉପାୟାଦାଶ୍ରମପଦଂ ମୁନେଃ ଶାନ୍ତବ୍ରତସ୍ୟ ତତ୍ ॥

( ଶ୍ରୀ ଭା ୩-୨୧-୨୯-୩୭ )

## ଛପପୟ

ଦୀହ୍ନୋ ହରିବର ବିନ୍ଦୁ ଅଶ୍ରୁ ନୟନନି ତେଁ ନିକସେ ।
ବିନ୍ଦୁ ସରୋବର ଭୟୋ ବିମଲ ଜଲ ସରସିଜ ବିକସେ ॥
ଇତ ମନୁ ପତ୍ନୀ ସହିତ ସଙ୍ଗ କନ୍ୟାକୁଁ ଲିହ୍ନୋ ।
ନାରଦ ଆଜ୍ଞା ମାନି ବିନ୍ଦୁ ସର ନୃପ ଚଲି ଦୀହ୍ନୋଂ ।
ଜହଁ କଦମ୍ବ, ଚମ୍ପକ, ବକୁଲ, କୁଟଜ, କୁନ୍ଦ, ମନ୍ଦାର ନଗ ।
ପହୁଁଚେ ମୁନି ଆଶ୍ରମ ନିକଟ, ଚହୁଁ ଦିଶି କୂଜହିଁ ବୃନ୍ଦଖଗ ॥

ସଂସାରରେ ଏପରି ଅନେକ କଥା ଅଛି, ଯାହାକୁ ଅନୁମାନ କରି ଜାଣି ହୁଏ ଓ ବୁଝିହୁଏ । କବିଗଣ ବ୍ୟୁତ୍ପନ୍ନମତି ଓ ବିଶାଳ ବୁଦ୍ଧିଶାଳୀ ହୋଇଥାନ୍ତି । ସାଧ୍-ଜୀବନ ବ୍ୟକ୍ତିର ସମ୍ପର୍କରେ ଆସି ମଧ୍ୟ ଯେଉଁ କଥା ଜଣାପଡ଼େ ନାହିଁ, ତାହାକୁ କବି ଅନୁମାନଦ୍ୱାରା ହିଁ ବୁଝି ପାରିଥାନ୍ତି । ସେଥିପାଇଁ କହନ୍ତି—ରବି ନ ପହଞ୍ଚିବା ସ୍ଥାନରେ କବି ପହଞ୍ଚିଯାଏ ; କିନ୍ତୁ ଆଉ କେତେକ ବିଷୟ ଅଛି ଯାହା ଅନୁଭବ ବିନା ଜାଣିବା ସହଜ ବା ସମ୍ଭବ ନୁହେଁ । ବିନା ଅନୁଭବରେ ସେ ସବୁର ବର୍ଣ୍ଣନା ଅନଧିକାର ପ୍ରଚେଷ୍ଟା ବୋଲି କୁହାଯିବ । ନିବନ୍ଧ ଓ ବିବାହତିଥି ସ୍ଥିର ହୋଇଯିବା ପରେ ପ୍ରାପ୍ତବୟସ୍କ ବର ବଧୂଙ୍କ ହୃଦୟରେ ଯେଉଁ ଉତ୍କଣ୍ଠା ଜାତ ହୁଏ, ତାହା ସେହି-ମାନଙ୍କ ବ୍ୟତୀତ ଅନ୍ୟ କେହି ଅନୁଭବ କରିପାରିବେ ନାହିଁ । ଜୀବନରେ ସେଭଳି ଅବସର ଯାହାର ଆସି ନାହିଁ, ତାହାର ଅନୁଭବ ପ୍ରଶ୍ନ ଆଦୌ ଉଠିପାରେନା ।

ମୈତ୍ରେୟ ମୁନି ବିଦୁରଙ୍କୁ କହିଲେ—ବିଦୁର ! ଭଗବାନ୍ ମୁନି କର୍ଦ୍ଦମଙ୍କୁ ବର ଦେଇ ଚାଲିଗଲେ । ଏବେ କର୍ଦ୍ଦମ ଏକୁଟିଆ ନିଜ ଆଶ୍ରମରେ ଥାଆନ୍ତି । ମୁନି

ମନେ ମନେ ନାନା କଥା ଭାବୁଥାନ୍ତି । ଅଳ୍ପ ଅନ୍ଧକାର । ମନ୍ଦିର ଦୁଆର । ଶୁକ୍ରବାର ଦିନ ମହାରାଜ ମଥୁରା ଆସି ପହଞ୍ଚିବେ । ସେହିଦିନ ଶୁଭ ମୁହୂର୍ତ୍ତରେ ବୀରାଙ୍କ କାର୍ଯ୍ୟ ସମ୍ପନ୍ନ ହୋଇଯିବ । ଭଗବାନ୍ ବାସୁଦେବଙ୍କ କଥା କେବେ ହେଲେ ଅସତ୍ୟ ହେବନାହିଁ । ମହାରାଜ ରଥରେ ବସି ଆସି ପହଞ୍ଚିବେ । ଏଠାରେ ତାଙ୍କର ସ୍ୱାଗତ ପାଇଁ କୌଣସି ସୁବିଧା ନାହିଁ । କାଲିଠାରୁ କନ୍ଦମୂଳ, ଫଳ ଆଦି ସଂଗ୍ରହ ଓ ଏକତ୍ରିତ କରିବାକୁ ହେବ । ଭଗବାନ୍ ରାଜପୁରୀର ବହୁତ ପ୍ରଶଂସା କରୁଥିଲେ । ଲକ୍ଷ୍ମୀଙ୍କ ସହିତ ତାକୁ ତୁଳନା କରୁଥିଲେ । ଆଜି ପର୍ଯ୍ୟନ୍ତ ରାଜକନ୍ୟା ନାନା ପ୍ରକାର ସୁଖ ବିଳାସରେ କଟିଆସିଛି । ରାଜମହଲରେ ସହସ୍ର ସହସ୍ର ଦାସୀଙ୍କ ସେବାରେ କାଳ ଅତିବାହିତ କରିଛି । ଏବେ ତାକୁ ଏଇ ବଣରେ ରହିବାକୁ ପଡ଼ିବ । କଣ୍ଟକ ଅରଣ୍ୟମାନଙ୍କରେ ମନ ତା'ର କ୍ୱଚିତ୍ ପ୍ରସନ୍ନ ରହିବ ? ସତ ଯଦି ଅଛି ସତ୍ୟତ୍ୱ ନିଷ୍ଠା ହୋଇଥିବ ତେବେ ପ୍ରାକୃତିକ ସୌନ୍ଦର୍ଯ୍ୟର ଉପାସନାରେ ମନ ତା'ର ଭୁଲି-ଯାଇପାରେ । ଏହି ବନ ଅତୀବ ଲତାଗୁଳ୍ମ ବୃକ୍ଷଲତାରେ ପରିପୂର୍ଣ୍ଣ । ନନ୍ଦନ କାନନ ଭଳି ସବୁ ଋତୁରେ ଫଳ ଧାରଣ କରୁଥିବା ଅସଂଖ୍ୟ ବୃକ୍ଷ ଏଠାରେ ବିଦ୍ୟମାନ । ଏହି ବନରେ କେତେ ସରଳ ପାଦପ । ଏହାର ଫୁଲରେ ପରାଗ ପରିପୂର୍ଣ୍ଣ । ସୁବର୍ଣ୍ଣ କନ୍ଦଳ ସମାନ ଥିବା ନୀଳମଣି ପରି ଭ୍ରମର ଯୁକ୍ତ କଦମ୍ବ କୁସୁମ ଶୋଭା ପାଉଛି । ସୁଗନ୍ଧ ବିକିରଣ କରୁଥିବା ଚମ୍ପକ କୁସୁମଠାରୁ ଭ୍ରମର ଦୂରରେ ରହୁଛି । ଯେପରି ଯେଉଁପରି ପୁଣ୍ୟାତ୍ମା ପୁରୁଷକୁ ପାପାତ୍ମା ଭୟ କରୁଛି । ଅଶୋକ ବୃକ୍ଷର ରକ୍ତବର୍ଣ୍ଣ ନୂତନ ପଲ୍ଲବ ବ ମନୋରମ ଶୋଭା ଧାରଣ କରିଛି । ଅଶୋକ ନାମ ତା'ର ସାର୍ଥକ ହୋଇଛି । ଅଶୋକ ବୃକ୍ଷତଳେ ବସିଗଲେ ମନରେ କୌଣସି ପ୍ରକାର ଦୁଃଖ ରହେ ନାହିଁ । ଅଶୋକ ବୃକ୍ଷ କୁସୁମିତ ହେବାପରେ, ନିଜର ପୁତ୍ର, ପୌତ୍ର, ପ୍ରପୌତ୍ର ବେଷ୍ଟିତ ପରିତୃପ୍ତମନା ପୁଣ୍ୟବାନ୍ ଗୃହସ୍ଥର ଭ୍ରମ ସୃଷ୍ଟି କରିଥାଏ ।

ଏହି ବନଶ୍ରୀ ଦେଖିବାକୁ କେତେ ସୁନ୍ଦର । ଏହାର ସୁବାସିତ କୁସୁମ ମନ୍ଦ ମନ୍ଦ ପବନରେ ପ୍ରତ୍ୟେକର ହୃଦୟ ଓ ମନକୁ ଆହ୍ଲାଦିତ କରୁଛି । ବୃକ୍ଷତଳେ ପଡ଼ିଥିବା ପୁଷ୍ପସମୂହ, ବନବିହାର କାଳରେ କିଙ୍କିଣୀଯୁକ୍ତ ମଣ୍ଡିତ କୁସୁମଶଯ୍ୟାର ପରିବାହକ ଶୋଭା ଧାରଣ କରିଛି । କୁନ୍ଦ, କର୍ଣ୍ଣିକାର ପୁଷ୍ପଦ୍ୱାର ଦଶଦିଗ ସୁଶୋଭିତ ଓ ସୁରଭିତ ହେଉଛି । ମାଧବୀ କୁଞ୍ଜରେ ଲତାମଣ୍ଡପ ଆକାଶ ଛତ୍ରବତ୍ ଦେଖା-ଯାଉଛି । ସୁନ୍ଦରୀନାରୀର ମୁକ୍ତ କୁଞ୍ଚିତ କୁନ୍ତଳଗୁଚ୍ଛରୁ ଛିନ୍ନ ମାଳାର ଅଧଃପତିତ ନୂତନ ତରୁଣ ମାଳତୀଲତାର ପୁଷ୍ପସମୂହ ଭୂପୃଷ୍ଠରେ ବୃନ୍ତଚ୍ୟୁତ ହୋଇ ଝଡ଼ିପଡ଼ୁଛି । ମୁକ୍ତିପ୍ରାପ୍ତ ସଂସାରରେ ଗର୍ଭିତ ସାଧୁ ପୁରୁଷ ଭଳି ବୈଜୟନ୍ତୀ ପଟଳ କୁସୁମ ଲତା ଉପରେ ଶୋଭା ପାଉଛି ।

ନୀଳ ବନରାଜିର ବୃକ୍ଷ ଲତା ସମୂହରେ ଆଶ୍ରୟ ନେଇଥିବା ପକ୍ଷିଗଣ, ସଜ୍ଜନ ନରପତି ଆଶ୍ରିତ କଳାକାର, ଗୁଣୀ, ପଣ୍ଡିତ ପୁରୁଷଙ୍କ ଭଳି ସୁଖରେ ବସବାସ କରୁଛନ୍ତି । ଉଦ୍ୟାନ ବିହାରିଣୀ କମନୀୟ କାମିନୀ ସନ୍ଦର୍ଶନ ମତ୍ତ କାମୁକ ପୁରୁଷଙ୍କୁ ବିହ୍ୱଳିତ କଲାଭଳି ଭ୍ରମର ସମୂହ ମଧୁପାନ ଲୋଭରେ ପ୍ରସ୍ଫୁଟିତ ପୁଷ୍ପରାଜି ଉପରେ ଘୂରିବୁଲୁଛନ୍ତି । ରାଜାଙ୍କ ରାଜସଭାରେ ନଟ ନର୍ତ୍ତକଗଣ ନୃତ୍ୟ କଲାପରି ମେଘ ଦର୍ଶନରେ ଉନ୍ମତ୍ତ ମୟୂର ନୃତ୍ୟ କରୁଛନ୍ତି । ବିଦେଶାଗତ ପତିର ପ୍ରତ୍ୟାଗମନ ପାଇଁ ସତୀ ସାଧ୍ୱୀ ଗୁଣବତୀ ଗୀତ ଗାଇବା ଭଳି ବସନ୍ତ ଆଗମନରେ କୋକିଳ କମନୀୟ କଣ୍ଠ ଖୋଲି ମଧୁର କଳନାଦରେ ବନଭୂମିକୁ ମୁଖରିତ କରିଦେଉଛି । ପକ୍ଷୀମାନଙ୍କ ଅତ୍ୟନ୍ତ ମଧୁର ଧ୍ୱନିରେ ବନଦେଶ ସର୍ବଦା ଗୁଞ୍ଜନରଞ୍ଜିତ ହେଉଛି । ଏଠାରେ ମନୁ ପୁତ୍ରୀର ମନ ନିଶ୍ଚୟ ଆନନ୍ଦିତ ହେବ । ଏହି ବୃକ୍ଷ ଗୁଳ୍ମ ଛାୟାରେ ବସି ଏହି ପକ୍ଷିଶାବକ-ମାନଙ୍କ ସହିତ କ୍ରୀଡ଼ାରତ ରହି ଆନନ୍ଦ ଲାଭ କରିବ । ଏଠାରେ ବହୁ ବନ୍ୟପଶୁ ମଧ୍ୟ ବସବାସ କରୁଛନ୍ତି । ହରିଣ ଶାବକର ଆଖିରେ ଆଖି ରଖି ସେମାନଙ୍କ ସହିତ ଖେଳିବ । ନୀଳଗାଈ, ଶାଖାମୃଗ, ତା'ର ଅବଶ୍ୟ ମନୋରଞ୍ଜନ କରିବେ । ମୋ ତପସ୍ୟା ପ୍ରଭାବରେ କ୍ରୂର ସିଂହ, ଶୂକର, ବ୍ୟାଘ୍ର, ହସ୍ତୀ ଆଦି ହିଂସ୍ର ପଶୁଗଣ ସ୍ୱ ସ୍ୱ ସ୍ୱଭାବ ତ୍ୟାଗ କରି ପାଳିତ ହରିଣ ଭଳି ବିଚରଣ କରୁଛନ୍ତି । ମନୁପୁତ୍ରୀ ସେମାନଙ୍କର ସହିତ ମଧ୍ୟ ଖେଳିପାରିବେ ।

ବନଭୂମିର ଶୋଭାରେ ବିମୋହିତ ହୋଇ ମନୁପୁତ୍ରୀ ଏହି ବିନ୍ଦୁସର ସମୀପରେ ଯାଇ ବସିବ । ଏହାର ଜଳ ଯେପରି ସୁସ୍ୱାଦୁ ଓ ଶୀତଳ, ସେହିପରି ଅମୃତ ତୁଲ୍ୟ ଆରୋଗ୍ୟପ୍ରଦ । ଭଗବାନ୍‌ଙ୍କ ପ୍ରେମାଶ୍ରୁ ବିନ୍ଦୁରେ ଏହି ମନୋରମ ତୀର୍ଥ ସୃଷ୍ଟି ହୋଇଛି । ଭଗବତୀ ସରସ୍ୱତୀଙ୍କ ଜଳରେ ପରିପୂର୍ଣ୍ଣ ପରମରମଣୀୟ ଏହି ପୁଷ୍କରିଣୀ ଦୁଃଖୀ ପୁରୁଷଙ୍କୁ ମଧ୍ୟ ସୁଖୀ କରିଥାଏ । ଏହାର କୂଳ ପାଖରେ ଥିବା ସଘନ ବୃକ୍ଷ ରାଜିର ଶୀତଳ ଛାୟାରେ ବସି ବାୟୁ ପ୍ରବାହରେ ଆନ୍ଦୋଳିତ ଜଳବୀଚିକୁ ଦେଖି ମନୁପୁତ୍ରୀ ରାଜମହଲର ସୁଖ ଭୁଲିଯିବ । ଜଳରେ ସନ୍ତରଣରତ ରଙ୍ଗ ବିରଙ୍ଗର ମତ୍ସ୍ୟ, କମଳକଳିକାକୁ କମ୍ପିତ କରୁଛନ୍ତି । ପଶୁପକ୍ଷିଗଣ ଏହି ପବିତ୍ର ଜଳକୁ ପାନ କରି କେତେ ପ୍ରମୁଦିତ ହେଉଛନ୍ତି । ଏହି ପୁଷ୍କରିଣୀ ରାଜପୁତ୍ରୀର ମନୋରଞ୍ଜନ କରିବ । ହଂସ, ସାରସ, ଚକୋର, ଚକ୍ରବାକ, ବକ, ଜଳ କୁକ୍କୁଟ, କୁରର, ବତକ, ଜଳ-କାକ ପରିପୂର୍ଣ୍ଣ ସରୋବର ମହାରାଜା ମନୁଙ୍କ ରାଜ ପରିପୂର୍ଣ୍ଣ କୋଷ ସଦୃଶ ତାହାକୁ ସନ୍ତୋଷ ଦାନ କରିବ । ଆଭ୍ୟନ୍ତରସ୍ଥ ପଦ୍ମ ଭଳି ନଳ, ମକରନ୍ଦ ଏହାର ଗର୍ଭର ଜଳରେ ଲୁଚି ରହିଛନ୍ତି । ସ୍ତ୍ରୀମାନେ ଯେପରି କୌଣସି କଥାକୁ ଲୁଚାଇ ରଖି ପାରନ୍ତି

ନାହିଁ, ମୋହମୟ ସ୍ୱଚ୍ଛଜଳ ପୂର୍ଣ୍ଣ ସରୋବରର ଅଭ୍ୟନ୍ତରସ୍ଥ ବସ୍ତୁ ଲୁଚି ରହେ ନାହିଁ । ମୋର ପ୍ରିୟା ଏହାର କୂଳରେ ଥିବା କୁଞ୍ଜରେ ବିହାର କରି ରାଜଧାନୀର ସୁଖସମ୍ପଦକୁ ଭୁଲିଯିବ ।

ଆଜି ସୂର୍ଯ୍ୟ ଅସ୍ତ ହେବାକୁ ଯାଉଛନ୍ତି । କାଲି ମଝିରେ ଗୋଟିଏ ଦିନ ମାତ୍ର । ପରଦିନ ରାଜା ଆସିଯିବେ । ଏବେଠାରୁ ସେଥିପାଇଁ ପ୍ରସ୍ତୁତ ହେବା ଆବଶ୍ୟକ । ରାଜା ରାଣୀ ଆଶ୍ରମ ଦେଖି ଯେପରି ପ୍ରସନ୍ନ ହେବେ ସେପରି ବ୍ୟବସ୍ଥା ଦରକାର । କର୍ଦ୍ଦମ ମୁନି ଏହିଭଳି ଭାବି ଭାବି ସାରା ରାତି ବିନିଦ୍ର ରହିଲେ । ସକାଳ ହେଲା । ଯଥା ଶୀଘ୍ର ଶଯ୍ୟା ତ୍ୟାଗ କରି ଆଶ୍ରମକୁ ପରିଷ୍କାର କଲେ ଓ ନିତ୍ୟକର୍ମ ସମାପନ କଲେ । ଆଶ୍ରମ ଗୃହ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ କଲେ । ବଂଶ କୁଞ୍ଜଦ୍ୱାରରେ ଏକ ସୁନ୍ଦର ତୋରଣ ତିଆରି ହେଲା । ଆମ୍ର ବୃକ୍ଷରେ ମାଳତୀ ଲତାକୁ ସଜାଇ ରଖାଗଲା । ସାରାଦିନ ମୁନି ଏହିସବୁ କାର୍ଯ୍ୟରେ ଲାଗିରହିଲେ । ମାତା, ପିତା, ଭାଇ, ବନ୍ଧୁ ଥିଲେ ବିବାହ ପ୍ରସ୍ତୁତି କରି-ଥାଆନ୍ତେ; କିନ୍ତୁ ଏଠାରେ ମୁନି ନିଜେ ସମସ୍ତ ପ୍ରସ୍ତୁତି କରିବାକୁ ଲାଗିଲେ । ମନରେ ଉତ୍ସାହ ଥିଲା । ପ୍ରତୀକ୍ଷାର କାଳ ଲମ୍ବି ଲମ୍ବି ଯାଉଥିଲା । ଦିନଟି କଟିଗଲା । ସମୟ ଯେତେ ଗଡ଼ି ଚାଲୁଥାଏ ମୁନିଙ୍କ ଉତ୍ସାହ ସେତିକି ବଢ଼ୁଥାଏ ! ଆଜିର ରାତିଟି ସବୁଠୁ ବଡ଼ ମନେ ହେଉଥାଏ । ଦୀର୍ଘ ଦଶହଜାର ବର୍ଷ ମଧ୍ୟରେ ଏଭଳି ଏକ ଦୀର୍ଘରାତ୍ରି ସେ ଅନୁଭବ କରି ନଥିଲେ । ଆକାଶର ତାରାଗଣଙ୍କୁ ଗଣି ଗଣି ସେ ରାତିଟି ମଧ୍ୟ କଟିଗଲା । ସକାଳେ କୋକିଳର କୁହୁତାନରେ ବନଭୂମି ମୁଖରିତ ହୋଇଉଠିଲା । ଶୀତଳ ସୁଗନ୍ଧ ବସନ୍ତ ବାୟୁ ମନ୍ଦ ମନ୍ଦ ପ୍ରବାହିତ ହେଲା । ଆମ୍ର ମୁକୁଳ ସୁଗନ୍ଧରେ ମୁନିଙ୍କ ହୃଦୟ ପ୍ରମୁଦିତ ହେଲା । କୋକିଳ କୂଜନରେ ମୁନିଙ୍କ ହୃଦୟତନ୍ତ୍ରୀ ଝଙ୍କୃତ ହୋଇଉଠିଲା । ଅରୁଣୋଦୟ ପୂର୍ବରୁ ସେ ଶଯ୍ୟା ତ୍ୟାଗ କଲେ । ଭଗବାନ୍ ଭୁବନ ଭାସ୍କର ପ୍ରତୀଚୀ ଦିଗଙ୍ଗନାର ଅରୁଣ ଶାଢ଼ୀରେ ନିଜେ ମୁଖ ରଖି ଶୋଇ ରହିଥିଲେ । ଅରୁଣ ଅମ୍ବର ପରିହିତା ମଦବିହ୍ୱଳା ପ୍ରାଚୀ ପତିଙ୍କ ଭାବି ବିୟୋଗ ସ୍ମରଣରେ କ୍ରମଶଃ ମ୍ଳାନବଦନା ହେଉଥିଲେ । ମୁନି ଆଜି ଅତୀବ ବ୍ୟଗ୍ର ଓ ବ୍ୟସ୍ତ । ସରସ୍ୱତୀର ସ୍ୱଚ୍ଛ ଜଳରେ ସ୍ନାନ ତର୍ପଣ ସାରି ଅଗ୍ନିଶାଳାରେ ଯଥାବିଧି ହବନ କାର୍ଯ୍ୟ କଲେ । ନିୟମ ରକ୍ଷାପାଇଁ ସାଧାରଣ ଜପ ପରେ ଆସନରେ ବସିରହିଲେ । ଆଶ୍ରମ ଭୂମିକୁ ପୂର୍ବ ରାତ୍ରିରେ ସେ ଗୋମୟରେ ଲେପନ କରିଥିଲେ । ଅଗ୍ନିହୋତ୍ର ସୁଗନ୍ଧିତ ଧୂମରେ ସମଗ୍ର ଆଶ୍ରମ ସୁରଭିତ ହୋଇଥିଲା । ଭଗବାନ ମରୀଚିମାଳୀ ନିଜର ସହସ୍ର ରଶ୍ମି ଦ୍ୱାରା ହସି ହସି ମୁନିଙ୍କ ଆଶ୍ରମରେ ଉପନୀତ ହେଲେ । ତାଙ୍କ ଆଗମନରେ ଲଜ୍ଜାବତୀ ନିଶାବଧୂ ଦୂରକୁ ଚାଲିଗଲେ । ସମସ୍ତ ପ୍ରକାର ମଙ୍ଗଳ ସ୍ୱତଃ ଉପସ୍ଥିତ ହୋଇ ଋଷିଙ୍କ କାର୍ଯ୍ୟରେ ସହଯୋଗ କଲେ । ମୁନି ଆଜି ଆଶ୍ରମର ଶୋଭା ଦେଖି ନିଜେ ବିମୁଗ୍ଧ ହୋଇଗଲେ । ସତେ ଯେପରି ନାରାୟଣ ପ୍ରିୟା ଲକ୍ଷ୍ମୀ ଆଶ୍ରମରେ ବିରାଜିତା ।

ବିଧିବତ୍ ଭସ୍ମଧାରଣପୂର୍ବକ ହାତରେ ମାଳାଧରି ମୁନି ଜପରେ ମନୋନିବେଶ କଲେ । କିନ୍ତୁ ଆଜି ଜପର ଦାୟିତ୍ୱ ହସ୍ତ ଓ ଜିହ୍ୱା ଉପରେ ନ୍ୟସ୍ତ ରହିଲା । ମନ ମନୁ ମହାରାଜଙ୍କ ରଥ ଅନ୍ୱେଷଣରେ ଯାଇଥିଲା । ଗଛରୁ ପତ୍ରଟିଏ ପଡ଼ିବା ମାତ୍ରେ ମୁନି ଚମକିପଡ଼ି ସେହି ଦିଗକୁ ଲକ୍ଷ୍ୟ କରୁଥିଲେ ।

ଦେବର୍ଷି ନାରଦ ଉପଦେଶ ଦେଇ ଗଲାପରେ ରାଣୀ ଶତରୂପା କନ୍ୟା ଦାନର ସମସ୍ତ ସମ୍ଭାର ଏକତ୍ରିତ କଲେ । ଦେବହୂତିର ମନ ହର୍ଷଶୋକର ମଧ୍ୟ ପ୍ରବାହରେ ଭାସୁଥିଲା । ପ୍ରାଣନାଥ ସ୍ୱାମୀଙ୍କ ସଂଯୋଗ ଓ ପୁରଜନ ଓ ପରିଜନଙ୍କ ବିୟୋଗ ଥିଲା ସେହି ହର୍ଷ ଓ ଶୋକର ମୂଳ କାରଣ । ଦେବହୂତିର ସାନଭଉଣୀ ଓ ସଖୀଗଣ ଉପସ୍ଥିତ ହୋଇ କହିଲେ —ଭଉଣି ! ଏତେ ବଡ଼ ତପସ୍ୱୀଙ୍କର ପତ୍ନୀ ହୋଇ ଆମକୁ ଭୁଲିଯିବୁ ନାହିଁ ତ ? ତୁ ତ ଋଷିପତ୍ନୀ ହେବୁ । ଦେବତା, ଗନ୍ଧର୍ବ, ଋଷି, ମୁନି ଆସି ତୋ ପାଦତଳେ ଲୋଟିବେ । ସେତେବେଳେ ତୁ ଆମକଥା କାହିଁକି ମନେ ପକାଇବୁ ? ଆମକୁ ପୁଣି ଚିହ୍ନିବୁ କି ନାହିଁ ସନ୍ଦେହ । ଦେବହୂତିର ପ୍ରୀତିରୋମୋଦ୍ଗତ ବାଣୀ ଶୁଣି ସଖୀଗଣ କହିଲେ —ଭଉଣି ! ଆମକୁ ବୃଥାରେ କାହିଁକି ଗାଳି ଦେଉଛୁ । ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଲେ ମଧ୍ୟ ଦେବର୍ଷି ନାରଦଙ୍କ କଥା ଅନ୍ୟଥା ହେବନାହିଁ । ବରଂ ତୁ କହ, ଆମ୍ଭମାନଙ୍କ କଥା ତୋତେ ଆଉ ଭଲ ଲାଗୁନାହିଁ । ତୁ ନିଶ୍ଚୟ ଅନ୍ୟ କାହାର କଥା ଭାବୁଛୁ ।

ଦେବହୂତି କହିଲେ —ଭଉଣି ! କଣ ହେବ ନହେବ ତାହା ଭଗବାନଙ୍କୁ ଜଣା । ତୁମେ ସମସ୍ତେ ମୋର ପ୍ରାଣଠାରୁ ବଳି ପ୍ରିୟ । ତୁମ୍ଭମାନଙ୍କର ବିୟୋଗ ମୋତେ ଅତ୍ୟନ୍ତ ମର୍ମାହତ କରୁଛି । ଏହା କହୁଁ କହୁଁ ଦେବହୂତି କାନ୍ଦିବାକୁ ଲାଗିଲେ । ସଖୀମାନେ ବସ୍ତ୍ରାଞ୍ଚଳରେ ଆଖି ପୋଛିଦେଇ କହିଲେ—ଭଉଣି ! ଝିଅ ଜନମ ଏହିଭଳି । ସାରା ଜୀବନ ଦୁଃଖ ସହିବ ଓ ଅନ୍ୟକୁ ଦୁଃଖ ଦେବ । ଜନ୍ମ ହେବାମାତ୍ରେ ଘରେ ଘରେ ଉଦାସର ଭାବନା ଖେଳିଯାଏ । ବଡ଼ ହେବାମାତ୍ରେ ମାତା ପିତା ଅହୋରାତ୍ର ଚିନ୍ତିତ ରହନ୍ତି । ବିବାହ ହୋଇ ଶାଶୁଘର ଯିବାବେଳେ ସମସ୍ତଙ୍କୁ କନ୍ଦେଇଦେଇ ଯାଏ । ବିଧାତା କେବଳ କାନ୍ଦିବାପାଇଁ ସ୍ତ୍ରୀମାନଙ୍କୁ ସୃଷ୍ଟି କରିଛନ୍ତି । ପିତା ପୁତ୍ରୀକୁ ଅନ୍ୟର ଉପକାର ପାଇଁ ପାଳନ କରେ, ଯେପରି କୃପଣ ଲୋକ ବହୁ କଷ୍ଟ ସ୍ୱୀକାର କରି ଅନ୍ୟପାଇଁ ଧନସଞ୍ଚୟ କରେ । ଝିଅ ସବୁଦିନ ପାଇଁ ବାପଘରେ ରହିପାରେ ନାହିଁ । ଦିନେ ନା ଦିନେ ତାକୁ ପରଗୃହ ଯିବାକୁ ପଡ଼ିବ । ଭଗବାନ୍ ତୋର ମଙ୍ଗଳ କରନ୍ତୁ । ତୁ ତୋ' ସ୍ୱାମୀଙ୍କର ପ୍ରିୟତମା ପତ୍ନୀଭାବେ ସୁଖୀ ରହ ଏହାହିଁ ଆମର କାମନା । ପୁଅ ଝିଅରେ କୋଳ ତୋର ପୂରିଉଠୁ । ଏହାହିଁ ଆମର ହାର୍ଦ୍ଦିକ ଅଭିଳାଷ । ସାରାରାତି ଏହିଭଳି ଆଲୋଚନାରେ କଟିଲା, ଆଉ ଦେବହୂତିର ନୟନ-ଯୁଗଳରୁ ଅବାରିତ ଅଶ୍ରୁଧାରା ବହି ଚାଲିଲା ।

ସକାଳ ହେଲା । ମହାରାଜାଙ୍କ ଆଦେଶରେ ବିଶାଳ ରଥ ସୁସଜ୍ଜିତ ହୋଇ ଅନ୍ତଃପୁରର ଦ୍ୱାରଦେଶରେ ରଖାଗଲା । ସମସ୍ତ ଜିନିଷ ରଥରେ ଲଦାଗଲା । ମହାରାଜ ଓ ମହାରାଣୀ ସମସ୍ତଙ୍କୁ ଅଭିନନ୍ଦିତ କରୁଥାନ୍ତି । ମହାରାଣୀ ଶତରୂପା କନ୍ୟା ଦେବହୂତିଙ୍କୁ ନେଇ ରଥ ପାଖରେ ପହଞ୍ଚିଲେ । ଅସଂଖ୍ୟ ଦାସଦାସୀ, ସଖୀ, ଦେବହୂତିଙ୍କୁ ଘେରିଗଲେ । ଦେବହୂତି ସମସ୍ତଙ୍କୁ କୁଣ୍ଢାଇଧରି କାନ୍ଦୁଥାନ୍ତି । ମହାରାଜ ଚଞ୍ଚଳ ହେଉଥାନ୍ତି । ମହାରାଣୀ ଯାତ୍ରା ଆରମ୍ଭରେ ଝିଅକୁ ନ କାନ୍ଦିବା ପାଇଁ ବୁଝାଉ-ଥାଆନ୍ତି । ଦେବହୂତି ଶାନ୍ତହୋଇ ରଥରେ ବସିଲେ । ଆଗରେ ମହାରାଜ ଓ ପଛରେ ମହାରାଣୀ ବସିବାପରେ ରଥକୁ ସାରଥି ଚଳାଇନେଲା । ମେଘଭଳି ଘର୍ଘର ଘୋଷରେ ରଥ ଗଡ଼ିଚାଲିଲା । ସହରର ଭଳି ଦାସଦାସୀ, ସଖୀ,ସହୋଦର ଠିଆହୋଇ ଚାହିଁଥାନ୍ତି । ଲୋତକାପ୍ଲୁତ ନୟନରେ ଦେବହୂତି ସେହିମାନଙ୍କ ଆଡ଼କୁ ଚାହିଁ ରହିଥାଏ । ରଥ ରାଜପଥରେ ଉପନୀତ ହେଲା । ସହସ୍ର ସହସ୍ର ଅଶ୍ୱାରୋହୀ ସୈନ୍ୟ ରଥର ଆଗ ପଛରେ ଚାଲିଥାନ୍ତି । ଅନେକ ଦେଶ, ନଦନଦୀ ନଗର ଅତିକ୍ରମ କରି ରଥ ଚାଲିଥାଏ । ମଧ୍ୟ ପଥରେ ବନଟିଏ ରହି ମହାରାଜ ସମସ୍ତଙ୍କୁ ସେହିଠାରେ ରଖି ରାଣୀ ଓ କନ୍ୟା ସହିତ ନିଜେ ରଥ ନେଇ କର୍ଦ୍ଦମ ମୁନିଙ୍କ ଆଶ୍ରମ ଅଭିମୁଖେ ଯାତ୍ରାକଲେ ।

ଶ୍ରେଣୀ ଶ୍ରେଣୀ ପାହାଡ଼ ସମୂହରେ ସେ ଦେଶ ଅତି ସୁନ୍ଦର ଦେଖାଯାଉଥିଲା । ନାନାପ୍ରକାର ଫଳ ପୁଷ୍ପମଣ୍ଡିତ ବୃକ୍ଷଲତା ଦେଖୁଁ ଦେଖୁଁ ମହାରାଜ ସରସ୍ୱତୀ ତୀରସ୍ଥ ମହାମୁନି କର୍ଦ୍ଦମଙ୍କ ଆଶ୍ରମ ନିକଟରେ ଉପସ୍ଥିତ ହେଲେ । ଆଶ୍ରମଠାରୁ କିଛି ଦୂରରେ ବୃକ୍ଷଗୁଳ୍ମରେ ରଥକୁ ରଖି ଖାଲି ପାଦରେ ଚାଲି ଚାଲି ମୁନିଙ୍କ ପାଖକୁ ଯିବା ନିମିତ୍ତ ପ୍ରସ୍ତୁତ ହେଲେ । ପ୍ରଥମେ ମହାରାଜ, ତାଙ୍କ ପଛରେ ରାଣୀ ଓ ସବାପଛରେ ଦେବହୂତି ଚାରିଆଡ଼କୁ ଚାହିଁ ଚାହିଁ ଧୀରେ ଧୀରେ ଆଶ୍ରମ ଆଡ଼କୁ ଅଗ୍ରସର ହେଲେ । ଆଶ୍ରମର ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ଦେବହୂତିର ହୃଦୟ ଆନନ୍ଦରେ ପୁରି ଉଠୁଥିଲା ।

ମହର୍ଷି କର୍ଦ୍ଦମ ବାରମ୍ବାର ଉଠି ଚାରିଆଡ଼କୁ ଚାହୁଁଥିଲେ । ସେ ମନେ ମନେ ଭାବୁଥିଲେ ଏତେ ସମୟ ହେଲା, ମନୁ ମହାରାଜ ଆସିଲେ ନାହିଁ । ଆଜି ତ ଗୁରୁବାର । ଭଗବାନ ଆଜି ଦିନର କଥା ତ କହିଥିଲେ । ଭଗବଦ୍‌ବାକ୍ୟ କେବେ ଅସତ୍ୟ ହୋଇ ନ ପାରେ । ସମ୍ଭବତଃ ଆସୁଥିବେ । ଏହା ଭାବୁ ଭାବୁ ରଥ ଶବ୍ଦ ଶୁଭିଗଲା । ମୁନିଙ୍କ ହୃଦୟ ଚଞ୍ଚଳ ହୋଇଉଠିଲା । ନିଜର ପ୍ରସନ୍ନତାକୁ ଗୋପନ ରଖି ମିଥ୍ୟାରେ ଅର୍ଦ୍ଧୋନ୍ମୀଳିତ ଦୃଷ୍ଟିରେ ବସିରହିଲେ । ଦୂରରୁ ରାଣୀ ଓ ପୁତ୍ରୀ ସହିତ ମହାରାଜ ସ୍ୱୟଂଭୁବ ଆଶ୍ରମଆଡ଼କୁ ଆସୁଥିବାର ଦେଖିଲେ । ଆସନ ତ୍ୟାଗକରି ସ୍ନେହ ଓ ସମ୍ଭ୍ରମର ସହିତ ମୁନି ଠିଆ ହୋଇଗଲେ । ମମତାମୟ ସ୍ୱରରେ ଗଦ୍‌ଗଦ କଣ୍ଠରେ

ମୁନି ଦୂରରୁ ଆଳ କହିଲେ—ସ୍ୱାଗତମ୍ । ସୁସ୍ୱାଗତମ୍ । ଆଜି ଆମର ମହାଭାଗ୍ୟ । ମହାରାଜ ମନୁ ଅଯାଚିତ ଦର୍ଶନ ଦେଇ କୃତାର୍ଥ କଲେ । ଆଜି ଦିନଟି ମଙ୍ଗଳମୟ ।

ମୁନିଙ୍କ ସ୍ୱାଗତ ବାଣୀ ଶ୍ରବଣରେ ମହାରାଜ ମନୁ ଦ୍ରୁତଗତିରେ ଆସି ମୁନିଙ୍କ ଚରଣତଳେ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ । ସପ୍ତଦ୍ୱୀପର ଅଧିପତି ଏକଚ୍ଛତ୍ର ସମ୍ରାଟ୍ ମହାରାଜ ମନୁଙ୍କୁ ମୁନି ନିଜହାତରେ ଉଠାଇଲେ । ତାଙ୍କ ଦେହରୁ ଧୂଳି ଝାଡ଼ିଦେଇ ସ୍ନେହରେ ନିଜ ପାଖରେ ଥିବା ତୃଣାସନରେ ବସାଇଲେ । ଏହି ସମୟରେ ପୁତ୍ରୀକୁ ସଙ୍ଗରେ ନେଇ ମହାରାଣୀ ଆସି ଉପସ୍ଥିତ ହେଲେ । ରାଣୀ ମୁନିଙ୍କ ଚରଣତଳେ ପ୍ରଣାମ କରିବା ପରେ ଲଜ୍ଜିତା ଦେବହୂତି ନିଜ ବସ୍ତ୍ରକୁ ସଯତ୍ନ ରଖି ମାଟିରେ ମୁଣ୍ଡ ଲଗାଇ ପ୍ରଣାମ କଲେ । ପ୍ରଣାମକରି ଉଠିବା ପରେ ମୁନିଙ୍କ ଦୃଷ୍ଟିରେ ତା'ର ଦୃଷ୍ଟି ମିଶିଗଲା । ଲଜ୍ଜାରେ ରାଜକୁମାରୀଙ୍କ ପଲକ ଅଧୋମୁଖୀହେଲା । ସେ ଧୀରେ ଧୀରେ ଯାଇ ମା'ଙ୍କ ପଛରେ ବସିପଡ଼ିଲେ । ମାତାଙ୍କ ବସ୍ତ୍ର ଅନ୍ତରାଳରୁ ଦେବହୂତି ଦେଖିଲେ ବହୁକାଳ ତପସ୍ୟା କରି ମଧ୍ୟ ମୁନିଙ୍କ ଶରୀର ଆଦୌ ଦୁର୍ବଳ ହୋଇନାହିଁ । ଭଗବଦ୍ ଦର୍ଶନଦ୍ୱାରା ସେ ବେଶ୍ ହୃଷ୍ଟପୁଷ୍ଟ, ଦୀର୍ଘଶରୀର, ଦୁଗ୍ଧସ୍ୱଚ୍ଛ କାନ୍ତିଯୁକ୍ତ ଦେଖା ଯାଉଥିଲେ । ପିଙ୍ଗଳ ଜଟାମୁକୁଟ ମଣ୍ଡିତ, ଚନ୍ଦ୍ରତୁଲ୍ୟ ଶୋଭନୀୟ ବିଶାଳ ନେତ୍ର ଯୁଗଳଦ୍ୱାରା ସାକ୍ଷାତ୍ ଶିବଙ୍କ ବେଶ ଧାରଣ କରିଥିଲେ । ଭସ୍ମବିଲେପିତ ଅଙ୍ଗ ଲାବଣ୍ୟ ଆକାଶର ଉଦିତ ପ୍ରାୟ ଚନ୍ଦ୍ରଖଣ୍ଡ ତୁଲ୍ୟ ଚକ୍ ଚକ୍ କରୁଛି । ଦେବହୂତି ସେହି ଶିବରୂପୀ ମୁନିଙ୍କ ଚରଣତଳେ ନିଜର ସର୍ବସ୍ୱ ଅର୍ପଣ କରିଦେଲେ ।

ମହାମୁନି କର୍ଦ୍ଦମ ଗନ୍ଧ, ଅକ୍ଷତ ପୁଷ୍ପ କୁଶମିଶ୍ରିତ ଅର୍ଘ୍ୟ ପ୍ରଥମେ ମନୁ ମହାରାଜାଙ୍କୁ ଅର୍ପଣ କଲେ । ଜଳ, ଫଳ, କନ୍ଦମୂଳଦ୍ୱାରା ଯଥୋଚିତ ସତ୍କାର କଲେ । ମହାରାଜ ବିନୀତଭାବେ ସମସ୍ତ ସ୍ୱୀକାର କରିବାପରେ ମୁନି ରାଜାଙ୍କର ସମସ୍ତ କୁଶଳ ପଚାରି ବୁଝିଲେ । ମହାରାଜ ଅନୁରୂପ କୁଶଳ ଜିଜ୍ଞାସା କରିବାପରେ ମହାମୁନି କର୍ଦ୍ଦମ ଶିଷ୍ଟାଚାର ରକ୍ଷା ନିମିତ୍ତ ତାଙ୍କୁ ଆଗମନର କାରଣ ପଚାରିବା ପାଇଁ ସ୍ଥିରକଲେ ।

**ଆଓତ ଦେଖେ ଭୂପ ଉଠେ ମୁନି ସ୍ୱାଗତ କହ୍ୟୋ ।**
**ବର ଆସନ ବୈଠାୟ ଅର୍ଘ୍ୟ ବିଧିବତ ପୂଜି ଦୀହ୍ୟୋ ॥**
**ହ୍ୱାଁ ପତକ୍ତୁ କୁଁ ବରି ଓଟତେ ନିରଖେ ପୁନି ପୁନି ।**
**ଦୃଷ୍ଟି ବଚ୍ୟ୍ୟୁ ତତୈବ ନେହ ଲଖି ଲେହ୍ୱ କବହୁଁ ମୁନି ॥**
**ଚୀର ବସନ ସରସିଜ ନୟନ ନୟନ, ଜଟା**
**ମୁକୁଟ ମୁନିବର ବଦନ**
**ମନ୍ଦ ହଁସନି ଯୁତ ମଧୁର ମୁଖ, ନିରଖି**
**କୁମରି କୋଲୁଭେ୍ୟାମନ ॥**

# ବିବାହ ପ୍ରସ୍ତାବ

ପ୍ରିୟବ୍ରତୋତ୍ତାନ ପଦୋଃ ସ୍ୱସେୟଂ ଦୁହିତା ମମ ।
ଅନ୍ୱିଚ୍ଛତି ପତିଂ ଯୁକ୍ତଂ ବୟଃ ଶୀଲ ଗୁଣାଦିଭିଃ ॥
ଯଦା ତୁ ଭବତଃ ଶୀଲ ଶ୍ରୁତରୂପବୟୋ ଗୁଣାନ୍ ।
ଅଶୃଣୋନ୍ନାରଦା ଦେଷା ତ୍ୱୟ୍ୟାସୀତ୍କୃତ ନିଶ୍ଚୟା ।

(ଭାଗବତ—୩—୨୨—୯,୧୦)

## ଛପ୍ପୟ

କର୍ଦ୍ଦମ ପୁଚ୍ଛନ୍ତେଁ ପ୍ରଭୋ କହୋ କରି କୃପା କୀହ୍ନି
ସହ ପରିବାର ପଧାରି ବଡ଼ାଇ ମୋକୁଁ ଦୀହ୍ନୀ ॥
ମନୁ ବୋଲେ ମୁନିରାଜ ! ଦୟାୟୁତ ମୋହ ନିହାଭେଂ ।
ଚିନ୍ତା ସାଗର ମଗ୍ନ ପକରି କେ ହାଥ ଉବାରେଂ ॥
ପରମ ସୁଶୀଳା ଗୁଣବତୀ, କନ୍ୟା ସୟାନୀ ହେଁ ଗଈ ।
ଚିତ ଚିନ୍ତା ନିଶିଦିନ ୟୂହୀ, ବ୍ୟାହ ଯୋଗ ତନୟା ଭଈ ।

ବ୍ୟବହାର ପରସ୍ପରର ସ୍ୱାର୍ଥ ଉପରେ ଆଧାରିତ । ବସ୍ତୁ ବିନିମୟ, ଆଦାନ ପ୍ରଦାନ, କାର୍ଯ୍ୟଦ୍ୱାରା ପରସ୍ପରର ସ୍ୱାର୍ଥ ସିଦ୍ଧି ସହିତ ସମ୍ବନ୍ଧ ମଧ୍ୟ ସ୍ଥାପିତ ହୁଏ । ଉଭୟର ସ୍ୱାର୍ଥ ସମାନ ଥିବା ସ୍ଥଳେ କେହି ନିଜର ସ୍ୱାର୍ଥପାଇଁ ଯାହା ପାଖକୁ ଯାଏ, ତାହାର ଗୁରୁତ୍ୱ ବଢ଼ି ଯାଏ । ବିକ୍ରେତାର ଗୃହରେ ବିକ୍ରେତାର ଓ କ୍ରେତାର ଗୃହରେ କ୍ରେତାର ପ୍ରାଧାନ୍ୟ ରହେ । ମହାମୁନି କର୍ଦ୍ଦମଙ୍କର ବିବାହ ପାଇଁ ପ୍ରବଳ ଇଚ୍ଛା ଥିଲା । ସେଥି ନିମିତ୍ତ ଘୋର ତପସ୍ୟା କରି ଭଗବାନ୍ ବାସୁଦେବଙ୍କଠାରୁ ବରଲାଭ କରିଥିଲେ । ମହାରାଜ ମନୁ ମଧ୍ୟ ନିଜ କନ୍ୟାର ବିବାହ ନିମିତ୍ତ ବ୍ୟାକୁଳ ଥିଲେ ; କିନ୍ତୁ କୌଣସି ଋଷି ଯଦି ତାଙ୍କ ପାଖକୁ ପୁତ୍ରୀର କର ପ୍ରାର୍ଥନା କରିବାକୁ ଯାଇଥାନ୍ତେ, ତେବେ ସେ ନିଶ୍ଚୟ ଏଣୁ ତେଣୁ କହିଥାନ୍ତେ । ଆଜି ସେ ନିଜେ ପୁତ୍ରୀକୁ ନେଇ ଦାନ କରିବା ନିମିତ୍ତ ମୁନିଙ୍କ ଆଶ୍ରମକୁ ଆସିଛନ୍ତି । ତେଣୁ ଏଠାରେ କର୍ଦ୍ଦମଙ୍କ ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଛି ।

ମହାମୁନି କର୍ଦ୍ଦମ ସବୁ କିଛି ବୁଝିଥିଲେ । ଭଗବାନ୍ ତାଙ୍କୁ ସବୁକଥା କହି-ଯାଇଛନ୍ତି । ସେ ଭଲଭାବରେ ଜାଣିଥିଲେ ଯେ ମହାରାଜ କନ୍ୟାଦାନ ନିମିତ୍ତ ତାଙ୍କ ଆଶ୍ରମକୁ ଆସିଛନ୍ତି । ତଥାପି ନିଜ ଅଡୁ ପ୍ରଥମେ କିପରି ପ୍ରସ୍ତାବ ଆଗତ କରିବେ । କେଣୁ ନ ଜାଣିଲା ଭଳି ସେ ମହାରାଜ ମନୁଙ୍କୁ ପଚାରିଲେ—ମହାରାଜ ! ମୋଭଳି ଅକିଞ୍ଚନର ଆଶ୍ରମରେ ପାଦଦେଇ କୃପା ପ୍ରଦର୍ଶନ କରିଛନ୍ତି । ଆପଣ ସାକ୍ଷାତ୍ ବିଷ୍ଣୁ ସ୍ୱରୂପ । କାରଣ ଭଗବାନ୍‌ଙ୍କ ପାଳନ ଶକ୍ତିକୁ ନେଇ ଆପଣ ଅବତାର ଧାରଣ କରିଛନ୍ତି । ଆପଣଙ୍କ ଶରୀରରେ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ଇନ୍ଦ୍ର, ବରୁଣ, କୁବେର, ଯମ ଧର୍ମ ଓ ବାୟୁ ସମସ୍ତଙ୍କର ଶକ୍ତି ବିଦ୍ୟମାନ । ଆପଣଙ୍କ ଦର୍ଶନ ଭଗବଦ୍ ଦର୍ଶନ ସହିତ ସମାନ । ଆପଣ ସ୍ୱେଚ୍ଛାବଶତଃ ମୋ ଆଶ୍ରମରେ ଉପନୀତ ହୋଇଛନ୍ତି । ଆସିବାର ଯଦି ବିଶେଷ କିଛି କାରଣ ଥାଏ ତେବେ ନିଃସଙ୍କୋଚରେ ତାହା ପ୍ରକାଶ କରନ୍ତୁ । ମହାରାଜ ମନୁଙ୍କ ସଙ୍କୋଚଭାବ ଲକ୍ଷ୍ୟ କରି ମୁନି ପୁଣି କହିବାକୁ ଲାଗିଲେ—ଆପଣଙ୍କ ଆଗମନର ପ୍ରୟୋଜନ ପ୍ରତ୍ୟକ୍ଷ ମନେ ହେଉଛି । ଆପଣ ଧନୁର୍ବାଣ ଧରି ଯଦି ପୃଥିବୀ ପର୍ଯ୍ୟଟନ କରୁ ନ ଥାନ୍ତେ, ତେବେ ବର୍ଣ୍ଣାଶ୍ରମ ଧର୍ମର ଯଥାବତ୍ ସୁରକ୍ଷା କିଏ କରନ୍ତା ? ଶିଷ୍ଟ ପାଳନ ଓ ଦୁଷ୍ଟଦମନ ଆପଣଙ୍କର ପ୍ରଧାନ କର୍ତ୍ତବ୍ୟ । ଆପଣଙ୍କ ପ୍ରଚଣ୍ଡ ଧନୁର ଟଙ୍କାର ଶବ୍ଦରେ ଚତୁର୍ଦ୍ଦିଗ ମୁଖରିତ ହେଉ ନ ଥିଲେ ଦସ୍ୟୁମାନେ ପ୍ରଜାମାନଙ୍କୁ ଭୀତତ୍ରସ୍ତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଧନ ଜୀବନ ନଷ୍ଟ କରନ୍ତେ । ଆପଣ ସର୍ବଦା ସାବଧାନ ଚିତ୍ତରେ ପ୍ରଜାବର୍ଗଙ୍କ ଦେଖାଶୁଣା କରୁଥିବାରୁ ସେମାନେ ସୁଖରେ ଅଛନ୍ତି । ଅଧର୍ମ ହ୍ରାସ ଓ ଧର୍ମର ବୃଦ୍ଧି ହୋଇଛି । ଆପଣ ପ୍ରଜାବର୍ଗଙ୍କ ପୂଜନୀୟ, ମାନନୀୟ ଓ ବନ୍ଦନୀୟ ହୋଇଛନ୍ତି । ଏହା ଆନନ୍ଦର କଥା । ଆପଣ ମୋ ଆଶ୍ରମରେ ବିଜେ କରିଛନ୍ତି । ଦେବଦୁର୍ଲ୍ଲଭ ଦର୍ଶନ ଦେଇ ଆପଣ ମୋଭଳି ଅକିଞ୍ଚନକୁ କୃତାର୍ଥ କରିଛନ୍ତି । ଆପଣଙ୍କ ଅନୁରୂପ ସ୍ୱାଗତ ସତ୍କାର ମୁଁ କରି ପାରି ନାହିଁ ।

ମୁନି ଯେତେବେଳେ ନ ଜାଣିଲା ଭଳି ଏହି ଭାବେ ମଧୁର କଥାବାର୍ତ୍ତା କରୁ-ଥିଲେ, ରାଜା ଅତ୍ୟନ୍ତ ପ୍ରୀତ ହୋଇ କୃତଜ୍ଞତା ପ୍ରକାଶପୂର୍ବକ କହିଲେ- ଭଗବାନ୍ ଏଭଳି ପ୍ରେମପୂର୍ଣ୍ଣ ସାରଗର୍ଭିତ ବଚନ ଆପଣଙ୍କ ଗୁଣାନୁରୂପ ହୋଇଛି । ଆମେ ଉଭୟ ବ୍ରହ୍ମାଙ୍କଠାରୁ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଆପଣଙ୍କ ଉତ୍ପତ୍ତି ମୁଖରୁ ଓ ମୋର ଉତ୍ପତ୍ତି ବାହୁରୁ ଘଟିଛି । ଆପଣ ବିଷୟଠାରୁ ଦୂରରେ ରହି ତପ, ବିଦ୍ୟା ଓ ଯୋଗ ସାଧନାଦ୍ୱାରା ମୋକ୍ଷଧର୍ମ ଅବଲମ୍ବନ କରୁଥିବାବେଳେ ନିର୍ବିଘ୍ନରେ ଆପଣଙ୍କ କାର୍ଯ୍ୟ ସମାଧାନ ନିମିତ୍ତ ଓ ପ୍ରଜାବର୍ଗଙ୍କ ପରିପାଳନ ନିମିତ୍ତ ବ୍ରହ୍ମା ଆମ ଭଳି କ୍ଷତ୍ରିୟଙ୍କୁ ଜନ୍ମ ଦେଇଛନ୍ତି । ପ୍ରଜାପାଳନ ଆମର ଧର୍ମ । ଆପଣଙ୍କ ଚରଣତଳେ ବସି

ଶିକ୍ଷାଗ୍ରହଣ କରିବା ଆମର ପ୍ରଧାନ କର୍ତ୍ତବ୍ୟ । ଆପଣ ମୋର ପ୍ରଶଂସା ମଧ୍ୟରେ ମୋତେ ରାଜଧର୍ମର ଉପଦେଶ ଦେଇଛନ୍ତି । ପ୍ରଜାଙ୍କୁ ରକ୍ଷା କରିବାରେ ଆମେ ବା କେତେଦୂର ସମର୍ଥ ; ସେହି ଶ୍ରୀହରି ହିଁ ରକ୍ଷା କରିବା ଓ କରେଇବାରେ ଏକମାତ୍ର ସମର୍ଥ । ଆମ୍ଭେମାନେ ଆପଣଙ୍କର ସେବକ ଓ ଦ୍ୱାରପାଳ । ନିଜକୁ କୃତକୃତ୍ୟ କରିବା ନିମିତ୍ତ ଆପଣଙ୍କ ଚରଣ ଦର୍ଶନରେ ଆସିଛୁ । କେବଳ ପୁଣ୍ୟବାନ୍ ଓ ସୌଭାଗ୍ୟ-ଶାଳୀ ବ୍ୟକ୍ତି ଭାବେ ମୁଁ ଆପଣଙ୍କ ସାକ୍ଷାତ୍ ଲାଭ କଲି । ବର୍ତ୍ତମାନ୍ ମୁଁ ଏକ ବିଶେଷ ପ୍ରୟୋଜନ ନେଇ ଆପଣଙ୍କ ପାଖକୁ ଆସିଛି ; କିନ୍ତୁ ତାହା ପ୍ରକାଶ କରିବାରେ ମୋତେ ସଙ୍କୋଚ ଲାଗୁଛି । ମୁନିଙ୍କଠାରୁ ଭରସା ପାଇ ମନୁ ପୁଣି କହିଲେ— ପ୍ରଭୋ ! ଦେବହୂତି ନାମ୍ନୀ ମୋର ଏଇ କନ୍ୟା ପରମ ସୁଶୀଳା । ସେ ଏବେ ବିବାହ ଯୋଗ୍ୟା ହୋଇଛି । ମହାରାଜ । ପିତା ଭାବରେ ମୋର ଇଚ୍ଛା ଯେ ଝିଅଟି ମୋର ଯୋଗ୍ୟପାତ୍ର ଲାଭ କରୁ । ବୟସ୍କା କନ୍ୟାର ବିବାହ ଚିନ୍ତାଠାରୁ ବଳି ବଡ଼ ଚିନ୍ତା ପିତାମାତାଙ୍କର ଆଉ କିଛି ନାହିଁ । ସେଇ ଚିନ୍ତାରେ ମୋର ମନ ବ୍ୟାକୁଳ ହେଉଛି । ତା'ର ଯୋଗ୍ୟ ବରଟିଏ ମିଳିଗଲେ ମୁଁ ଚିନ୍ତାମୁକ୍ତ ହୁଅନ୍ତି ।

ମହାମୁନି କର୍ଦ୍ଦମ ନିଷ୍ପୃହତା ପ୍ରଦର୍ଶନପୂର୍ବକ କହିଲେ—ରାଜନ୍ । ଆପଣ ସତ କହୁଛନ୍ତି । ପୁଣି ମାତା ପିତାଙ୍କ ଆତ୍ମା ସଦୃଶ । ମାତା ପିତା ସର୍ବଦା ତାକୁ ସୁଖୀ ଦେଖିବାର ଆଶା କରନ୍ତି । ଆପଣଙ୍କର ପିଲାପିଲି କେତୋଟି ?

ମହାରାଜ ମନୁ ଭାବିଲେ ମୁନି ବୋଧହୁଏ ସବୁକଥା ଜାଣିବାକୁ ଚାହୁଁଛନ୍ତି । ଶାସ୍ତ୍ରକାରମାନେ ଅଭ୍ରାତୃକା ଅର୍ଥାତ୍ ଭାଇ ନଥିବା କନ୍ୟାର ନିନ୍ଦାଗାନ କରିଛନ୍ତି । ଅଭ୍ରାତୃକା କନ୍ୟା ସହିତ ବିବାହ ହେଲେ ଶ୍ୟାଳକ ବୋଲି କହିବାକୁ କେହି ନଥାଏ । ଶ୍ୟାଳକ ସମ୍ବନ୍ଧ ଅତୀବ ସୁଖଦାୟକ । ଦେବହୂତିର ଭାଇ ନାହିଁ ବୋଲି ମୁନି ପ୍ରାୟ ଭାବୁଛନ୍ତି । ହବୁ ହଗରୁ ଚିନ୍ତା କରି ମହାରାଜ ମନୁ କହିଲେ— ଆପଣଙ୍କ ଦୟାରୁ ମୋର ଦୁଇଟି ପୁଅ ଓ ତିନୋଟି ଝିଅ ଅଛନ୍ତି । ପୁଅ ଦୁହେଁ ପ୍ରିୟବ୍ରତ ଓ ଉତ୍ତାନପାଦ ଏବଂ ଝିଅମାନେ ଆକୂତି, ଦେବହୂତି ଓ ପ୍ରସୂତି ନାମରେ ଅଭିହିତ । ଏ ଝିଅର ନାମ ଦେବହୂତି । ସବୁବେଳେ ଭଗବାନଙ୍କ ଧ୍ୟାନ, ଭଜନ, ପୂଜନରେ ଲାଗି ରହିଥାଏ । କ୍ରୋଧ କ'ଣ ସେ ଜାଣେନାହିଁ । ଘରେ ସମସ୍ତଙ୍କର ସୁଖ ଦୁଃଖ ବୁଝେ । ମୁନି କଡ଼େଇକରି ଦେବହୂତିଙ୍କୁ ଟିକିଏ ଚାହିଁଲେ । ସେ ଜନନୀଙ୍କ ବସ୍ତ୍ରାଞ୍ଚଳ ଆଡୁଆଳରେ ଥାଇ ମୁନିଙ୍କ ଲାବଣ୍ୟଯୁକ୍ତ ମୁଖମଣ୍ଡଳକୁ ଚାହିଁ ରହିଥାଏ । ଆଖି ସହିତ ଆଖି ମିଶିଯିବାରୁ ଦେବହୂତିର ପଲକ ଅଧୋମୁଖୀ ହୋଇଗଲା । ନିଜର ଭାବନାକୁ ଗୋପନ ରଖି ମୁନି କହିଲେ— ମହାରାଜ ! ଆପଣ ବଡ଼ ଭାଗ୍ୟବାନ୍ । ଆପଣଙ୍କର କନ୍ୟାମାନେ ଗୁଣବତୀ । ଆପଣ ଏହି ଝିଅଟି ପାଇଁ ଯୋଗ୍ୟବର ଖୋଜିଲେଣି କି ?

ମୁନିଙ୍କ ପ୍ରଶ୍ନ ଶୁଣି ଦେବହୂତିର ମୁଖମଣ୍ଡଳରେ ହତାଶାର ଛାୟା ଘୋଟିଗଲା । ସେ ମନେ ମନେ ଭୟଭୀତ ହୋଇଗଲା । ମୁନିଙ୍କ ନିଷ୍ପୃହତାସୂଚକ କଥାବାର୍ତ୍ତାରେ ହତାଶଭାବନା ତା'ର ବଢ଼ିଗଲା । ତାଙ୍କ କଥାରେ ବିବାହ କରିବାର କୌଣସି ସୂଚନା ନ ଥିଲା ; କିନ୍ତୁ ମନୁ ମହାରାଜ ଝିଅର ମୁହଁ ଦେଖି ସବୁକଥା ବୁଝିଗଲେ । ଅତି ବିନୟର ସହିତ ସେ କହିଲେ— ଭଗବନ୍ ! ଆଜି ପର୍ଯ୍ୟନ୍ତ ଝିଅ ପାଇଁ ଯୋଗ୍ୟ ବରଟିଏ ପାଇଲି ନାହିଁ । ହଁ, ଭଗବାନ୍ ନାରଦଙ୍କଠାରୁ ଆପଣଙ୍କ ରୂପ, ଗୁଣ, ସ୍ୱଭାବ, ସୌନ୍ଦର୍ଯ୍ୟାଦିର ପ୍ରଶଂସା ଶୁଣି ମନେ ମନେ ଏହି ଆକାଂକ୍ଷା ପୋଷଣ କରିଛି ଯେ କନ୍ୟାଟିକୁ ଆପଣଙ୍କର ଦାସୀଭାବେ ଚରଣତଳେ ସମର୍ପଣ କରିବି । ଏ ପ୍ରକାର ନିବେଦନ ପାଇଁ ମୁଁ ସଙ୍କୋଚ କରୁଥିଲି ; କିନ୍ତୁ ମୋ ଝିଅର ଆଗ୍ରହ ଦେଖି ଆପଣଙ୍କ ପାଖରେ ଉପସ୍ଥିତ ହୋଇଛି । ନିଜ ବାପାଙ୍କ ମୁହଁରୁ ଏଭଳି କଥା ଶୁଣି ଦେବହୂତି ଲଜ୍ଜାରେ ଅଧିକ ସଙ୍କୁଚିତ ହୋଇ ଭୂପୃଷ୍ଠକୁ ଚାହିଁ ରହିଲେ । ହୃଦୟରେ ତା'ର ଅପୂର୍ବ କୁତୁହଳ ଜାତ ହେଉଥିଲା ।

ମୁନି ସମସ୍ତ କଥା ଲକ୍ଷ୍ୟ କରି ସଯତ୍ନଭାବେ କହିଲେ— ମହାରାଜ ! ଆପଣ କିଭଳି କଥା କହୁଛନ୍ତି । ଆମ ଭଳି ବନବାସୀ ମୁନି କେଉଁଠି ଆଉ ରାଜୋଚିତ ସୁଖ ଭୋଗବର୍ଦ୍ଧିତା ଆପଣଙ୍କର ସ୍ନେହମୟୀ କନ୍ୟା କେଉଁଠି ? ମୋର ଏତେ ସାମର୍ଥ୍ୟ କାହିଁ ଯେ ମୁଁ ଆପଣଙ୍କ ଝିଅକୁ ସୁଖୀ କରିପାରିବି ? ମହାରାଜ ବିନୀତ ଭାବେ ଉତ୍ତର ଦେଲେ— ଭଗବନ୍ ! ଆପଣ ସେ ସବୁ କଥା ଆଦୌ ଚିନ୍ତା କରନ୍ତୁ ନାହିଁ । ରାଜମହଲରେ ରହି ମଧ୍ୟ ମୋ ଝିଅ ସର୍ବଦା ବିଷୟ ଭୋଗଠାରୁ ଦୂରରେ ରହେ । ଆପଣ ଦୟାପରବଶ ହୋଇ ମୋ' କନ୍ୟାକୁ ସ୍ୱୀକାର କଲେ, ସେ ଆପଣଙ୍କର ସମସ୍ତ ପ୍ରକାର ସେବା କରିବ । ଆପଣଙ୍କ ଆଶ୍ରମର ସମସ୍ତ କାର୍ଯ୍ୟ ସେ ଏକା ଏକା କରି ପାରିବ । ଗୃହସ୍ଥୋଚିତ ସମସ୍ତ ଜଞ୍ଜାଳରୁ ଆପଣ ମୁକ୍ତ ରହିବେ ।

ସଂସ୍କୃତ ସାହିତ୍ୟରେ 'ସ୍ଥୂଣାଖନନ ନ୍ୟାୟ' ନାମରେ ଏକପ୍ରକାର ନ୍ୟାୟ ଅଛି । ତଦନୁସାରେ ଖୁଣ୍ଟିଟିଏ ପୋତିଦେଇ ତାକୁ ପୁଣି ହଲେଇ ହଲେଇ ଢିଲା କରାଯାଏ । ପୁଣି ପୋତାଯାଏ । ହଲେଇବାର ଅର୍ଥ ଉପାଡ଼ିଦେବା ନୁହେଁ, ବାରମ୍ବାର ହଲେଇବା ଓ ପୋତିବାଦ୍ୱାରା ଖୁଣ୍ଟିଟି ଦୃଢ଼ରୁ ଦୃଢ଼ତର ହୋଇ ପୋତାଯାଏ । ସେହିପରି ମୁନି ପୁନଃ ପୁନଃ ନିଷ୍ପୃହତ୍ୟଦ୍ୱାରା ସମ୍ବନ୍ଧକୁ ଦୃଢ଼ତର କରିବା ଅଭିପ୍ରାୟରେ କହିଲେ—ରାଜନ୍ ! ଆପଣ ସତ୍ୟ କହୁଛନ୍ତି । ଆପଣଙ୍କ ଝିଅ ସୁଶୀଳା ଓ ଧର୍ମପରାୟଣା । ସେବା ବିଷୟରେ ମଧ୍ୟ ଦକ୍ଷତା ରହିଛି । ତଥାପି ଆମେ ତ ସାଧୁଲୋକ, ତପସ୍ୟା ଆମର କାର୍ଯ୍ୟ । ତପସ୍ୟା ସହିତ ପତ୍ନୀର ତ ବଡ଼ ବିରୋଧ ଦେଖାଯାଏ ।

ଦେବହୂତିର ମୁହଁ ଫିକା ପଡ଼ିଗଲା । ସେ ତ ଦୃଷ୍ଟିଭାବରେ ନିଜ ମନୋଭାବ ପ୍ରକାଶ କଲେ । ମୋତେ ଏତେ ଶୀଘ୍ର ଏଠୁ ନିର୍ବାସିତ ହୋଇ ଫେରିଯିବାକୁ ପଡ଼ିବ ? ଫେରିଗଲେ ସଖୀ ସହଜନ ମୋତେ କଣ କହିବେ ? ନାରଦଙ୍କ କଥା କଣ ଅନ୍ୟଥା ହୋଇପାରେ ? ବିଧାତାର ରେଖା କି କଣ ଲିଭିଯାଏ ? କିନ୍ତୁ ମୁନି ତ ଅନିଚ୍ଛା ସୂଚକ କଥାବାର୍ତ୍ତା କରୁଛନ୍ତି । ଏହିସବୁ କଥା ଭାବିବା ମାତ୍ରେ ତା'ର ସମସ୍ତ ଅଙ୍ଗ ଶିଥିଳ ହୋଇଗଲା ; କିନ୍ତୁ ତଳେ ପଡ଼ିବା ପୂର୍ବରୁ ମାଙ୍କ ସାହାଯ୍ୟରେ ନିଜକୁ ସମ୍ଭାଳିନେଲେ । ଦେବହୂତିଙ୍କ ସମଗ୍ର ଶରୀର ସ୍ୱେଦଜଳରେ ସିକ୍ତ ହୋଇଗଲା ।

ମହାରାଜ ମନୁ ଗମ୍ଭୀରଭାବେ ବିନୟଯୁକ୍ତ ସ୍ୱରରେ କହିଲେ—ମୁନିବର ! ମୁଁ ଶ୍ରଦ୍ଧାର ସହିତ ଝିଅକୁ ମୋର ଆପଣଙ୍କ ପାଖକୁ ନେଇଆସିଛି । ନାରଦ କହି ନଥିଲେ ମୁଁ ଏଭଳି ଦୁଃସାହସ କେବେହେଲେ କରି ନଥାନ୍ତି । ମୁଁ ଶୁଣିଛି, ଆପଣ ନୈଷ୍ଠିକ ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କରିନାହାନ୍ତି । ଆପଣ ଉପକୁର୍ବାଣ ବ୍ରହ୍ମଚାରୀ । ବ୍ରହ୍ମଚର୍ଯ୍ୟ ବ୍ରତ ଶେଷରେ ଗୃହସ୍ଥାଶ୍ରମରେ ପ୍ରବେଶ କରିବା ନିମିତ୍ତ ଆପଣଙ୍କର ଇଚ୍ଛା ଅଛି । ଏହା ଯଦି ସତ୍ୟ, ତେବେ ଆପଣଙ୍କୁ ମୋ କଥା ସ୍ୱୀକାର କରିବାକୁ ହେବ ।

ଯେତେବଡ଼ ତ୍ୟାଗୀ ହେଲେ ମଧ୍ୟ ଯଦି ଶ୍ରଦ୍ଧାପୂର୍ବକ କେହି କୌଣସି ଉପଯୋଗୀ ବସ୍ତୁ ନେଇ ଆସି ପହଞ୍ଚିଛି; ତ୍ୟାଗ ଅଭିମାନରେ ତାହାର ତିରସ୍କାର କରିବା ସର୍ବଦା ଅନୁଚିତ । ତା'ର ପ୍ରସନ୍ନତା ନିମିତ୍ତ ଆଣିଥିବା ବସ୍ତୁ ଗ୍ରହଣ କରିବା ବିଧେୟ । ନିଜ କାର୍ଯ୍ୟରେ ଆବଶ୍ୟକ ନ ହେଲେ ପରେ ତାହା ଅନ୍ୟକୁ ପ୍ରଦାନ କରାଯାଇପାରେ । ପରମ ତ୍ୟାଗୀ ଜନର ଏହାହିଁ କର୍ତ୍ତବ୍ୟ ; କିନ୍ତୁ ଯାହାର କାମନା ଅଛି, ଇଚ୍ଛା ଅଛି ଆଉ କେହି ସେହି ଇପ୍ସିତ ବସ୍ତୁକୁ ଶ୍ରଦ୍ଧାପୂର୍ବକ ସମର୍ପଣ କରୁଛି ; ତାହା ଆନନ୍ଦମନରେ ଗ୍ରହଣ କରିବା ଉଚିତ । ଯେ ଏଭଳି ନ କରେ ଓ ବସ୍ତୁଦାତାକୁ ତିରସ୍କାର କରେ ସେଠାରେ ଆଣିଥିବା ଲୋକର ହୃଦୟ ଦୁଃଖିତ ହୁଏ । ତେଣୁ ତା'ର ଅଭିଶାପ ପଡ଼ିଯାଏ ; କିନ୍ତୁ ତିରସ୍କର୍ତ୍ତାର ସେହି ବସ୍ତୁ ପ୍ରତି ପ୍ରବଳ ଇଚ୍ଛା ହୁଏ ଏବଂ ସେଥିପାଇଁ ଅନ୍ୟଠାରେ ପ୍ରାର୍ଥୀ ହେବାକୁ ପଡ଼େ । କୃପଣ ଲୋକେ କିଛି ନ ଦେଇ ଘୋର ନିନ୍ଦା କରନ୍ତି । ଏହିଦ୍ୱାରା ତ୍ୟାଗୀର ଯଶ ନଷ୍ଟହୁଏ, କୀର୍ତ୍ତି ମଳିନ ହୋଇଯାଏ । ତେଣୁ ସ୍ୱତଃ ଶ୍ରଦ୍ଧାନୀତ ଇପ୍ସିତ ବସ୍ତୁକୁ ଅବହେଳା କରିବା ଆଦୌ ଠିକ୍ ନୁହେଁ । ଜାଣିବା ଲୋକକୁ କେବେ ହେଲେ ନିନ୍ଦା କରିବା ଠିକ୍ ନୁହେଁ । ଏହାହିଁ ଶାସ୍ତ୍ର ନୀତି । କୁମାରୀ କନ୍ୟା ପାଇଁ ହଜାର ହଜାର ପତି ମିଳିବେ । ଗୋଟିଏ ସ୍ଥାନରେ ଠିକ୍ ନ ହେଲେ ଅନ୍ୟଠି, ସେଠାରେ ନହେଲେ ଅନ୍ୟ କେଉଁଠି ପ୍ରସ୍ତାବର ଆଲୋଚନା କରାଯାଇ ପାରେ । ବିବାହଦ୍ୱାରା

ଅତୁଟ ସମ୍ବନ୍ଧ ସ୍ଥାପିତ ହୁଏ । କେବଳ ଭଗବାନ୍ ନାରଦଙ୍କ ଆଦେଶ ଅନୁସାରେ ମୁଁ ଆପଣଙ୍କ ସହିତ ଏଭଳି ପ୍ରସ୍ତାବ କରିବାକୁ ସାହସ କରିଛି । ଆପଣ ଅନିଚ୍ଛା ପ୍ରକାଶକଲେ ମୋର କୌଣସି ଦୁଃଖ ନାହିଁ । ମୁଁ ଅନ୍ୟ କେଉଁଠି ସମ୍ବନ୍ଧ ସ୍ଥାପନ କରିପାରେ ।

ପିତାଙ୍କର ସ୍ପଷ୍ଟୋକ୍ତି ଶୁଣି ଦେବହୂତି ଡରିଗଲେ । ପିତା ଏଠାରେ ମଧ୍ୟ ନିଜର ତେଜସ୍ୱିତା ପ୍ରକାଶ କରିଛନ୍ତି । ମୁନି ବିବାହ କରିବା ପାଇଁ ଗୃହୁଁ ଥିଲେ ବି ଏକଥା ଶୁଣି ଆଉ କ'ଣ ରାଜି ହେବେ ? ସେ ମନେ ମନେ ଅଧିକରୁ ଅଧିକ ଭୟ ପାଉଥିଲେ । ମହାମୁନି କର୍ଦ୍ଦମ ଭାବିଲେ କଥାବାର୍ତ୍ତା କ୍ରମଶଃ ନୀରସ ହେବାକୁ ଯାଉଛି । ତେଣୁ ସ୍ନେହ ମିଶ୍ରିତ ସ୍ୱରରେ ସେ କହିଲେ—ମହାରାଜ ! ମୋର ଅଭିପ୍ରାୟ ଠିକ୍ ତାହା ନୁହେଁ । ଭଗବାନ୍ ନାରଦ ଆପଣଙ୍କୁ ଯାହା ସବୁ କହିଛନ୍ତି ସେ ସମସ୍ତ ସତ୍ୟ । ମୁଁ ଉପକୁର୍ବାଣ ବ୍ରହ୍ମଚାରୀ, ମୁଁ ବିବାହ କରିବାକୁ ଇଚ୍ଛୁକ । ମୁଁ ଯାହା କହିଲି ତା'ର ଲକ୍ଷ୍ୟ ହେଉଛି ଝିଅକୁ ଆପଣଙ୍କର ଯେପରି କିଛି କଷ୍ଟ ନ ହେବ । ନୋହିଲେ ସପ୍ତଦ୍ୱୀପା ବସୁମତିର ଏକଛତ୍ର ଶାସକ ମହାରାଜ ମନୁଙ୍କ ରୂପବତୀ, ଗୁଣବତୀ, ସୁନ୍ଦରୀ କନ୍ୟାର ପାଣି ଗ୍ରହଣ କଲେ ମୁଁ ନିଜକୁ ଭାଗ୍ୟବାନ ମନେ କରିବି ; କିନ୍ତୁ, ମହାରାଜ ! ମୋର ଗୋଟିଏ ସର୍ତ୍ତ ଅଛି । ମୁଁ ଆପଣଙ୍କ କନ୍ୟାକୁ ବିବାହ କରିବି । ସନ୍ତାନ ସନ୍ତତି ନ ହେବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ପୁତ୍ରୀ ସହିତ ଗୃହସ୍ଥାଶ୍ରମରେ ରହିବି । ଏହାପରେ ମୁଁ ସର୍ବସଙ୍ଗ ବିନିର୍ମୁକ୍ତ ହୋଇ ଶମଦମାଦି ହିଂସାରହିତ ଧର୍ମାଚରଣ ପୂର୍ବକ ସନ୍ନ୍ୟାସ ଧର୍ମ ଅବଲମ୍ବନ କରିବି । ମୁଁ ପୁଣି ଅନନ୍ୟଭାବରେ ସେହି ସର୍ବେଶ୍ୱର ଅନନ୍ତ ଭଗବାନଙ୍କ ଉପାସନାରେ ଲୀନ ହୋଇଯିବି ।

ମୁନି କର୍ଦ୍ଦମଙ୍କ ଶ୍ରୀମୁଖ ବାଣୀ ଶ୍ରବଣରେ ରାଜା ଓ ରାଣୀ ଆନନ୍ଦିତ ହେଲେ । ଦେବହୂତିର ଆଶଙ୍କା ଦୂରୀଭୂତ ହେଲା ଓ ହୃଦୟ ତା'ର ଶାନ୍ତିଲାଭ କଲା । ଶରତ୍ କାଳୀନ ଚନ୍ଦ୍ର ଭଳି ମୁଖର ଶୋଭା ପ୍ରକାଶିତ ହେଲା । ଚକୋରୀ ଭଳି ସେ ମୁନିଙ୍କ ମୁଖଚନ୍ଦ୍ରକୁ ନିରୀକ୍ଷଣ କଲା । ମହାରାଜ ମନୁ ଭାବିଲେ ଯାହାହେଉ କଥା ନିଷ୍ପତ୍ତି ହୋଇଗଲା । ହାର୍ଦ୍ଦିକଭାବେ ମୁନି ବିବାହକୁ ସ୍ୱୀକାର କରିଛନ୍ତି । ମୋର ପତ୍ନୀ ମଧ୍ୟ ସନ୍ତୁଷ୍ଟ ଅଛନ୍ତି । ଝିଅର ପୂର୍ଣ୍ଣ ସମ୍ମତି ମଧ୍ୟ ରହିଛି । ସେ ଆନନ୍ଦରେ ଅଧୀର ହୋଇ ଉଠିଲେ । ବୈଦିକ ରୀତିରେ ବିବାହକାର୍ଯ୍ୟ ସମ୍ପାଦନ ନିମିତ୍ତ ମହାରାଜ ପ୍ରସ୍ତୁତିରେ ଲାଗିପଡ଼ିଲେ ।



ମୈତ୍ରେୟ ମୁନି କହିଲେ—ବିଦୁର ! କର୍ଦ୍ଦମ [illegible] ପାଣି-
ଗ୍ରହଣ କରିଥିଲେ । ଅଦ୍ୱୈତରୁ ଦ୍ୱୈତର ସୃଷ୍ଟି ଏବେ ସେହିଦିନଠାରୁ ଏକର ସ୍ଥିତି
ଉଦ୍‌ଯୋଗ ଆରମ୍ଭ ହେଲା ।

## ଛପ୍‌ପୟ

ମୁନି ନାରଦ କହେଁ ସୁନି ଗୃହସ୍ଥାଶ୍ରମ କିଁ ଭଗବାନ୍ ।
ସ୍ୱୀକାରେଂଗେ ଯୁବତୀ ସୋଚ ଆୟୋ ତବ ଚରନନ ॥
କନ୍ୟା ତବ ଅନୁରୂପ କାହେ ମୁନିବର ସ୍ୱୀକାରେଂ ।
ପୁତ୍ରୀଚିନ୍ତା ଉଦଧି ମଗ୍ନ ମୋହେ ନାଥ ଉବାରେଂ ॥
ମୁନି ବୋଲେ ଇଚ୍ଛା ହତୀ, ପର ଝଂଝଟ ତେଂ ହେଂ ଡରୁଁ ।
ତନୟା ଲେ ଅୟେ ସ୍ୱୟଂ, ଫିର ନାହିଂ କେସେ କରୁ ॥

# କର୍ଦ୍ଦମ ଓ ଦେବହୂତି ବିବାହ

(୧୪୪)

ସୋଽନୁଜ୍ଞାତ୍ୱା ବ୍ୟବସିତଂ ମହିଷ୍ୟା ଦୁହିତୁଃ ସ୍ଫୁଟମ୍ ।
ତସ୍ମୈ ଗୁଣଗଣାଢ୍ୟାୟ ଦଦୌ ତୁଲ୍ୟାଂ ପ୍ରହର୍ଷିତଃ ।।
ଶତରୂପା ମହାରାଜ୍ଞୀ ପାରିବର୍ହାନ୍ମହାଧନାନ୍ ।
ଦମ୍ପତ୍ୟୋଃ ପର୍ଯ୍ୟଦାତ୍ ପ୍ରୀତ୍ୟା ଭୂଷାବାସଃ ପରିଚ୍ଛଦାନ୍ ।।

(ଭାଗବତ-୩-୨୨-୨୨,୨୩)

ଛପ୍‌ପୟ

କପଟ ରହିତ ମୁନି ବଚନ ସୁନେ ନୃପ ମୁଦିତ ଭୟେ ଅତି ।
ଦେବହୂତି ମୁଖକମଲ ଖିଲ୍ୟୋ ସମୁଝିମନ ଅନୁମତି ।।
ସବକୀ ସମ୍ମତି ସମୁଝି ବ୍ୟାହ କୀ ବିଧି ସବ କୀହ୍ନୀ ।
ରାଜା ରାନୀ ହରଷି ସୁତା ମୁନିବର କୋ ଦୀହ୍ନୀ ।।
ଦୁହିା ଦୁଲହିନ ମିଲିଗୟେ ଜଙ୍ଗଲ ମହଁ ମଙ୍ଗଲ ଭୟୋ ।
କନକ ଅଙ୍ଗୂଠୀ ଜସ ସୁଘଡ଼,ତସ ସୁନ୍ଦର ନଗ ଜଡ଼ିଗୟୋ ।।

ଶାସ୍ତ୍ରକାରମାନେ ବିବାହ ଯୋଗ୍ୟ ହୋଇ ନଥିବା କନ୍ୟାକୁ କୁମାରୀ କହନ୍ତି । ସେହି କନ୍ୟା ଶାସ୍ତ୍ରୀୟ ବିଧାନ ଅନୁସାରେ ଦାନକୁ କନ୍ୟାଦାନ କହନ୍ତି । ଯେଉଁ କୁମାରୀ କନ୍ୟା ଯୌବନରେ ପଦାର୍ପଣ କରିଛି ଓ ଯାହାର ବିବାହର ଆବଶ୍ୟକତା ପ୍ରତୀତ ହେଉଛି, ତାହାକୁ ଋଷିମାନେ ବିବାହ ନାମରେ ନାମିତ କରିଛନ୍ତି । ବ୍ରାହ୍ମ, ଗାନ୍ଧର୍ବ, ରାକ୍ଷସ, ପୈଶାଚ ଆଦି ବିବାହର ଅନେକ ଭେଦ ଅଛି । କନ୍ୟାଦାନରେ ମାତା ପିତା ନିଜର ଇଚ୍ଛା ଅନୁସାରେ କନ୍ୟାର ବିବାହ ଦିଅନ୍ତି । ଏଥିରେ କନ୍ୟାର ସମ୍ମତି ଆବଶ୍ୟକ ପଡ଼େନାହିଁ । କଥାରେ ଗାଈ ଓ କନ୍ୟାକୁ ଯାହା ହାତରେ ସାଙ୍ଗ କରିଦେବ,ସେମାନେ ତା'ହାତରେ ଚାଲିଯିବେ । ବିବାହରେ ମାତାପିତାଙ୍କ ଇଚ୍ଛାର ପ୍ରାଧାନ୍ୟ ରହେ; କାରଣ ଅପରିପକ୍ୱ ଅବସ୍ଥାରେ ବାଳକ ବାଳିକା ବିବାହଭଳି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ସିଦ୍ଧାନ୍ତ ନେବପାଇଁ ସମର୍ଥ ହୋଇନଥାନ୍ତି । ସେମାନେ

କ୍ଷଣିକ ପ୍ରଲୋଭନରେ ପ୍ରାପ୍ତ ପନ୍ଥା ଯାଆନ୍ତି । ପିତାମାତାଙ୍କ ବିଷୟରେ ଅଯଥା ଅବହେଳା କରିବା ଏକ ମହାନ୍ ଅପରାଧ । ସେମାନେ ଆମର ଯେତେ ହିତ ସାଧନ କରନ୍ତି, ସେପରି ଅନ୍ୟ କେହି କରିପାରିବ ନାହିଁ । ଆମର ସୁଖ ଓ କଲ୍ୟାଣ ବିଷୟରେ ବାପ ମା ସର୍ବାଧିକ ଚିନ୍ତା କରନ୍ତି । ସେମାନେ ଯାହା କରନ୍ତି, ସେ ସମସ୍ତ ଆମର ହିତ ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ । ତଥାପି କିଅ ଯୁବତୀ ଓ ସାବାଳକ ହେବାପରେ ମାତା ପିତା ତା'ର ସମ୍ବନ୍ଧ ବହୁପୂର୍ବରୁ ବୁଝିବା ଆବଶ୍ୟକ । ତାହା ନକଲେ ହୁଏତ କନ୍ୟାର ଭାବୀ ଗାର୍ହସ୍ଥ୍ୟ ଜୀବନ ଦୁଃଖମୟ ହୋଇଥାଏ ।

ଦେବହୂତି ବିବାହ ଯୋଗ୍ୟା ହୋଇଥିଲେ । ସେ ଉକ୍ତ ଜାତ ଅବସ୍ଥା ହୃଦୟଙ୍ଗମ କରିଥିଲେ । ମହାରାଜ ମନୁ ମୁନିଙ୍କ ସହିତ କଥାବାର୍ତ୍ତା କରୁଥିବାବେଳେ ମଝେ ମଝେ କନ୍ୟାର ମୁଖଦେଖି ତାର ହୃଦ୍‌ଗତ ଭାବନାକୁ ବୁଝୁଥିଲେ । ପ୍ରଥମରୁ ସେ ଜାଣିଥିଲେ ଯେ, ନାରଦଙ୍କ ମୁଖରୁ ମୁନିଙ୍କ ରୂପ ଗୁଣ ସ୍ୱଭାବର ଚର୍ଚ୍ଚା ଶୁଣି ଦେବହୂତି ଆକୃଷ୍ଟା ହୋଇଥିଲେ । ମୁନିଙ୍କ ସ୍ୱୀକାରୋକ୍ତି ପରେ କନ୍ୟାର ପ୍ରସନ୍ନବଦନ ଦେଖି ମହାରାଜ ସନ୍ତୁଷ୍ଟ ହୋଇଥିଲେ । କନ୍ୟା ବିଷୟରେ ତାଙ୍କର ଚିନ୍ତା ଦୂର ହୋଇଗଲା । ପତ୍ନୀଙ୍କ ସ୍ପଷ୍ଟ ସମ୍ମତି ଲାଭ କରି ବିବାହ ସାମଗ୍ରୀ ଏକତ୍ରୀକରଣରେ ସ୍ୱୟଂ ଆତ୍ମନିୟୋଗ କଲେ ।

ମହାମୁନି ମୈତ୍ରେୟ କହୁଛନ୍ତି —ବିଦୁର ! ସେତେବେଳେ ସତ୍ୟଯୁଗର ପ୍ରାରମ୍ଭାବସ୍ଥା । ମନୁ ଓ ଶତରୂପାଙ୍କ ବିବାହରେ ସ୍ୱୟଂ ବ୍ରହ୍ମା ଆଦେଶ ଦେଇଥିଲେ । ସେ ପର୍ଯ୍ୟନ୍ତ ବିବାହ ସମ୍ବନ୍ଧରେ ବୈଦିକ ବିଧିବିଧାନର ପ୍ରଚାର ଓ ପ୍ରସାର ହୋଇ ନଥିଲା । ଅଗ୍ନିଙ୍କୁ ସାକ୍ଷୀ ରଖି ବୈଦିକମନ୍ତ୍ର ଉଚ୍ଚାରଣପୂର୍ବକ ବର୍ଣ୍ଣାଶ୍ରମ ଧର୍ମର ବ୍ୟବସ୍ଥା ଅନୁସାରେ ପ୍ରଥମେ ମନୁ ଓ ଶତରୂପାଙ୍କ ବିବାହକାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା ; କିନ୍ତୁ ଶାସ୍ତ୍ରୋକ୍ତ ବିବାହ ବିଧି ଅନୁସାରେ ପ୍ରଜାପତି କର୍ଦ୍ଦମ ଓ ଦେବୀ ଦେବହୂତିଙ୍କ ବିବାହ କାର୍ଯ୍ୟ ସମାହିତ ହେଲା । ଏହି ବିବାହରେ ସର୍ବତ୍ର ଆନନ୍ଦର ଢେଉ ଖେଳିଗଲା । ଦେବଗଣ ଆନନ୍ଦରେ ଦୁନ୍ଦୁଭି ବାଦ୍ୟ ସହିତ ପାରିଜାତ କୁସୁମ ବୃଷ୍ଟି କଲେ । ଗନ୍ଧର୍ବ-ଗଣ ସଙ୍ଗୀତ ଗାନ, ଅପ୍ସରଗଣ ନୃତ୍ୟ ପରିବେଷଣ ଓ ଋଷିଗଣ ସାମମନ୍ତ୍ର ଧ୍ୱନିରେ ବନଭୂମିକୁ ମୁଖରିତ କରିଥିଲେ । ମନୁ ଓ ଶତରୂପା ବରବଧୂଙ୍କୁ ନାନା ଆଶୀର୍ବାଦ ଦେଇଥିଲେ । ମହାରାଣୀ ନାନାପ୍ରକାର ମୂଲ୍ୟବାନ୍ ବସ୍ତ୍ର, ଆଭୂଷଣ ଓ ଗୃହସ୍ଥାଶ୍ରମ ଉପଯୋଗୀ ଉପକରଣମାନ କନ୍ୟାକୁ ଆନନ୍ଦରେ ଦାନ କଲେ । ଏହିଭାବେ ଦୁହିଁଙ୍କ ବିବାହ ସମ୍ପନ୍ନ ହେଲା । ମହାରାଜା ଚିନ୍ତାମୁକ୍ତ ହେଲେ ।

ବର୍ତ୍ତମାନ ସମସ୍ୟା ଅନ୍ୟପ୍ରକାରେ ଉପସ୍ଥିତ ହେଲା । କନ୍ୟା ଗୃହରେ ରାଜା ଓ ରାଣୀ ପାଣି ପିଇବେ କିପରି ? ତେଣୁ ରାଜଧାନୀ ପ୍ରତ୍ୟାବର୍ତ୍ତନ ନିମିତ୍ତ ପ୍ରସ୍ତୁତ ହୋଇ-

ଗଲେ । ବିବାହ ବିଷୟରେ କୁତୂହଳ ଥିଲା । ବିବାହ କାର୍ଯ୍ୟ ଶେଷ ହେଲା ଆଉ କୁତୂହଳ ମଧ୍ୟ ଶେଷହେଲା । ବର୍ତ୍ତମାନ କୁତୂହଳର ସ୍ଥାନ ଗ୍ରହଣ କଲା ଭବିଷ୍ୟତ କର୍ତ୍ତବ୍ୟ ଚିନ୍ତା । ଝିଅ ପୁଣି ଠାରୁ ବିଦାୟ ନେବାକୁ ହେବ, ଏହି କଥା ଭାବିବାମାତ୍ରେ ମହାରାଜାଙ୍କ ହୃଦୟ ବ୍ୟାକୁଳ ହୋଇଉଠିଲା । ଯାହାକୁ ଆଜିଯାଏ କେତେ ମମତା ଆଦର ଓ ସ୍ନେହସୋହାଗରେ ଲାଳନପାଳନ କରିଥିଲେ, ସେ ପର ହୋଇଯିବ । ଅନ୍ୟ ପରିବାରର ଓ ଅନ୍ୟ ଗୋତ୍ରର ନାରୀଭାବେ ପରିଚିତ ହେବ । ଏହା ଭାବିବାମାତ୍ରେ ମହାରାଜାଙ୍କ ହୃଦୟ ଫାଟିଯାଉଥାଏ । ବର-ବଧୂଙ୍କୁ ଆଶୀର୍ବାଦ ଦେଇ ମହାରାଜ ଯିବାକୁ ଉଦ୍ୟତ ହେବାମାତ୍ରେ କନ୍ୟାର କୋମଳ ହୃଦୟ ଫାଟିପଡ଼ିଲା । ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ବାପା ମାଙ୍କୁ କୁଣ୍ଢାଇ ସେ ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲା । ଏପର୍ଯ୍ୟନ୍ତ ଅବରୁଦ୍ଧ ଥିବା ଅଶ୍ରୁଧାରା ଆଉ ରହିପାରିଲା ନାହିଁ । ଶ୍ରାବଣର ବାରିଧାରାଭଳି ନେତ୍ରଯୁଗଳରୁ ବହିଚାଲିଲା । ବାରମ୍ବାର କନ୍ୟାର ମୁଣ୍ଡରେ ହାତବୁଲାଇ ଗଦ୍‌ଗଦ୍ କଣ୍ଠରେ ମହାରାଜ କହିଲେ—ଝିଅ ! ଆଉ କାନ୍ଦନା ମା ! ମୁନି ବର୍ତ୍ତମାନ ତୋର ସର୍ବସ୍ୱ । ମୁଁ ଶୀଘ୍ର ତତେ ଫେରେଇ ନେବି । ଝିଅକୁ କାନ୍ଦିବାକୁ ମନା କରୁଥିଲେ ବି ମହାରାଜ ସ୍ୱୟଂ କାନ୍ଦୁଥିଲେ । କନ୍ୟାର ସ୍ନେହ ଅଲୌକିକ । ଦେବହୂତି ବାପାଙ୍କୁ କୁଣ୍ଢାଇ ଧରିଥାଏ । ମହାରାଣୀ ଆସି ଝିଅ ମୁଣ୍ଡରେ ହାତ ବୁଲାଇ ବାରମ୍ବାର କହିଲେ—ମା, ଏଭଳି ବ୍ୟାକୁଳ ହେବା ଠିକ୍ ନୁହେଁ । ଝିଅ କଣ ସବୁଦିନ ବାପାଙ୍କ ପାଖରେ ରହି ପାରିବ, ତାକୁ ଦିନେ ନା ଦିନେ ନିଜ ଘରକୁ ଯିବାକୁ ପଡ଼ିବ ।

ବର୍ତ୍ତମାନ ଦେବହୂତି ବାପାଙ୍କୁ ଛାଡ଼ି ସ୍ନେହମୟୀ ଜନନୀଙ୍କୁ କୁଣ୍ଢାଇ ଧରିଲେ । ମା'ର ପବିତ୍ର କୋଳରେ ମୁହଁ ଗୁଞ୍ଜି ଧକେଇ ଧକେଇ କାନ୍ଦିବାକୁ ଲାଗିଲେ । ମା, ମୋତେ ଏ ଜଙ୍ଗଲରେ ଏକା ଛାଡ଼ିଦେଇ କୁଆଡ଼େ ଯାଉଛ । ମା'ଙ୍କ ହୃଦୟ ତରଳି ଯାଉଥାଏ । ମା ଓ ଝିଅଙ୍କୁ ଏଭଳି କାନ୍ଦୁଥିବାର ଦେଖି ମହାମୁନି କର୍ଦ୍ଦମଙ୍କ ହୃଦୟ ବ୍ୟାକୁଳ ହୋଇଉଠିଲା । ସେ ନୀରବ ରହି ଭାବୁଥାନ୍ତି—ଗୃହସ୍ଥାଶ୍ରମରେ ଏହିଭଳି କେତେ ଯେ ହୃଦୟ ବିଦାରକ ଅବିସ୍ମରଣୀୟ ଘଟଣା ଘଟୁଥିବ ତାହାର ହିସାବ କିଏ ରଖିଛି । ଏହିକଥା ଭାବୁ ଭାବୁ ମୁଣ୍ଡ ତାଙ୍କର ତଳକୁ ନଇଁଗଲା । ନୟନଯୁଗଳ ଲୋତକାପ୍ଲୁତ ହୋଇଉଠିଲା । ନିଜ ଶାଶୁ ଶ୍ୱଶୁରଙ୍କୁ ବିଦାୟ ଦେବା ପାଇଁ ମୁନି ଆଶ୍ରମର ସୀମାପର୍ଯ୍ୟନ୍ତ ଗଲେ । ରାଜା ଓ ରାଣୀ ଯେତେବେଳେ ରଥଉପରେ ବସିଲେ ସେତେବେଳେ ଦେବହୂତିର ଧୈର୍ଯ୍ୟବନ୍ଧ ଭାଙ୍ଗିଗଲା । ଦୌଡ଼ିଯାଇ ସେ ରଥକୁ ଯାବୁଡ଼ି ଧରିଲେ । ମହାରାଣୀ କାନ୍ଦୁଥାନ୍ତି । ମହାରାଜା ରଥରୁ ଓହ୍ଲାଇ ଝିଅକୁ ଆଲିଙ୍ଗନ କରି କହିଲେ—ମା ଦେବହୂତି, କିଛି ଚିନ୍ତା କରନା ମା, ଆମେ ସମସ୍ତେ ଯିବା ଆସିବା କରିବା । ତୁ ଆଦୌ ବ୍ୟସ୍ତ ହୁଅନା ମା ! ଏହିଭଳି ସାନ୍ତ୍ୱନା ଦେଇ

ରାଜା ରଥରେ ବସି ରଥ ଚଳାଇ ନେବାକୁ ଆଦେଶ ଦେଲେ । ଘର୍‌ଘର୍ ଶବ୍ଦ କରି ରଥ ଦୌଡ଼ିଚାଲିଲା । ରଥର ବିଶାଳ ପତାକା ମାତା ପିତା ବିୟୋଗଜନିତ ଦୁଃଖିନୀ ଦେବହୂତିର ସରଳ ଚିତ୍ତଭଳି ଚଳଚଞ୍ଚଳ ହେଉଥିଲା ।

ମୁନି ଓ ଦେବହୂତି ବାୟୁଭଳି ଧାବମାନ ରଥକୁ ଦୃଷ୍ଟିପଥରୁ ଅନ୍ତରାଳହେବା ପର୍ଯ୍ୟନ୍ତ ଚାହିଁରହିଲେ । କିଛି ସମୟ ଧରି ରଥର ପତାକା ଦେଖାଯାଉଥିଲା । ତା'ମଧ୍ୟ ଅଦୃଶ୍ୟ ହୋଇଗଲା । ରଥଚକ୍ରଘାତଉତ୍ଥିତ ଧୂଳିପଟଳ ମଧ୍ୟ ଧୀରେ ଧୀରେ ଶାନ୍ତ ହେଲା । ଦୁଃଖିତ ହୃଦୟରେ ଦୁହେଁ ଆଶ୍ରମ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ । ମହାରାଜ ପତ୍ନୀ ସହିତ ପ୍ରତ୍ୟାବର୍ତ୍ତନ ପଥରେ ସରସ୍ୱତୀ ନଦୀତୀରବର୍ତ୍ତୀ ମୁନିମାନଙ୍କ ଆଶ୍ରମଦେଖି ଦେଖି ଯାଉଥିଲେ । ଆଶ୍ରମରୁ ଅଗ୍ନିହୋତ୍ର ଧୂମ ନିର୍ଗତ ହେଉଥିଲା । ବଲ୍‌କଲ ବସ୍ତ୍ରଖଣ୍ଡମାନ ବୃକ୍ଷଶାଖାରେ ଶୁଖୁଥିଲା । ହୋମ ନିମିତ୍ତ ସଂଗୃହୀତ ସମିଧ ଇତସ୍ତତଃ ପଡ଼ିଥିଲା । ପୁଷ୍ପ-ଫଳଶୋଭିତ ବୃକ୍ଷଲତାଙ୍କର ମନୋହର ରୂପ ଦର୍ଶକର ପ୍ରାଣ ଓ ମନକୁ ପୁଲକିତ କରୁଥିଲା । ପୁଣ୍ୟ ଉପବନର ଶୋଭା ନିରୀକ୍ଷଣ କରୁ କରୁ ଗଙ୍ଗାତୀରବର୍ତ୍ତୀ ବର୍ହିଷ୍ମତୀ ନଗରୀ ନିକଟରେ ରଥ ଉପସ୍ଥିତ ହେଲା । ବ୍ରହ୍ମାବର୍ତ୍ତର ପ୍ରଜାବର୍ଗ ମହାରାଜାଙ୍କ ପ୍ରତ୍ୟାଗମନ ବାର୍ତ୍ତା ପାଇବା ମାତ୍ରେ ସ୍ୱାଗତ ସମ୍ବର୍ଦ୍ଧନା ନିମିତ୍ତ ଆଗେଇଗଲେ । ନଗରୀର ରାଜପଥ, ଗୃହ, ଅଟ୍ଟାଳିମାନ ବିଭିନ୍ନ ପ୍ରକାର ପତ୍ରପୁଷ୍ପରେ ମଣ୍ଡିତ କରିଗଲା । ପ୍ରଜାମାନଙ୍କର ସ୍ୱାଗତ ସ୍ୱୀକାରପୂର୍ବକ ମହାରାଜା ରାଜଧାନୀରେ ରହି ସୁଖରେ ପ୍ରଜା ପାଳନ କଲେ ।

ଶୌନକ ପଚାରିଲେ—ସୂତ ମହାରାଜ ! ମନୁଙ୍କ ନଗରୀର ନାମ ବର୍ହିଷ୍ମତୀ କାହିଁକି ରଖାଗଲା । ପୃଥିବୀ ମଧ୍ୟରେ ସେହିସ୍ଥାନକୁ ସର୍ବଶ୍ରେଷ୍ଠ, ପବିତ୍ରତମ ଓ ବ୍ରହ୍ମର୍ଷି ସେବିତ ଯୋଗ୍ୟ ଭାବେ ସ୍ୱୀକାର କରିବାର କାରଣ କଣ ? ଏହାର ଉତ୍ତର ଦେଇ ମହର୍ଷି ସୂତ କହିଲେ—ଭଗବାନ୍ ପୃଥିବୀକୁ ଉଦ୍ଧାରକରି ଯେତେବେଳେ ପାତାଳ ପୁରରୁ ଫେରିଲେ, ସେହିସ୍ଥାନରେ ସେ ପ୍ରଥମେ ଆତ୍ମପ୍ରକାଶ କଲେ । ସେଥିପାଇଁ ସେ ଅଞ୍ଚଳ ଶୂକରକ୍ଷେତ୍ର ନାମରେ ନାମିତ ହେଲା । ବ୍ରହ୍ମାବର୍ତ୍ତରେ ଭଗବାନ୍ ନିଜ ଶରୀର ମାର୍ଜନ କରିଥିଲେ । ତାଙ୍କ ବରାହ ଶରୀରରୁ ବହୁ ଲୋମ ସେଠାରେ ଝଡ଼ିପଡ଼ିଥିଲା । ସେହି ଲୋମରାଜି କୁଶ, କାଶରୂପେ ଦୃଷ୍ଟିହେଲେ । ବରାହ ବିଷ୍ଣୁଙ୍କ ରୋମଭାବେ ପରିକଳ୍ପିତ କୁଶ ପବିତ୍ର ଭାବରେ ଶ୍ରାଦ୍ଧ, ଯଜ୍ଞ, ଦେବ, ଋଷି ଓ ପିତୃକାର୍ଯ୍ୟରେ ବ୍ୟବହାର କରାଗଲା । ମହାରାଜ ମନୁ ସେହି ସ୍ଥାନରେ କୁଶକାଶ ନିର୍ମିତ ଆସନରେ ଭଗବାନଙ୍କ ପୂଜା କରିଥିଲେ । ସେହି ଦିନଠାରୁ ନଗରୀର ନାମ ହେଲା ବର୍ହିଷ୍ମତୀ । ଏବେ ମଧ୍ୟ ସେହି ଭୂମି କୁଶକାଶ ମଣ୍ଡିତ, ବ୍ରହ୍ମର୍ଷିସେବିତ ଓ ଯଜ୍ଞାଦି ନିମିତ୍ତ ପବିତ୍ର ସ୍ଥାନ ବୋଲି ଚିହ୍ନିତ ହେଉଛି ।

ଶୌନକଙ୍କ ଅନ୍ୟ ପ୍ରଶ୍ନର ଉତ୍ତର ଦେଇ ସୂତ କହିଲେ – ମହାରାଜ ମନୁଙ୍କ ସମସ୍ତ ଚରିତ୍ର କହିଲି, ସେଭଳି ପବିତ୍ର ନାହିଁ । ନିମିଷମାତ୍ର କାଳମଧ୍ୟ ତାଙ୍କର ବ୍ୟର୍ଥରେ କଟେ ନାହିଁ । ନିଦ୍ରାତ୍ୟାଗଠାରୁ ପୁଣି ନିଦ୍ରାଯିବା ପର୍ଯ୍ୟନ୍ତ ସେ ଭଗବତ୍ ସେବା, ପୂଜା, ନାମକୀର୍ତ୍ତନରେ ବ୍ୟାପୃତ ଥିବାରୁ ତାଙ୍କୁ କେବେହେଲେ ଶାରୀରିକ ମାନସିକ, ଦୈବିକ ଓ ଭୌତିକ ଦୁଃଖ ଭୋଗକରିବାକୁ ପଡିନଥିଲା । ସେ ଏକ ମନ୍ୱନ୍ତର କାଳ ପୃଥିବୀ ଶାସନ କରିଥିଲେ ।

ମୈତ୍ରେୟ କହୁଛନ୍ତି— ବିଦୁର ! ତୁମେ ଆଦିରାଜ ମହାରାଜ ସ୍ୱାୟଂଭୁବ ମନୁଙ୍କ ପବିତ୍ର ଚରିତ୍ର ଶୁଣିଲ । ସେହିଁ ସୃଷ୍ଟିର ବିଧାନ ପ୍ରଣେତା । ବଡ଼ ବଡ଼ ତ୍ୟାଗୀ, ତପସ୍ୱୀ, ଯତି, ବିରାଗୀ, ଧର୍ମାତ୍ମାଗଣ ତାଙ୍କ ପାଖକୁ ଆସି ନିଜନିଜର ଶଙ୍କା ସମାଧାନ କରୁଥିଲେ । ସେ ମୁନିମାନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯେଉଁ ଶାସ୍ତ୍ରୀୟ ବିଧିବିଧାନର ଉପଦେଶ ଦେଇଥିଲେ ତାହାହିଁ ଆଜି 'ମନୁସ୍ମୃତି' ନାମରେ ପ୍ରସିଦ୍ଧ ଗ୍ରନ୍ଥ । ବିଦୁର ! ଆପଣଙ୍କ ନୀତିବାଣୀ ଯେପରି 'ବିଦୁରନୀତି' ନାମରେ ପ୍ରଚଳିତ ସେହିପରି ମନୁଙ୍କ ନିୟମାବଳୀ ପୁତ୍ରପୌତ୍ରାଦି କ୍ରମେ ଆଜି ପର୍ଯ୍ୟନ୍ତ ଅନୁସୃତ ହୋଇଆସୁଛି । କଳିଯୁଗରେ ଏହିସବୁ ନିୟମରେ ଶିଥିଳତା ଦେଖାଦେବ, କେତେକ କ୍ଷେତ୍ରରେ ଏହା ଲୁପ୍ତ ହୋଇଯିବ । କିନ୍ତୁ ପୁଣି ସତ୍ୟଯୁଗ ଆସିଲେ ଋଷିମାନେ ସେହି ନିୟମର ପ୍ରଚାର ଓ ପ୍ରସାର କରିବେ ।

## ଛପ୍‌ପୟ

ଭସ୍ମେ ନୃପତି ନିଶ୍ଚିନ୍ତ ବିବାହ କରି ମିଳି କର୍ଦ୍ଦମ ତେଂ ।
ଦୋନୋଂ କୂ ସମୁଝାୟ ଚଲେ ମନୁ ମୁନି ଆଶ୍ରମ ତେଂ ॥
ତନୟା ନିରଖି ବିୟୋଗ ମାତୁ ପିତୁ ହିୟ ଭରି ଆୟୋ ।
ଛାତୀ ତେଂ ଲିପଟାୟ ନେହ କୋ ନୀର ବହାୟୋ ॥
ବସ୍ତ୍ର ଧେନୁ ବିଲଗୀତ ସମୟ ବାର ବାର ଧୀବରାୟ କସ ।
ମନୁ ଶତରୂପାତେଂ ଲିପଟି, ଦେବହୂତି ବିଲଖାୟ ତସ ॥

# କର୍ଦ୍ଦମ ମୁନି ଓ ଦେବହୂତି ଚରିତ

(୧୫୪)

ପିତୃଭ୍ୟାଂ ପ୍ରସ୍ଥିତେ ସାଧ୍ୱୀ ପତିମିଙ୍ଗିତକୋବିଦା ।
ନିତ୍ୟଂ ପର୍ଯ୍ୟଚରତ୍ ପ୍ରୀତ୍ୟା ଭବାନୀବ ଭବଂ ପ୍ରଭୁମ୍ ॥
ବିଶ୍ରମ୍ଭେଣାତ୍ମଶୌଚେନ ଗୌରବେଣ ଦମେନ ଚ ।
ଶୁଶ୍ରୂଷୟା ସୌହୃଦେନ ବାଚା ମଧୁରୟା ଚ ଭୋଃ ॥

(ଭାଗବତ—୩-୨୩-୧, ୨)

ଛପ୍ପୟ

ମାତାପିତା ପୁରଗୟେ କୁବଁରୀ ନେ ଧୀରଜ ଧାରୟୋ ।
ପତି ସେବା ସର୍ବସ୍ୱ ସତୀ କୋ ଧର୍ମ ବିଚାର୍ୟୋ ॥
ତଜେ ଦମ୍ଭ, ଛଲ, କପଟ, କାମତେଂ ଚିତ୍ତ ହଟାୟୋ ।
ସଂଯମ ଶୌଚ ସମେତ ଧର୍ମ ସେବା ଅପନାୟୋ ॥
ଅସନ ବସନ ସୁଧୀ ନହିଁ ରହୀ ,
ମଲିନ କୁଟିଲ କଚ ସବ ବଦନ ।
ତନ ମନ ତେଂ ସେବା ନିରତ କରହିଁ
ସଦା ଇନ୍ଦ୍ରିୟ ଦମନ ॥

ବିଷୟ ସହିତ ସଂସର୍ଗ ନ ହେବା ପର୍ଯ୍ୟନ୍ତ ଇନ୍ଦ୍ରିୟମାନଙ୍କର ଧୈର୍ଯ୍ୟ ପରୀକ୍ଷା ହୋଇପାରେ ନାହିଁ । ଇନ୍ଦ୍ରିୟଗଣଙ୍କ ବିକାର ଉତ୍ପାଦକ ବିଷୟ ସମ୍ମୁଖରେ ଥାଇ ମଧ୍ୟ ଯାହାର ମନରେ କୌଣସି ପ୍ରକାର ବିକୃତି ଉତ୍ପନ୍ନ ହୁଏ ନାହିଁ, ସେ ହିଁ ପ୍ରକୃତରେ ଧୀର ପୁରୁଷ । ବସ୍ତୁର ଅଭାବରେ ସଂଯମ ସାଧନ ସହଜ । ଅନ୍ନ ନ ଥିଲେ ଏକାଦଶୀ ବ୍ରତପାଳନ ସମ୍ଭବ ; କିନ୍ତୁ ସବୁକିଛି ଅତି ନିକଟରେ ଥାଇ ମନକୁ ସେଥିରୁ ନିବୃତ୍ତ ରଖିବା ସର୍ବଶ୍ରେଷ୍ଠ ସଂଯମ । ବିଷୟ ଓ ଇନ୍ଦ୍ରିୟର ସମ୍ବନ୍ଧକୁ ମୁନିମାନେ ଅଗ୍ନି ଓ ଘୃତ ସହିତ ତୁଳନା କରିଛନ୍ତି । ଅଗ୍ନି ପାଖରେ ଘୃତ ନିଶ୍ଚିତ-

ସବେ ତରଳିଯିବ । ବିଷୟ ସଂସର୍ଗରେ ଚିତ୍ତ ଚଞ୍ଚଳ ହେବା ସ୍ୱାଭାବିକ ; କିନ୍ତୁ ଯେତେବେଳେ ଯେ ମନକୁ ସଂଯତ କରେ ତାକୁ ଆଦର୍ଶ ପୁରୁଷ କହନ୍ତି । ତାହାହିଁ ଚରିତ୍ରବତ୍ତା । ସେହିଭଳି ଚରିତ୍ରବାନ୍ ପୁରୁଷଙ୍କ ଚରିତ ସ୍ମରଣରେ ହୃଦୟ ଆମର ପବିତ୍ର ହୁଏ । ସେମାନଙ୍କ ପଥ ଅନୁସରଣଦ୍ୱାରା ଜୀବନର ମହତ୍ତ୍ୱ ପ୍ରକାଶ ପାଏ ।

ମୈତ୍ରେୟ ମୁନି ବିଦୁରଙ୍କୁ କହୁଛନ୍ତି—ବିଦୁର ! କର୍ଦ୍ଦମମୁନି ବିବାହ ନିମିତ୍ତ ଇଚ୍ଛୁକ ଥିଲେ । ବିବାହପରେ ତାଙ୍କର ସେ ଇଚ୍ଛା ଆଉ ରହିଲା ନାହିଁ । ବିଷୟବୃତ୍ତିରୁ ମନକୁ ଦୃଢ଼ତାର ସହିତ ନିବୃତ୍ତ ରଖି ପତ୍ନୀଙ୍କୁ କହିଲେ—ରାଜପୁତ୍ରି ! ତୁମେ ଆଦୌ ଭୟଭୀତ ହେବନାହିଁ । ତୁମ ପ୍ରତି ମୋର ଆଦୌ ଅଶ୍ରଦ୍ଧା ନାହିଁ । ତୁମେ ଜାଣ, ତପସ୍ୟା ହିଁ ଆମର ଧନ । ସେଥିପାଇଁ ଆମେ ତପୋଧନଭାବେ ପରିଚିତ । ମୁଁ ପୁଣି ତପସ୍ୟା କରିବି । ଏଥିରେ ତୁମେ ଦୁଃଖ କରିବ ନାହିଁ ତ ? ଅଗ୍ନି ସମ ତେଜସ୍ୱୀ ତପୋଧନ ପତିଙ୍କ ଆଗରେ ହାତଯୋଡ଼ି ଦେବହୂତି କହିଲେ—ପ୍ରଭୋ ! ବାଲ୍ୟକାଳରୁ ମୁଁ ସେହି ଶିକ୍ଷାଲାଭ କରିଛି । ସତୀ ସାଧ୍ୱୀ ରମଣୀର ପତି ହିଁ ସର୍ବସ୍ୱ । ପତିସେବା ତା'ର ମୁଖ୍ୟ କର୍ତ୍ତବ୍ୟ । ପତିଙ୍କ ଇଚ୍ଛାରେ ନିଜର ଇଚ୍ଛାକୁ ମିଶାଇ ପାରିଲେ ନାରୀ ଜୀବନର ସମସ୍ତ ସାର୍ଥକତା ଲାଭକରେ । ଆପଣ ଯେଉଁଥିରେ ଆନନ୍ଦ ଲାଭ କରିବେ ସେଥିରେ ମୁଁ ଆନନ୍ଦିତ । ଆପଣ ତପସ୍ୟା କରନ୍ତୁ, ମୁଁ ଆପଣଙ୍କର ସମସ୍ତ ସେବା ନିର୍ବାହ କରିବି ।

ପତ୍ନୀଙ୍କଠାରୁ ଏଭଳି ଧର୍ମଯୁକ୍ତ ବଚନ ଶୁଣି କର୍ଦ୍ଦମ ମୁନିଙ୍କ ହୃଦୟ ଆନନ୍ଦରେ ପୂରିଉଠିଲା । ସେ ପୁଣି ତପସ୍ୟାରେ ଲାଗିଗଲେ । ସେ ସମାଧିସୁଖ ଅନୁଭବ କରିଥିଲେ । ତେଣୁ ତୁଚ୍ଛ ବିଷୟସୁଖଜନିତ ଆନନ୍ଦ ପ୍ରତି ତାଙ୍କର ଆଗ୍ରହ ନ ଥିଲା । ସକାଳେ ନିଦ୍ରାତ୍ୟାଗକରି ନିତ୍ୟକର୍ମ ପରେ ମୁନି ଧ୍ୟାନରେ ବସନ୍ତି । କେତେବେଳେ ରାତିରେ ଧ୍ୟାନଭଙ୍ଗ ହୁଏ ତ କେବେ କେବେ ଦିନେ, ଦୁଇଦିନ ବା କେତେଦିନ ବିତିଯାଏ । ଅଗ୍ନିହୋତ୍ରାଦି କାର୍ଯ୍ୟ ଦେବହୂତି କରନ୍ତି । ରାଜଦୁହିତାର ଅଭିମାନ ତ୍ୟାଗକରି ଦେବହୂତି ଅହୋରାତ୍ର ମୁନିଙ୍କ ସେବାରେ ନିୟୋଜିତ ହୁଅନ୍ତି । ନିଜେ ବଣରୁ ଶୁଖିଲାକାଠ ସଂଗ୍ରହ କରନ୍ତି । ଆଶ୍ରମର ପରିଷ୍କାର ପରିଚ୍ଛନ୍ନତା, କନ୍ଦମୂଳଫଳ ସଂଗ୍ରହ, ଲିପାଲିପି କରି ଗୃହମଣ୍ଡନ, ସ୍ୱସ୍ତିକା ମଣ୍ଡଳାଦି ଅଙ୍କନ କରିବା କାର୍ଯ୍ୟରେ ଦେବହୂତିଙ୍କ ସମୟ କଟିଯାଏ । ଧ୍ୟାନଭଙ୍ଗ ହେବାପରେ ପତିଙ୍କୁ ପ୍ରସାଦ ନିବେଦନ କରନ୍ତି । ଉଦ୍‌ବୃତ୍ତ ପ୍ରସାଦଲାଭ କରି ସୁଖରେ ଥାନ୍ତି । ଯେଉଁ ସମୟରେ ପତି ଦୀର୍ଘଦିନ ଧରି ଧ୍ୟାନମଗ୍ନ ରହନ୍ତି, ସେ ସମୟରେ ଦେବହୂତି ଉପବାସରେ ରହି ପତିଙ୍କ ସେବା କରନ୍ତି ।

ବିଦୂରଙ୍କ ପ୍ରଶ୍ନର ଉତ୍ତର ଦେଇ ମୈତ୍ରେୟ କହିଲେ—ମହାଭାଗ ! ଯୁବା ବୟସରେ ଆଉ ସର୍ବଗୁଣସମ୍ପନ୍ନ ପତିଲାଭ କରିମଧ୍ୟ ଦେବହୂତିର ମନରେ ସାଂସାରିକ-ସୁଖ ଇଚ୍ଛା ନ ଥିଲା । ମନ ତା'ର ଧର୍ମପାଶରେ ଆବଦ୍ଧଥିଲା । ପତିଙ୍କ ସୁଖରେ ସେ ନିଜକୁ ସୁଖୀ ଭାବୁଥିଲା । ମନରେ ଦେବହୂତିଙ୍କର କୌଣସି ପ୍ରକାର କପଟ, କାମ୍ୟ ଅଭିମାନ ନ ଥିଲା । ସେ ପତିଙ୍କୁ ପରମେଶ୍ୱର ଜ୍ଞାନକରି ତାଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ ଓ ଆଚରଣ କଳ୍ପନା କରୁ ନ ଥିଲେ । ନିରଳସଭାବେ ଅତନ୍ଦ୍ରହୋଇ ସର୍ବଦା ସାବଧାନତାର ସହିତ ନିଜର କର୍ତ୍ତବ୍ୟ ପାଳନ କରିଯାଉଥିଲା । ତ୍ରିସନ୍ଧ୍ୟାରେ ସରସ୍ୱତୀର ସ୍ୱଚ୍ଛଜଳରେ ସ୍ନାନ, ଶୌଚ ଓ ଯମ ନିୟମ ପାଳନ ପୂର୍ବକ ଦେବେହେଲେ ଶୃଙ୍ଗାର ରଚନା କରୁ ନ ଥିଲା । କୁଞ୍ଚିତ କୃଷ୍ଣକୁନ୍ତଳ ଜଟାରେ ପରିଣତ ହେଲା । ଯୌବନର ସମସ୍ତ ଚିହ୍ନ ବିଲୁପ୍ତପ୍ରାୟ ହୋଇଗଲା । ସୁନ୍ଦର ତନୁ ଶୁଷ୍କ ଓ କୃଶହେବା ସଙ୍ଗେ ଚର୍ମାବରଣ କୃଷ୍ଣବର୍ଣ୍ଣ ଧାରଣ କଲା । ଚକ୍ଷୁ କୋଟରଗତ, କପୋଳ କଠୋର ହେଲେ ମଧ୍ୟ ଦେବହୂତି ହସି ହସି ସବୁକାମ କରୁଥିଲେ । ଉସ୍ତ ଚିନ୍ତିତ ଚିତ୍ତରେ ପତିଙ୍କ ସହିତ ପ୍ରେମସମ୍ଭାଷଣ କରୁଥିଲେ । ଦେବହୂତିଙ୍କ ସେବାରେ ମୁନିଙ୍କ ହୃଦୟ ତରଳିଗଲା । ଦିନେ ସସ୍ନେହରେ ଦେବହୂତିର ମୁଣ୍ଡରେ ହାତ ବୁଲାଇ ମହାମୁନି କର୍ଦ୍ଦମ କହିଲେ— ରାଜପୁତ୍ରି ! ମୁଁ ତୁମର ନିଷ୍କପଟ ସେବାରେ ଅତ୍ୟନ୍ତ ସନ୍ତୁଷ୍ଟ । ମୋର ସେବା କରିବାକୁ ଯାଇ ତୁମେ ନିଜ ଶରୀରର ଚିନ୍ତା ତ୍ୟାଗ କରିଛ । ତୁମକୁ ପତ୍ନୀ ରୂପେ ପାଇ ମୁଁ କୃତାର୍ଥ ହୋଇଛି ।

ଅଞ୍ଜଳିବଦ୍ଧ ହୋଇ ଦେବହୂତି କହିଲେ—ପ୍ରଭୋ ! ଆଜ୍ଞା ଆପଣ ଏପରି କିଆଁ କହୁଛନ୍ତି । ଏ ଶରୀର ତ ଆପଣଙ୍କର । ସେବା କରିବା ମୋ'ର ଧର୍ମ । ସେବା ନ କଲେ ମୁଁ ଧର୍ମଚ୍ୟୁତ ହେବି । ମୁଁ ତ କୌଣସି ପ୍ରଶଂସନୀୟ କାର୍ଯ୍ୟ କରିନାହିଁ । କେବଳ ନିଜ କର୍ତ୍ତବ୍ୟ ହିଁ ପାଳନ କରିଛି । ସେଥିରେ ମଧ୍ୟ, ଅବଳା ହୋଇଥିବାରୁ ଅପ୍ରମାଦ ଭାବେ ପୂର୍ଣ୍ଣହୋଇ ନ ଥିବ ।

ଭଗବାନ୍ କର୍ଦ୍ଦମ କହିଲେ—ରାଜନନ୍ଦିନି ! ପ୍ରାଣ ହିଁ ପ୍ରାଣୀର ସର୍ବାଧିକ ପ୍ରିୟବସ୍ତୁ । ଏହି ଦେହରେ ପ୍ରାଣରହେ । କେହି ସ୍ୱେଚ୍ଛାରେ କେହି ନିଜର ଦେହକୁ କ୍ଷୀଣ ବା ନଷ୍ଟକରେ ନାହିଁ । ତୁମେ ମୋପାଇଁ ନିଜର ଶରୀର ପ୍ରତି ଦୃଷ୍ଟି ଦେଇନାହଁ । ତୁମର କାର୍ଯ୍ୟ ପ୍ରଶଂସନୀୟ । ସମସ୍ତେ କର୍ତ୍ତବ୍ୟ ପାଳନ କରିପାରନ୍ତି ନାହିଁ । କେବଳ ପୁଣ୍ୟାତ୍ମା ପୁରୁଷଙ୍କଦ୍ୱାରା କର୍ତ୍ତବ୍ୟ ପାଳନ ରୂପକ ଦୁରୂହ କାର୍ଯ୍ୟ ସୁଚାରୁଭାବେ ସମ୍ପାଦିତ ହୁଏ । ହେ ଦେବି ! ଆଜି ତୁମର ସମସ୍ତ ଇଚ୍ଛା ମୁଁ ପୂରଣ କରିବି । ଆଜି ମୋ' କରୁଣାର ସମସ୍ତ ଦ୍ୱାର ଉନ୍ମୁକ୍ତ । ତୁମେ ମୋତେ ଭସ୍ମ-ବିଲେପିତ ସାଧାରଣ ସାଧୁଟିଏବୋଲି ଭାବନାହିଁ । ମୁଁ ଧର୍ମପୂର୍ବକ ଶାସ୍ତ୍ରୀୟ ରୀତିରେ

ଭଗବାନ୍ ପୂର୍ଣ୍ଣ ପୁରୁଷଙ୍କ ଉପାସନା କରିଛୁ । ନିଜର ତପସ୍ୟା, ସମାଧି, ଜ୍ଞାନ ଓ ଯୋଗଦ୍ୱାରା ମୁଁ ସମସ୍ତ ସିଦ୍ଧି ଲଭ କରିଛୁ । ସଂସାରର ଶବ୍ଦ, ରୂପ, ରସ, ଗନ୍ଧ, ସ୍ପର୍ଶ ସମ୍ବନ୍ଧୀୟ ବିଷୟ ଭୋଗ ତୁଚ୍ଛ, କ୍ଷଣିକ ଓ ନଶ୍ୱର । ମୁଁ ଭଗବଦ୍ ଆରାଧନା ପ୍ରଭାବରେ ଯେଉଁ ଦିବ୍ୟ ଭୋଗର ସନ୍ଧାନ ପାଇଛୁ, ତାହା କଳ୍ପକଳ୍ପାନ୍ତର ପର୍ଯ୍ୟନ୍ତ ଅବିନଶ୍ୱର ହୋଇ ରହିବ । ସେହି ସମସ୍ତ ସିଦ୍ଧିର ଉପଯୋଗ, କେବଳ ତୁମର ପ୍ରସନ୍ନତା ନିମିତ୍ତ ଅଜି ମୁଁ କରିବା ପାଇଁ ପ୍ରସ୍ତୁତ । ତୁମେ କୁହ, ତୁମେ କଣ ଚାହୁଁ ।

ଆରାଧ୍ୟ ଦେବତା, ପତି ପ୍ରାଣନାଥଙ୍କ ଅପରମେୟକୃପା ଅବଲୋକନକରି ଦେବହୂତିର ହୃଦୟ ଆନନ୍ଦରେ ପୂରିଗଲା । ଆଖିରେ ତାଙ୍କର ଅପୂର୍ବଜ୍ୟୋତି ଚମକିତ ହେଲା । ମ୍ଳାନମୁଖ କମଳଭଳି ଫୁଟିଉଠିଲା । ସମଗ୍ର ଶରୀର ରୋମାଞ୍ଚିତ ହୋଇଗଲା । ପୁଲକ ଓ ଉଲ୍ଲାସର ଆବେଗକୁ ସମ୍ଭାଳି ନ ପାରି ଗଦ୍‌ଗଦ କଣ୍ଠରେ ଦେବହୂତି କହିବାକୁ ଲାଗିଲେ—ପ୍ରଭୋ ! ସେବାର ସର୍ବୋତ୍କୃଷ୍ଟ ପାରିତୋଷିକ ଭାବେ ଆରାଧ୍ୟ ଦେବତାଙ୍କର ପ୍ରସନ୍ନତା ଲଭକରିଛୁ । ଆପଣଙ୍କ ପ୍ରସନ୍ନତାଠାରୁ ବଳି ଅଧିକ ବଡ଼ ଓ ଶ୍ରେଷ୍ଠ ବରଦାନ ଆଉ କଣ ହୋଇପାରେ । ସର୍ବସିଦ୍ଧିସମ୍ପନ୍ନ ସ୍ୱାମୀ ମୋର ଦାସୀର କ୍ଷୁଦ୍ର ସେବାରେ ସନ୍ତୁଷ୍ଟ, ତାହାହିଁ ଯଥେଷ୍ଟ । ଆପଣଙ୍କ ପ୍ରସନ୍ନତା ହିଁ ମୋର ସମସ୍ତ ସୁଖର ମୂଳ । ଆପଣଙ୍କ କୃପା ପ୍ରସାଦ ହିଁ ମୋର ସବଶ୍ରେଷ୍ଠ ଉପାସ୍ୟନ ।

ଭଗବାନ୍ କର୍ଦ୍ଦମ ପତ୍ନୀଙ୍କ ବିନୀତ ବଚନରେ ଅଧିକ ପ୍ରସନ୍ନ ଓ ଦ୍ୱିଗୁଣ ଉତ୍ସାହର ସହିତ କହିଲେ—ହେ ପ୍ରିୟେ ! ତୁମେ ମୋର ଗୌରବରେ ଆନନ୍ଦିତ ହୋଇଛ । ବର୍ତ୍ତମାନ ସୁଦ୍ଧା ତୁମେ ମୋର ମହିମା ଅବଲୋକନ କରିନାହଁ । ତୁମର ଚର୍ମଚକ୍ଷୁରେ ତାହା ଦେଖିପାରିବ ନାହିଁ । ଭକ୍ତିଭାବରେ ଭଗବାନ୍‌ଙ୍କୁ ସର୍ବସ୍ୱ ମନେକରି ଅନନ୍ୟ ଚିତ୍ତରେ ତାଙ୍କର ଉପାସନା ଯେ କରିନାହିଁ ସେ ଏହି ମହିମାର ତତ୍ତ୍ୱ ବୁଝିବାପାଇଁ ଏକାନ୍ତ ଅସମର୍ଥ । ଦେବି ! ମୁଁ ତୁମକୁ ଦିବ୍ୟଦୃଷ୍ଟି ପ୍ରଦାନ କରୁଛି । ତୁମେ ମୋର ମହିମା ଦର୍ଶନ କର । ସେହି ମହିମାକୁ ସ୍ୱର୍ଗଲୋକର ଐଶ୍ୱର୍ଯ୍ୟ ବିନିମୟରେ ମଧ୍ୟ ଦେବରାଜ ଇନ୍ଦ୍ର ଲଭକରିବାପାଇଁ ଅସମର୍ଥ । ଏହା କହି ମୁନି କର୍ଦ୍ଦମ ଦେବହୂତିଙ୍କ ମୁଖକମଳରେ ତପଃପୂତ କର ସଞ୍ଚାଳନ କଲେ । ଦେବହୂତି ସମସ୍ତ ଦିବ୍ୟସୁଖ ପ୍ରତ୍ୟକ୍ଷ କଲେ । ଅଷ୍ଟସିଦ୍ଧି ହାତଯୋଡ଼ି ମୁନିଙ୍କ ଆଗରେ ଦଣ୍ଡାୟମାନ ଅଛନ୍ତି । ଏସମସ୍ତ ଅଜ୍ଞାତ, ଅଶ୍ରୁତ, ଅଲୌକିକ ଦିବ୍ୟ ବିଷୟ ଦର୍ଶନକରି ଦେବହୂତି ଆଶ୍ଚର୍ଯ୍ୟ ଚକିତ ହୋଇ ରହିଗଲେ । ସେତେବେଳେ ସେ ଜାଣିଲେ ତାଙ୍କର ପତି ସାଧାରଣ ସାଧୁ ନୁହନ୍ତି । ସେ ଯେ ଦ୍ୱିତୀୟ ବ୍ରହ୍ମା, ମାୟାର ପ୍ରଭୁ, ସମସ୍ତ ଐଶ୍ୱର୍ଯ୍ୟର ଅଧିପତି, ଏଥିରେ ଆଉ ସନ୍ଦେହ ନାହିଁ । ଦିବ୍ୟସୁଖ

ଦର୍ଶନରେ ବିମୋହିତା ଦେବହୂତି ପତିଙ୍କ ପାଦପଦ୍ମରେ ପଡ଼ିଗଲେ । ମୁନି କର୍ଦ୍ଦମ ପତ୍ନୀଙ୍କୁ ଉଠାଇ ନେଇ ପ୍ରେମପୂର୍ବକ ହୃଦୟରେ ଆଲିଙ୍ଗନ କଲେ, ଆଉ କହିଲେ —ପ୍ରିୟେ ! ଏବେ ତୁମେ ସଙ୍କୋଚ ତ୍ୟାଗ କରି ତୁମର ଅଭିଳାଷ ପ୍ରକାଶ କର ; କିନ୍ତୁ ପତିଙ୍କ ବାହୁପାଶରେ ବଦ୍ଧ ଦେବହୂତି ନିଜ ଜନ୍ମକୁ ସଫଳ ହୋଇଥିବାର ଅନୁଭବ କଲେ । ପତିଙ୍କ ଆଲିଙ୍ଗନରେ ସେ ଏପରି ବିମୋହିତ ହୋଇଯାଇଥିଲେ ଯେ ଋଷି ବାରମ୍ବାର ପ୍ରଶ୍ନ କଲେ ମଧ୍ୟ ସେ କିଛି କହିପାରିଲେ ନାହିଁ ।

## ଛପ୍ପୟ

ଦୃଢ଼ତର ପ୍ରେମ କପାଟ କୃପା କରି ମୁନିବର ଖୋଲେ ।
ସେବା ସେ ସନ୍ତୁଷ୍ଟ ପ୍ରିୟା ତେଁ ହଁସିକେ ବୋଲେ ॥
ହେ ମନୁନନ୍ଦିନି ! ମୋହି କର୍‌ୟୋ ସେବାତେଂ ବଶମେଂ ।
ଦେହୁଁ ଅତୁଲ ଐଶ୍ୱର୍ଯ୍ୟ ଦିବ୍ୟସୁଖ ଭୂମିନି ଅବ୍‌ମେଁ ॥
ବର ମାଁଗୌ ଦୁଃଖ ଭଗି ଗୟୋ,
ଅବ ଆଈ ସୁଖକୀ ଘଡ଼ୀ ॥
ଅଷ୍ଟସିଦ୍ଧି ନବନିଧି ୟେ କର ଜୋରେ ସମୁଖ ଖଡ଼ୀ ॥

# ଦେବହୂତିଙ୍କ ବରଲାଭ

ରାଦ୍ଧ ବତ ଦ୍ୱିଜ ବୃଷୈତଦମୋଘ ଯୋଗ
ମାୟାଧିପେ ତ୍ୱୟି ବିଭୋ ତଦବୈମି ଭର୍ତ୍ତଃ ।
ଯସ୍ତେଽଭ୍ୟଧାୟି ସମୟଃ ସକୃଦଙ୍ଗସଙ୍ଗୋ
ଭୂୟାଦ୍ ଗରୀୟସି ଗୁଣଃ ପ୍ରସବଃ ସତୀନାମ୍ ।

(ଭାଗ-୩-୨୩-୧୦)

## ଛପ୍‌ପୟ

ପ୍ରୀତିଯୁକ୍ତ ପତି ବଚନ ସୁନେ ବୋଲି ପ୍ରିୟବାନୀ ।
ହେ ଦ୍ୱିଜ ବୃଷଭ ତୁହ୍ମାର ଅତୁଲ ମହିମା ଅବ ଜାନୀ ।।
ମୁନି ବୋଲେ ମନୁପୁତ୍ରି ! ମୋହି କସ ବୈଲ ବତାଓଁ ।
ଦେବହୂତି ହଁସି କହେ ଧେନୁପତି ବୃଷଭ କହାଓଁ ।।
ହଁସେ ବାତ ବର ମୁନି ସୁମିରି, ପ୍ରିୟା ଅଙ୍କମହଁ ଭରଲଇ ।
କଟି କଦଲୀ ସମ ଶିଥିଲ ହୋ, ପ୍ରିୟହିୟ
ମହଁ ସଟିଗେଇ ଗଇ !

ଦୂରତାରେ ସଙ୍କୋଚ ଓ ଶିଷ୍ଟାଚାର ଜ୍ଞାନ ରହେ ; କିନ୍ତୁ ନିକଟ ସମ୍ପର୍କରେ କ୍ୱଚିତ୍ ଧୃଷ୍ଟତା ପ୍ରକାଶ ପାଇଥାଏ । ଗାମ୍ଭୀର୍ଯ୍ୟର ମଧ୍ୟ ଏକ ସୀମା ଥାଏ । ଗମ୍ଭୀରତା କେତେ ବ୍ୟକ୍ତିଠାରେ ବିଶେଷ ଅବସରରେ କିଛି ସମୟ ପାଇଁ ପ୍ରକାଶ ପାଏ । ସର୍ବଦା ସର୍ବଜ କେହି ଗମ୍ଭୀର ହୋଇ ରହେନାହିଁ ଏବଂ ସବୁ ସମୟରେ ମଧ୍ୟ ଗାମ୍ଭୀର୍ଯ୍ୟର ଆବଶ୍ୟକତା ପଡ଼େନାହିଁ । ଯେଉଁ ରାଜା, ମହାରାଜା, ଆଚାର୍ଯ୍ୟ, ଉପଦେଶକମାନଙ୍କୁ ସଭାସମିତିରେ ଆମେ ଗମ୍ଭୀର ଦେଖୁଁ, ସେମାନଙ୍କର ଶିଷ୍ଟାଚାରପୂର୍ଣ୍ଣ ପରିମିତ ଓ ସାର ବଚନ ଶୁଣୁ ସେମାନେ ନିଜର ସ୍ତ୍ରୀ, ପୁତ୍ର, ଭୃତ୍ୟ ଶିଷ୍ୟ ଓ ଅନ୍ୟ ଘନିଷ୍ଠ ସମ୍ପର୍କୀୟମାନଙ୍କ ସହିତ ଏକାନ୍ତରେ କଥାବାର୍ତ୍ତା କରୁଥିଲେ ମଧ୍ୟ ଅସ୍ୱାଭାବିକ ଗମ୍ଭୀରତା ରକ୍ଷା କରନ୍ତିନାହିଁ । ନିଜଲୋକଙ୍କଠାରେ ସେମାନେ ଖୋଲି ଖୋଲିଭାବେ କଥାବାର୍ତ୍ତା କରନ୍ତି, ହସନ୍ତି, ଖେଳନ୍ତି ଓ ଖୁସିବାସିଆ ଆଲୋଚନା ମଧ୍ୟ କରନ୍ତି । ଅତି ଗମ୍ଭୀର ପୁରୁଷ ଯେତେବେଳେ ପିଲାମାନଙ୍କ ସହିତ ଖେଳନ୍ତି, ସେତେବେଳେ ଠିକ୍ ପିଲାଭଳି ବ୍ୟବହାର କରନ୍ତି ।

ପତିପତ୍ନୀ ସମ୍ପର୍କ ଠିକ୍ ସେମିତି । ଆରମ୍ଭରେ ପରସ୍ପରେ ହୃଦୟ ଅଧିକାର ପ୍ରସଙ୍ଗରେ ସଙ୍କୋଚ, ଶିଷ୍ଟାଚାର ଓ ଭୟ ଥିଲେ ମଧ୍ୟ ଦାମ୍ପତ୍ୟ ଗଣ୍ଠି ବା ସଙ୍ଗେ ସଙ୍ଗେ ଜଣେ ଅନ୍ୟକୁ ସ୍ନେହବନ୍ଧନରେ ବାନ୍ଧିପକାଏ । ଧୀରେ ଧୀରେ ଲଜ୍ଜା, ଶିଷ୍ଟାଚାର ଦୂର ହୁଏ ଓ ଘନିଷ୍ଠତା ପ୍ରକାଶ ପାଏ । ବିବାହ ପରେ କର୍ଦ୍ଦମ ମୁନି ଘୋର ତପସ୍ୟାରେ ନିମଗ୍ନ ହୋଇଥିଲେ । ଉଭୟଙ୍କ ମଧ୍ୟରେ ସ୍ତ୍ରୀ ପୁରୁଷର ବ୍ୟବହାର ନ ଥିଲା ବୋଲି କୁହାଯାଇପାରେ । ଦେବହୂତି ମୁନିଙ୍କୁ ଶ୍ରଦ୍ଧେୟ ମନେକରି ଶିଷ୍ଟାଚାର ସହିତ ସେବା କରୁଥିଲେ । ମୁନି କେବେହେଲେ ଆଖି ଉଠାଇ ତାଙ୍କ ଆଡ଼କୁ ଚାହୁଁ ନ ଥିଲେ । ସେ ମଧ୍ୟ ଡର ଡର ଅତୀବ ନମ୍ରତାର ସହିତ ହାତଯୋଡ଼ି କିଛି କହିବାର ଥିଲେ, କହୁଥିଲେ । ନୋହିଲେ ଚୁପ୍ ଚାପ୍ ରହୁଥିଲେ । ବର୍ତ୍ତମାନ ମୁନି ପତ୍ନୀଙ୍କ ସେବାରେ ସନ୍ତୁଷ୍ଟ ହୋଇ ବରଦାନ ନିମିତ୍ତ ଉଦ୍ୟତ ହେବା ସଙ୍ଗେ ସଙ୍ଗେ ନିଜର ସମସ୍ତ ପ୍ରେମ ଓ ମମତାକୁ ଅନୁରକ୍ତା ପତ୍ନୀଙ୍କ ଉପରେ ଅଜାଡ଼ିଦେଲେ । ମୁନିଙ୍କ ହାର୍ଦ୍ଦିକ ସ୍ନେହ, ପ୍ରେମପୂର୍ଣ୍ଣ ଦୃଷ୍ଟିରେ ଦେବହୂତିଙ୍କ ଭୟ ଦୂର ହୋଇଗଲା । ଲଜ୍ଜା, ସଙ୍କୋଚ ସବୁ ଉଭେଇଗଲା । ମୁନିଙ୍କ ଯୋଗର ଅତୁଳ ଐଶ୍ୱର୍ଯ୍ୟ ଅବଲୋକନ କରି ଦେବହୂତି ମନ୍ତ୍ରମୁଗ୍ଧ ଭଳି ରହିଗଲେ । ମୋର ଆରାଧ୍ୟ ଦେବତା ଆଜି ମୋର ସମସ୍ତ ସୁଖ ଦେବା ନିମିତ୍ତ ପ୍ରସ୍ତୁତ ଅଛନ୍ତି । ତାଙ୍କ ସିଦ୍ଧିର ଚମତ୍କାରିତାକୁ ମୋର ପ୍ରସନ୍ନତା ନିମିତ୍ତ କାର୍ଯ୍ୟରେ ବ୍ୟବହାର କରିବାକୁ ଇଚ୍ଛା କରୁଛନ୍ତି । ଏହିସବୁ କଥା ମନେ ପକାଇ ତାଙ୍କ ଶରୀର ରୋମାଞ୍ଚିତ ହୋଇଉଠିଲା । ମୁନି ଆଜି ଗମ୍ଭୀର ନୁହନ୍ତି । ହସି ହସି କଥା କହୁଛନ୍ତି । ତାଙ୍କ ମୁହଁରେ ହାତ ବୁଲାଇ ଦିବ୍ୟ ଐଶ୍ୱର୍ଯ୍ୟ ଦେଖାଇ ଦେଉଛନ୍ତି । ଏହା ଭାବି ଦେବହୂତିଙ୍କ ମନରେ ସାହସ ଆସିଲା । ମୁନି ପିଲାଙ୍କଭଳି ହସି ହସି କହିଲେ—ପ୍ରିୟେ ! ତୁମେ ମୋ ତପସ୍ୟାର ପ୍ରଭାବ ଦେଖିଲ ତ ? ତୁମ ବାପଘରେ ଏସବୁ ଐଶ୍ୱର୍ଯ୍ୟ ଥିଲା କି ?

ବାପାଙ୍କ ନାମ ଶୁଣିବାମାତ୍ରେ ଦେବହୂତିଙ୍କର ପ୍ରଣୟକୋପ ଜାଗ୍ରତ ହେଲା । ବର୍ତ୍ତମାନ ଧୃଷ୍ଟତାପୂର୍ବକ ସବୁ କିଛି କହିବାର ସୁଯୋଗ ମିଳିଛି । ଦେବହୂତି ମିଥ୍ୟା ଗାମ୍ଭୀର୍ଯ୍ୟର ସହିତ ହାତ ଯୋଡ଼ି ହସି ହସି କହିଲେ—ହେ ଦ୍ୱିଜବୃଷଭ ! ଆପଣଙ୍କ ଐଶ୍ୱର୍ଯ୍ୟର ତୁଳନା ଅସମ୍ଭବ । ଆପଣ ତ ସମସ୍ତ ଐଶ୍ୱର୍ଯ୍ୟର ପ୍ରଭୁ । ମୁନି କହିଲେ—ମନୁପୁତ୍ରି ! ମୁଁ ଜାଣିଥିଲି, ତୁମେ ଜଣେ ମହାରାଜାଙ୍କର କନ୍ୟା । କଥାବାର୍ତ୍ତା, ଚାଲିଚଳନ, ସଂଯମ, ଶିଷ୍ଟାଚାର ସବୁ କିଛି ଜାଣ ; କିନ୍ତୁ ଦେଖୁଛି, ତୁମେ ନିହାତି ମଫସଲିଆ ଝିଅ । ଦ୍ୱିଜବୃଷଭ କହିବାର ମାନେ କଣ ? ବ୍ରାହ୍ମଣମାନଙ୍କ ମଧ୍ୟରେ ବଳଦ ତ ? ପତିଙ୍କୁ ବଳଦ ବୋଲି ସମ୍ବୋଧନ କରିବା ଉଚିତ କି ? ନିଜ ହସକୁ ସଂଯତ ରଖି କପଟଶିଷ୍ଟାଚାରର ସହିତ ଦେବହୂତି ଉତ୍ତର ଦେଲେ—ପ୍ରଭୋ !

ପତିପତ୍ନୀଙ୍କ କଥାବାର୍ତ୍ତା କୁଅରେ ପ୍ରତିଧ୍ୱନି ସହିତ ସମାନ । କୁଅରେ ଯେପରି ଶବ୍ଦ କରିବେ ସେହିପରି ଶବ୍ଦ ବାହାରକୁ ଶୁଣାଯିବ । ଏଠାରେ ଆପଣ ଓ ମୋ ବ୍ୟତୀତ ଅନ୍ୟ କୌଣସି ପୁରୁଷ ନାହିଁ । ଏକାନ୍ତରେ ପତିପତ୍ନୀ ଯେ କୌଣସି କଥା କୁହାକୁହି ହୋଇ ପାରନ୍ତି । ଆପଣ ତ ଭଗବାନଙ୍କ ଆଗରେ ମୋତେ କାମଧେନୁ ବୋଲି କହିଥିଲେ । ତାଙ୍କୁ କାମଧେନୁ ପ୍ରାର୍ଥନା କରିଥିଲେ । ଗାଈର ସ୍ୱାମୀ ତ ବୃଷଭ । ମୁଁ ତ କିଛି ଅନୁଚିତ କଥା କହିନାହିଁ ।

ଏହା ଶୁଣି ମୁନି ହସି ହସି ଦେବହୂତିଙ୍କୁ ଗାଢ଼ ଆଲିଙ୍ଗନ କରି କହିଲେ—ତୁମକୁ ଏସବୁ କଥା କିଏ କହିଲା ? ପତିଙ୍କ ପ୍ରେମାଲିଙ୍ଗନ ମଧ୍ୟରେ ଦେବହୂତିଙ୍କ ଅଙ୍ଗ ପ୍ରତ୍ୟଙ୍ଗ ଶିଥିଳ ହୋଇଆସିଲା । କଟା କଦଳୀ ଗଛଭଳି ସେ ପତିଙ୍କ ହୃଦୟ ଉପରେ ଢଳିପଡ଼ିଲେ । ମୁନି ପ୍ରିୟତମା ପତ୍ନୀଙ୍କ କ୍ଷୀଣ ଶରୀର ଦେଖି ସଚେଷ୍ଟ ହୋଇ ଉଠିଲେ । ରୁକ୍ଷ ଶୁଷ୍କ କେଶରାଶି ଦେଖି ହୃଦୟ ବ୍ୟାକୁଳ ହେଲା । ସେ ମନେ ମନେ ଭାବିଲେ—ଆହା, ସମସ୍ତ ସୁଖଭୋଗ୍ୟଯୋଗ୍ୟା ରାଜପୁତ୍ରୀର ଅଙ୍ଗ କି ଦୁର୍ଦ୍ଦଶା ହୋଇଛି । ମୁଁ ପତ୍ନୀକୁ ଏଭଳି ସୁଖ ଦେବି ଯାହା ମର୍ତ୍ତ୍ୟରେ ଚକ୍ରବର୍ତ୍ତୀ ସମ୍ରାଟ୍ ପତ୍ନୀ ପକ୍ଷରେ ଦୁର୍ଲଭ । ସ୍ୱର୍ଗର ଶଚୀ ମଧ୍ୟ ସେଭଳି ସୁଖଭୋଗ କରିପାରିବେ ନାହିଁ । ଅତୀବ ସ୍ନେହର ସହିତ ମୁନି କହିଲେ—ପ୍ରିୟେ ! ବର୍ତ୍ତମାନ ଶୀଘ୍ର କହ ମୁଁ ତୁମର କେଉଁ ପ୍ରିୟକାର୍ଯ୍ୟ କରିବି ? ଦେବହୂତି ମୁନିଙ୍କ ଆଖି ସହିତ ଆଖି ମିଶାଇ କହିଲେ—ଆପଣ ବାରମ୍ବାର କାହିଁକି ସେହି କଥା ପଚାରୁଛନ୍ତି । ଏବେ ମୋର ଦୁର୍ଲଭ କଣ ଅଛି ? ଆପଣଙ୍କୁ ପାଇ ମୁଁ ସବୁ ପାଇଛି । ସବୁର ଅଧିକାରିଣୀ ମୁଁ ସ୍ୱତଃ ହୋଇପାରିଛି । ସ୍ତ୍ରୀ ଲୋକର ଏହାହିଁ ବଡ଼ ସୌଭାଗ୍ୟ । ପୁରୁଷ ବହୁବର୍ଷ ଅଧ୍ୟୟନ କରି ପଣ୍ଡିତ ପଦବୀ ହାସଲ କରେ ; କିନ୍ତୁ ସ୍ତ୍ରୀ ତାଙ୍କ ଘରକୁ ଆସିବାମାତ୍ରେ ପଣ୍ଡିତାଣୀ ପାଲଟିଯାଏ । ଗୁରୁଙ୍କୁ କେତେ ସେବାକରି ମନୀଷ ବୈଦ୍ୟ ହୋଇଥାଏ । ପତ୍ନୀ ଆସିବାମାତ୍ରେ ବୈଦ୍ୟାଣୀ ଭାବେ ସବୁଠି ପରିଚିତ ହୁଏ । ସେହିପରି ଆପଣ ହଜାର ହଜାର ବର୍ଷ ତପସ୍ୟାକରି ତପସ୍ୱୀ ଉପାଧି ଲାଭକଲେ ; କିନ୍ତୁ ମୁଁ ଏଠାକୁ ଆସିବାମାତ୍ରେ ତପସ୍ୱିନୀ ପାଲଟିଗଲି । ତେଣୁ ଆପଣଙ୍କର ସମସ୍ତ ସିଦ୍ଧି ମୋତେ ସ୍ୱତଃ ମିଳିଗଲା । ତଥାପି ସ୍ୱାମୀ ପ୍ରସନ୍ନହେଲେ ପତ୍ନୀର ଗୋଟିଏ ଇଚ୍ଛାଥାଏ ତାହା, ମୁନି କହିଲେ—କଣ ସେଇ ଇଚ୍ଛା ? ଦେବହୂତି ପୁଣି କହିଲେ—ତାହା ହେଉଛି ବିବାହର ମୁଖ୍ୟ ସୁଖପ୍ରାପ୍ତି ସହିତ ଶ୍ରେଷ୍ଠ ସନ୍ତାନ ଲାଭ । ପତି ପତ୍ନୀକୁ ସଂସାରର ସମସ୍ତ ଶ୍ରେଷ୍ଠ ସାମଗ୍ରୀ ଦେଇ ମଧ୍ୟ ପତ୍ନୀତ୍ୱ ସମ୍ବନ୍ଧ ପାଳନ ନ କଲେ କି ପତିଦ୍ୱାରା ଯୋଗ୍ୟ ସନ୍ତାନ ଲାଭ ନ ହେଲେ ସମସ୍ତ ସୁଖ ଲବଣହୀନ ବ୍ୟଞ୍ଜନଭଳି ନିରର୍ଥକ ହୋଇଯାଏ । ବିବାହ ପୂର୍ବରୁ ଆପଣ ମୋ ବାପାଙ୍କୁ କହିଥିଲେ ଯେ, ଗର୍ଭଧାରଣ

ପର୍ଯ୍ୟନ୍ତ ମୋ ସହିତ ଅଙ୍ଗସଙ୍ଗ ରକ୍ଷା କରିବେ । ସେହି ପ୍ରତିଜ୍ଞା ପୂରଣର ସମୟ ଏବେ ଆସିଛି । ଆପଣ ଯଦି ମୋ ଉପରେ ସନ୍ତୁଷ୍ଟ ଓ ଗୃହସ୍ଥୋଚିତ ସୁଖ ପ୍ରଦାନ ନିମିତ୍ତ ଇଚ୍ଛୁକ ତେବେ ସେଥିପାଇଁ ଯତ୍ନ କରନ୍ତୁ; କିନ୍ତୁ ସେଥିପାଇଁ ଆଉ ପ୍ରଯତ୍ନ କଣ ବୋଲି ମୁନି ପ୍ରଶ୍ନ କରିବାରୁ ଦେବହୂତି ହସି ହସି କହିଲେ – ମହାରାଜ ! ଆପଣ ବର୍ତ୍ତମାନ ପ୍ରକୃତରେ ବାବାଜୀ । ଆପଣଙ୍କୁ କଣ କହିବି ? ବର୍ତ୍ତମାନ ବସ୍ତ୍ର, ଆଭୂଷଣ, ତୈଳ, ଅଙ୍ଗରାଗ, ଚୂଡ଼ି ଆଦି ଉପକରଣ ସହିତ ମୁଖ୍ୟତଃ ଗୃହ ଖଣ୍ଡିଏ ଆବଶ୍ୟକ । ଗୃହ ବିନା ଗାର୍ହସ୍ଥ୍ୟ ଧର୍ମ ପାଳିତ ହେବ କିପରି ? ଗୃହ ଓ ଗୃହିଣୀ ଥିଲେ ଗୃହସ୍ଥ କୁହାଯିବ । ଘର ନ ଥିବ କି ଗୃହିଣୀକୁ ନ ନେଇ ବୁଲିବୁଲି କଲେ ଗୃହସ୍ଥର ଯଥାର୍ଥତା ପ୍ରତିପାଦିତ ହୁଏ ନାହିଁ ।

ମୁନି କହିଲେ —ଆମର ତ ଏଇ କୁଡ଼ିଆଟି ଅଛି । ଦେବହୂତି ସାମାନ୍ୟ କୋପ ପ୍ରକାଶକରି କହିଲେ—କିପରି ଯେ ଆପଣଙ୍କୁ ବୁଝାଇବି ମୁଁ ଜାଣିପାରୁନାହିଁ । ଘାସକୁଟାରେ ନିର୍ମିତ ଏଇ କୁଡ଼ିଆରେ ଗୃହସ୍ଥୋଚିତ ସୁଖଭୋଗ କଣ କରାଯାଏ ? ବର୍ଷେ ହେଲା ମୁଁ ଆପଣଙ୍କ କୁଡ଼ିଆକୁ ଆସିଲିଣି । ଗ୍ରୀଷ୍ମ ସମୟରେ ଗରମ ପବନ ବହୁଛି । ସେ ପବନରେ ଦେହ ଶୁଖି କଳାକାଠ ପଡ଼ିଯାଉଛି । ଝଡ଼ ପବନରେ ଧୂଳି ପୂରିଯାଉଛି । ବାସନକୁସନ, ଫଳ, ମୂଳ, ବଲ୍କଳ ସମସ୍ତ ଜିନିଷ ଧୂଳିରେ ଲୁଚିଯାଉଛି । ବଲ୍କଳ ବର୍ଷା ପାଣିରେ ଓଦା ହୋଇଗଲେ ନିଦ ଆସୁନାହିଁ । ଶୋଇଯିବାକୁ ଇଚ୍ଛାଥିଲେ ମଧ୍ୟ ଆଖିକୁ ନିଦ ଆସୁନାହିଁ । ସ୍ୱତଃ ତପସ୍ୟା ଆଚରିତ ହୋଇଯାଉଛି, ଶୀତଦିନ କଥା ନ କହିବା ଭଲ । ଚାରିଆଡ଼ୁ ଶିରି ଶିରି ହୋଇ ହେମାଳ ପବନ ବହିଆସୁଛି । ଶୂଳ ବିଦ୍ଧ ହେବାଭଳି ସେ ପବନ ଦେହରେ ଗଳିଯାଉଛି । ଏ ଅବସ୍ଥାରେ ବିଶ୍ରାମ କରି, ନିଦ ବା କଣ, ସାରାରାତି ବସି ବସି ମୁହଁକୁ ଆଣ୍ଠୁ ମଝିରେ ଲୁଚାଇ ସମସ୍ତ କଟି-ଯାଉଛି । ତେଣୁ ଗାର୍ହସ୍ଥ୍ୟ ସୁଖଲାଭ ନିମିତ୍ତ ଏକ ସୁନ୍ଦର ଗୃହ ନିର୍ମାଣକରିବା ଆବଶ୍ୟକ, ଠିକ୍ ମୋ ବାପାଙ୍କ ଘର ଭଳି ।

ଏହା ଶୁଣି ମୁନି ହସି ହସି କହିଲେ – ପ୍ରିୟେ ! ମୋତେ ଜାଣି ସାରିବା ପରେ ମଧ୍ୟ ତୁମେ ପାର୍ଥିବ ସୁଖସ୍ୱାଚ୍ଛନ୍ଦ୍ୟର ଅଭିଳାଷ ପୋଷଣ କରୁଛ । ସେହି ଘର ପାଇଁ ଗୁଡ଼ିଏ ଇଟା, ପଥର, ଚୂନ ଦରକାର । ଅନେକ ରାଜମିସ୍ତ୍ରୀଙ୍କୁ ଆଣିବାକୁ ପଡ଼ିବ । ବର୍ଷ ବର୍ଷ ଲାଗିଲେ ଯାଇ ଘରଟିଏ ତିଆରି ହେବ । ମୁନିଙ୍କ କଥା ମଝିରେ ଦେବହୂତି କହିଲେ—ଆମର ଏତେ ବଡ଼ ଘର କଣ ଦରକାର । କାମ ଚଳିଲାଭଳି ଘର ଖଣ୍ଡିଏ ଦରକାର । ସେଥିରେ ବସାଉଠା ପାଇଁ ଗୋଟିଏ କୋଠରୀ, ଅନ୍ତଃପୁର ପାଇଁ ଆଉ ଗୋଟିଏ, ରୋଷାଇ ପାଇଁ ଛୋଟ କୋଠରୀଟିଏ ଏବଂ ଯିବାଆସିବା ଲୋକ ଓ ଅତିଥି ଅଭ୍ୟାଗତମାନଙ୍କ ରହିବା ପାଇଁ ଆଉ ଗୋଟିଏ କୋଠରୀ ହେଲେ ଏତିକରେ ସାଧାରଣ ଗୃହସ୍ଥର ମର୍ଯ୍ୟାଦା ରକ୍ଷା କରାଯାଇ ପାରିବ ।

ମହର୍ଷି କର୍ଦ୍ଦମ କହିଲେ—ଠିକ୍ ଅଛି , ତୁମେ ଟିକିଏ ଆଖି ବନ୍ଦକର । ଦେବହୂତି ଆଖି ବନ୍ଦକଲେ । ଟିକିଏ ପରେ ମୁନି କହିଲେ, ଦେଖ, ତୁମେ କଣେଇ ଚାହୁଁଛ । ପୁଣି ପୁଣି ଆଖି ବୁଜିଦିଅ । ଦେବହୂତି ଦୁଇ ହାତରେ ଆଖି ବନ୍ଦ କରି କହିଲେ— ଆଉ କିପରି ବନ୍ଦ କରିବି । ବିଶ୍ୱାସ ଯଦି ନହେଉଛି ତୁମେ ନିଜେ ମୋ ଆଖିକୁ ଯେମିତି ଇଚ୍ଛା ସେମିତି ବନ୍ଦ କରିଦିଅ । ମୁନି ହସିଦେଇ କହିଲେ— ଆଚ୍ଛା, ଠିକ୍ ଅଛି । ଏଥର ଆଖି ଖୋଲ । ଦେଖିଲ ତୁମ ଆଗରେ ଏଇଟା କଣ ? ଦେବହୂତି ଆଖି ଖୋଲିବା ମାତ୍ରେ ଆଶ୍ଚର୍ଯ୍ୟ ହୋଇଗଲେ । ପ୍ରଥମେ ସେ ଜାଣିପାରିଲେ ନାହିଁ ଯେ, ସେ ଚାହିଁଥିଲେ ନା ଶୋଇଥିଲେ । ଯାହା ସେ ଦେଖୁଛନ୍ତି ପ୍ରକୃତ ନା ସ୍ୱପ୍ନ । କେତେଥର ଆଖି ମଳିଚାହିଁ, ବାରମ୍ବାର ସେ ନିଜ ସ୍ୱାମୀଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ ।

କର୍ଦ୍ଦମ ମୁନି ହସୁଥାନ୍ତି । ଦେବହୂତି ଆନନ୍ଦ ଓ ବିସ୍ମୟ ମଧ୍ୟରେ ଝୁଲୁଥାନ୍ତି । ସେ ଦେଖିଲେ, ଆଗରେ ଏକ ରମଣୀୟ ଦିବ୍ୟଭବନ ଠିଆହୋଇଛି । ତା'ର ପ୍ରାଚୀର ଶୁଦ୍ଧ ସୁବର୍ଣ୍ଣରେ ନିର୍ମିତ ହୋଇଛି । ସର୍ବ ସମ୍ପତ୍ତିସମ୍ପନ୍ନ, ସର୍ବଶ୍ରେଷ୍ଠ, ସୁନ୍ଦର, କାମନା ପରିପୂରକ ଓ ଅତୀବ ମନୋହର ସେହି ପ୍ରାଚୀର ମଧ୍ୟଭାଗରେ ଥିବା ଖମ୍ବଗୁଡ଼ିକ ବିଭିନ୍ନ ମଣିମୁକ୍ତାରେ ସୁଶୋଭିତ ହୋଇଛି । ଗୋଟିକ ଉପରେ ଗୋଟିଏ କରି ସାତ ଖଣ୍ଡରେ ବିଭକ୍ତ ପ୍ରସାଦର ପ୍ରତ୍ୟେକ ଖଣ୍ଡରେ ଚାରୋଟି କରି କୋଠରୀ ରହିଛି । ମଧ୍ୟ ଭାଗରେ ଗୋଟିଏ କରି ବିଶାଳ ଭବନ ଓ ବାରଣ୍ଡା ରହିଛି । ପ୍ରତ୍ୟେକ କୋଠରୀରେ ସ୍ୱତନ୍ତ୍ର ସ୍ୱତନ୍ତ୍ର ତୂଳିକା ଶଯ୍ୟାମାନ ସୁସଜ୍ଜିତ ଭାବେ ରଖାଯାଇଛି । ସେ ସବୁ ଶଯ୍ୟା ଉପରେ ଦୁଗ୍‌ଧଫେନ ନିଭ ଶରତ୍ ଚନ୍ଦ୍ରର ଶୋଭାକୁ ଉପହାସ କରୁଥିବା ଶ୍ୱେତ ବସ୍ତ୍ରମାନ ବିସ୍ତୃତ ହୋଇଛି । ସ୍ଥାନେ ସ୍ଥାନେ ସୁବର୍ଣ୍ଣ ଜରିରେ କୁଟିକାମ କରାଯାଇଥିବା ଆସନମାନ ବିଛାଯାଇଅଛି । ଅତୀବ ସୁକୋମଳ ମୁଚୁଳାମାନ ରହିଛି । ରଙ୍ଗ ବିରଙ୍ଗ ସ୍ୱର୍ଣ୍ଣନିର୍ମିତ ସ୍ତମ୍ଭରେ ବହୁମୂଲ୍ୟ ବସ୍ତ୍ରଖଣ୍ଡମାନ ଝୁଲିଯାଇଛି । ଗୃହର ଭିତ୍ତି ଓ ଛାତ ନାନାପ୍ରକାର ସୂକ୍ଷ୍ମ କାରୁକାର୍ଯ୍ୟରେ ମଣ୍ଡିତ ହୋଇଛି । ସୁବର୍ଣ୍ଣର ଚୌକି, ଆରାମଦାୟକ ଚୌକି ସଜ୍ଜିତ ହୋଇ ରଖାଯାଇଛି । ସର୍ବଶ୍ରେଷ୍ଠ ବଡ଼ ପଙ୍ଖାମାନ ରହିଛି । ସବୁ ଋତୁରେ ସୁଖଦାୟକ ସେହି ପ୍ରାସାଦର ଭବନ ଓ ଉପଭବନ ମଧୁର ଧୂପ ଗନ୍ଧରେ ପୂରିରହିଛି । ଗ୍ରୀଷ୍ମକାଳରେ ଶୀତଳ, ଶୀତକାଳରେ ଉଷ୍ମ ଓ ବର୍ଷାକାଳରେ ମଶକ, ମକ୍ଷିକାଦି କୀଟ ରହିତ ସେହି ପ୍ରାସାଦର ରମଣୀୟତା ଅତୁଳନୀୟ । ଯେ କୌଣସି ଭବନରେ ଉପବେଶନ କରି ପ୍ରକୃତିର ମନୋରମ ଶୋଭା ସମ୍ପଦକୁ ଉପଭୋଗ କରାଯାଇପାରେ । ସ୍ନାନାଗାର, ମନୋରଞ୍ଜନ ଗୃହ, ଶୃଙ୍ଗାରଶାଳା, ଶୟନ ମନ୍ଦିର, ବିହାରଗୃହ, ଭୋଜନଶାଳା ପ୍ରଭୃତି ପୃଥକ୍ ପୃଥକ୍ ଭାବେ ନିର୍ମିତ

ହୋଇଛି । ଜଳ ଓ ଶୌଚାଳୟର ଉପଯୁକ୍ତ ବ୍ୟବସ୍ଥା ରହିଛି । ରନ୍ଧନଶାଳାରେ ରନ୍ଧନର ଆବଶ୍ୟକତା ନାହିଁ, କାରଣ ଇଚ୍ଛାକୃତଭାବେ ଖାଦ୍ୟପଦାର୍ଥମାନ ସେଠାରେ ଉପସ୍ଥିତ ରହେ । ବିଭିନ୍ନ ପ୍ରକାର ପତାକାରେ ସୁନ୍ଦର ନିପଣଭାଗ ସୁଶୋଭିତ ହୋଇଛି । ସଜ୍ଜିତ ଉପକରଣ, ଶୃଙ୍ଗାର, ଭୋଜନ, ବସ୍ତ୍ର ଆଦି କୌଣସି ସାମଗ୍ରୀର ଅଭାବ ସେଠାରେ ନଥିଲା । ସର୍ବତ୍ର ଅମ୍ଳାନ ଦିବ୍ୟ କୁସୁମର ମାଳା ସୁଶୋଭିତ ରହିଥିଲା । ସେହି ମାଳାର ମଧୁର ଗନ୍ଧରେ ଆକୃଷ୍ଟ ହୋଇ ମଧୁଲୋଲୁପ ମତ୍ତଭ୍ରମର କଳଗୁଞ୍ଜନ କରି ଉଡ଼ି ବୁଲୁଥିଲେ ।

ପ୍ରସାଦର ପ୍ରାଙ୍ଗଣ ମହାମରକତ ମଣିରେ ନିର୍ମିତ ହୋଇଥିଲା । ଦୂରରୁ ତାହା ଏକ ତରଙ୍ଗାକୁଳ ସରୋବରପରି ମନେ ହେଉଥିଲା । ବିଦ୍ରୁମ ମଣିରେ ବିଚିତ୍ର ବିଚିତ୍ର ବେଦିକାମାନ ଉପବେଶନ ନିମିତ୍ତ ନିର୍ମିତ ହୋଇଥିଲା । ହୀରା ଓ ମୋତି ଖଚିତ ସୁନ୍ଦର ସୁନ୍ଦର କବାଟମାନ ଦ୍ୱାରଦେଶରେ ଥିଲା । ପ୍ରାସାଦର ସମସ୍ତ ଗବାକ୍ଷ, ବାତାୟନ ଅପୂର୍ବ ସୌନ୍ଦର୍ଯ୍ୟ ମଣ୍ଡିତ ଓ ନେତ୍ର ପ୍ରୀତିକର ହୋଇଥିଲା । ସମଗ୍ର ପ୍ରାସାଦ ଦୂରରୁ ଏକ ସୁନ୍ଦର ବିମାନ ଭଳି ପ୍ରତୀତ ହେଉଥିଲା । ପ୍ରସାଦର ପାର୍ଶ୍ୱଦେଶରେ ଏକ ସରୋବର ଓ ଏକ ଉପବନ ଥିଲା । ସରୋବର ଜଳରେ ରକ୍ତ, ନୀଳ, ପୀତ, ଶ୍ୱେତ ରଙ୍ଗର କମଳ ଶୋଭାପାଉଥିଲା । ସେହି ପୁଷ୍କରଣୀର ଘାଟ ମଣିମୟ ପ୍ରସ୍ତର ଖଣ୍ଡିରେ ନିର୍ମିତ ହୋଇଥିଲା । ସୋପାନର ଉଭୟ ପାର୍ଶ୍ୱରେ ନିର୍ମିତ କ୍ଷୁଦ୍ର କ୍ଷୁଦ୍ର ସ୍ତମ୍ଭରେ କୃତ୍ରିମ ହଂସ, ସାରସ, ଚକୋର, କୋକିଳ, ଚକ୍ରବାକ, ମୟୂର ପ୍ରଭୃତି ପକ୍ଷିଗଣ ସଜୀବଭଳି ଶୋଭା ପାଉଥିଲେ । ସମସ୍ତ ପରିବେଶ ପକ୍ଷୀମାନଙ୍କ କଳରବରେ ମୁଖରିତ ହେଉଥିଲା । ଚାରିଆଡ଼ କୁସୁମିତ କୁସୁମ ଉପରେ କୃଷ୍ଣ ଷଟ୍‌ପଦଗଣ କଳ-ଗୁଞ୍ଜନ କରୁଥିଲେ । ସର୍ବୋପରି ପ୍ରାସାଦଟି ଅପୂର୍ବ ଶୋଭା ସମ୍ପଦରେ ତ୍ରୈଲୋକ୍ୟର ବିମାନ ଭଳି ଦେଖାଯାଉଥିଲା ।

ନିମିଷକ ମଧ୍ୟରେ ଏଭଳି ଅପରୂପ ଦିବ୍ୟ ବିମାନ ଗୃହ ଅବଲୋକନ କରି ଦେବହୂତି ବିସ୍ମିତ ଭାବେ ନିଜର ପ୍ରାଣପ୍ରିୟ ପତିଙ୍କୁ ଅବାକ୍‌ଭାବେ ଚାହିଁ ରହିଲେ । ବାକ୍‌ରୁଦ୍ଧ ହୋଇ ଯାଇଥିବାରୁ ପଦଟିଏ କଥା ମଧ୍ୟ ତାଙ୍କ ମୁଖରୁ ବାହାରିଲା ନାହିଁ । ଏଭଳି ପ୍ରାସାଦ ଦର୍ଶନରେ ମଧ୍ୟ ଦେବହୂତି ଅଧିକ ଆନନ୍ଦିତା ହେଲେନାହିଁ । ଯୁଗପତ୍ ହର୍ଷଶୋକରେ ସେ ଭାବିଲେ—ବିମାନ କେତେ ସୁନ୍ଦର ହୋଇଛି, କିନ୍ତୁ ଶରୀର ମୋର ଏତେ କୃଶ ଓ ଦୁର୍ବଳ ଯେ ମୁଁ ତା ଉପରକୁ ଯିବାପାଇଁ ଅସମର୍ଥ । ଯଦି ବି ଉପରକୁ ଯିବି ତେବେ ମୋ ଦେହର ମଳିନତାରେ ଏହି କାନ୍ଥମାନ ବିମାନ ମଳିନ

ହୋଇଯିବ । ସେଥିପାଇଁ ସେ ନିଜର ସ୍ୱାମୀଙ୍କୁ ପଦଟିଏ କଥା ବି କହିପାରିଲେ ନାହିଁ ।

## ଛପ୍ପୟ

ବୋଲୀ ଅବ ହୃଦୟେଶ : ତପସ୍ୟା ସିଦ୍ଧି ଦେଖାଓ ।
ଗୃହୀ ସରସ ସୁଖ ଭବନ ସୁଭଗ ଇକ ନାଥ ବନାଓ ॥
ସୁନତ ତୁରତ ମୁନି ଦିବ୍ୟ ଯୋଗ ତେଁ ଭବନ ବନାୟୋ ।
ମଣିମୟ ସମ୍ପତ୍ତି ଯୁକ୍ତ ଭବନ ଲଖି ଚିତ୍ତ ଲୁଭାୟୋ ॥
ସବ ସୁଖ ଉପଯୋଗୀ ଜହାଁ, ବିବିଧ ବସ୍ତୁ ଭବନନି ଭରୀ ।
ସୁନ୍ଦର ଶୈୟ୍ୟା ସୁଖଦ ଅତି ସ୍ୱର୍ଣ୍ଣ ଜଟିତ ଚୌକୀ ଧରୀ ॥

# କର୍ଦ୍ଦମଙ୍କ ବୈରାଗ୍ୟ

(୧୫୪)

ସର୍ବଂ ତଦ୍ ଭଗବାନ୍ମହ୍ୟ ମୁ ପୋବାହ ପ୍ରତିଶ୍ରୁତମ୍ ।
ଅଥ ପିମେ ପ୍ରପନ୍ନାୟ ଅଭୟଂ ଦାତୁ ମର୍ହସି ॥
ବ୍ରହ୍ମନ୍ ଦୁହିତୃଭିସ୍ତୁଭ୍ୟଂ ବିମୃଗ୍ୟାଃ ପତୟଃ ସମାଃ ।
କଶ୍ଚିତ୍ସ୍ୟାନ୍ମେ ବିଶୋକାୟ ତ୍ୱୟି ପ୍ରବ୍ରଜିତେ ବନମ୍ ॥

(ଭାଗ-୩-୨୧-୫୧-୫୨)

## ଛପ୍ପୟ

ଆୟେ ଆଶ୍ରମ ଲୌଟି ସ୍ମରତ ସୁଖ ଅତିଶୟ ଦୀନ୍ହୋ ।
ନବଧା କରି ନିଜ ବୀର୍ଯ୍ୟ ଯଥାବିଧି ଥାପିତ କୀନ୍ହୋ ॥
ନବ କନ୍ୟାୟେଁ ଭଈଁ ଉଭୟେ କୁଳ ଯଶ ବିସ୍ତାରିନି ।
କମଲଗର୍ଭମୟ ଦେହ କନକ ଜନନୀ ସୁଖଦାୟିନୀ ॥
ବାଲ ମରାଲିନୀ କେ ସରିସ, କଲକଣ୍ଠ କୂଜେ ସୁତା ସବ ॥
କୁଟୁମ୍ବ ବଢ଼ତ ଜବ ମୁନି ଲଖ୍ୟୋ,
ଭୟୋ ଉଦିତ ବୈରାଗ୍ୟ ତବ ॥

ଦୁଃଖର ସମୟ କ୍ଷଣେମାତ୍ର ହେଲେ ବି ତାହା ଯୁଗ ଯୁଗ ଭଳି ଲମ୍ବିଯାଏ । ଶହ ଶହ ବର୍ଷ ବ୍ୟାପି ସୁଖର ସମୟ କ୍ଷଣକ ଭଳି ବିତିଯାଏ । କାଳର ଗତି ଏକ ପ୍ରକାର । ପ୍ରାଣୀମାନଙ୍କ ଦୁଃଖଦୁର୍ଦ୍ଦଶା ଦେଖି କାଳ ଧୀରେ ଧୀରେ ଗଡ଼ୁନାହିଁ କି ସୁଖ ସୌଭାଗ୍ୟ ଦେଖି ଦୌଡ଼ି ପଳାଇଯାଏ ନାହିଁ । ସୁଖ ଓ ଦୁଃଖରେ କାଳର ଗତି ସମାନ; କିନ୍ତୁ ଆମେ ଆମର ମନ, ଭାବନା ଓ ବୁଝିବା ଅନୁସାରେ ଧୀରତା ଓ ଶୀଘ୍ରତାର ସୃଷ୍ଟି କରୁଛୁ । ସୁଖ ଓ ଦୁଃଖ ଦ୍ୱାରା ଆମେ ମନକୁ ଜଡ଼ିତ କରିଥାଉଁ; କିନ୍ତୁ ମନକୁ ବଶୀଭୂତ କରିଥିବା ବ୍ୟକ୍ତି ସାରା ସଂସାରକୁ ନିଜର ବଶୀଭୂତ କରି ରଖିଥାଏ । ମନର ଅଧୀନତା ସ୍ୱୀକାର କରିଥିବା ବ୍ୟକ୍ତି ସଂସାର ବନ୍ଧନରେ ଆପେ ଆପେ ବାନ୍ଧିହୋଇଯାଏ । ସୁଖ ଦୁଃଖ, ବନ୍ଧନ ମୋକ୍ଷ ଆଦିର କାରଣ ହେଉଛି

ଯେତେବେଳେ ପ୍ରିୟା ଦେବହୂତିର ପ୍ରାର୍ଥନା ରକ୍ଷା କରି ଭଗବାନ କର୍ଦ୍ଦମ କଥା କଥାରେ ଗୃହସ୍ଥ ଗୃହସ୍ଥ ନିଜ ଯୋଗମାୟା ବଳରେ ସମସ୍ତ ଐଶ୍ୱର୍ଯ୍ୟ ସୁଖ, ଦୀପ୍ତି ସମ୍ପନ୍ନ ଇଚ୍ଛାନୁଗାମୀ ଦିବ୍ୟ ବିମାନ ନିର୍ମାଣ କରିଦେଲେ, ସେତେବେଳେ ଦେବହୂତି ବିସ୍ମୟାଭିଭୂତ ହୋଇ କହିଲେ—ଭଗବାନ୍ ! ମୋର ଏ କୃଶ ଓ ଦୁର୍ବଳ ଶରୀରରେ ଏତେ ବଡ଼ ଉଚ୍ଚ ଭବନ ଆରୋହଣ କରିବି କିପରି ? କିଏ ସେ ଭବନଗୁଡ଼ିକ ପରିଷ୍କାର ପରିଚ୍ଛନ୍ନ କରିବ ? ଆପଣ ତ ବହୁତ ଦୂରଦୃଷ୍ଟି ଏ ବିଶାଳ ପ୍ରସାଦ ନିର୍ମାଣ କରିଦେଲେ । ମୁଁ ତ ଏହାକୁ ସଫାସୁତୁରା ରଖି ରଖି ଥକି ପଡ଼ିବି । ମୁନି କର୍ଦ୍ଦମ ତାଙ୍କର ଅଭିପ୍ରାୟ ଜାଣିପାରି କହିଲେ —ତୁମେ ଭୟ କରୁଛ କାହିଁକି ? ପ୍ରଥମେ ତୁମେ ଭଗବାନଙ୍କ ନିର୍ମିତ ଏହି ପରମ ରମ୍ୟ ମହାପାବନ ବିନ୍ଦୁସରରେ ସ୍ନାନ କର, ତା ପରେ ପରେ ତୁମର ସମସ୍ତ କାମନା ପୂର୍ଣ୍ଣ ହୋଇଯିବ ।

ଦେବହୂତି କହିଲେ—ପ୍ରଭୋ ! ମୁଁ ପ୍ରତିଦିନ ତ ତ୍ରିସନ୍ଧ୍ୟାରେ ସ୍ନାନକରୁଛି । ଏବେ ଆପଣଙ୍କ ଆଦେଶରେ ଆଉ ଥରେ ସ୍ନାନ କରିବି । ଆଜିର ସ୍ନାନରେ କୌଣସି ପ୍ରକାର ବିଶେଷତ୍ୱ ଅଛି କି ? ମୁନି ଗମ୍ଭୀରଭାବେ କହିଲେ— ହଁ, ଆଜିର ସ୍ନାନ ମହତ୍ତ୍ୱପୂର୍ଣ୍ଣ । ଭଗବାନଙ୍କ ନିର୍ମିତ ଏହି ସରୋବର କଳ୍ପବୃକ୍ଷ ତୁଲ୍ୟ ଫଳପ୍ରଦ । ଏଥିରେ ଯେଉଁ କାମନା ପୋଷଣ କରି ସ୍ନାନ କରିବ, ତାହା ଅଚିରେ ପୂରଣ ହେବ । ମୁନିଙ୍କ ଆଦେଶ ଅନୁସାରେ ଦେବହୂତି ବଳ୍‌କଳ ନେଇ ସ୍ନାନକରିବାକୁ ବାହାରିବାରୁ ସେ ପୁଣି କହିଲେ—ଆଜିର ସ୍ନାନରେ ବଳକଳ ନେବାର ଆବଶ୍ୟକତା ନାହିଁ । ଦେବହୂତି କହିଲେ—ଆଉ କଣ ଯେ କହିନ୍ତୁ ତାର ଠିକଣା ନାହିଁ । ଏହା ସବୁଠାରୁ କୋମଳ ବଳ୍‌କଳ । ଏହାଦ୍ୱାରା ଟିକିଏ ହେଲେ କଷ୍ଟ ହୁଏନାହିଁ । ଏତେ ସୂକ୍ଷ୍ମ ଯେ ଟିକିଏ କଣ ହେଲେ ଫର୍‌କିନି ଚିରିଯିବ । ଏହାକୁ ନ ଧୋଇ ନ ଶୁଖାଇ କ'ଣ ପିନ୍ଧିବି, କ'ଣ ଯୋଡ଼ିହେବ ? କିନ୍ତୁ ମୁନିଙ୍କର ଆଗ୍ରହ, ଆଦେଶ ଓ ଅନୁରୋଧକୁ ଏଡ଼ାଇ ନ ପାରି ଦେବହୂତି ବଳ୍‌କଳ ନନେଇ ଆନନ୍ଦରେ ସ୍ନାନ କରିବାକୁ ଚାଲିଗଲେ । କୃଶ ଦେହରେ ତାଙ୍କର ଆଜି ନୂତନ ଉତ୍ସାହ ଖେଳିଯାଉଛି । ଜଟାକୃତି ଚିକ୍‌କଣ ବାଳ ସୂର୍ଯ୍ୟପ୍ରଭାରେ 'ଚକ୍ ଚକ୍ କରୁଥିଲା । ବକ୍ଷୋଦେଶର ସ୍ପଷ୍ଟ, ମଳିନ ଯୌବନ ଉପରେ ପୁନର୍ବାର ଲାବଣ୍ୟ ଉଙ୍କିମାରି ଉଠି ଆସୁଥିଲା । ସରସ୍ୱତୀ ତୀରବର୍ତ୍ତୀ ସେହି ସ୍ୱଚ୍ଛ ସରୋବର ଜଳରେ ଦେବହୂତି ବୁଡ଼ ଦେବା ମାତ୍ରେ ଦେଖିଲେ ଏକ ସୁନ୍ଦର ପ୍ରାସାଦ । ଚାରିଆଡ଼ୁ ଆବୃତ ହୋଇଥିବା ଏକ ମନୋହର ସ୍ନାନାଗାର । ସେଠାରେ ନବଯୌବନବତୀ ସହସ୍ର କୁମାରୀ ସେବା ଅପେକ୍ଷାରେ ଉପବିଷ୍ଟା । ସମସ୍ତଙ୍କ ନୟନ କମଳତୁଲ୍ୟ ସୁନ୍ଦର । ସମସ୍ତଙ୍କ ଶରୀର ଦିବ୍ୟ ଗନ୍ଧରେ ଆମୋଦିତ । ସେମାନେ ବିଦ୍ୟାଧର ଓ କିନ୍ନର ଜାତୀୟା କନ୍ୟା ଥିଲେ । ଦେବହୂତିଙ୍କୁ ଦେଖିବା ମାତ୍ରେ ସମ୍ଭ୍ରମ ଓ

ଶ୍ରଦ୍ଧାର ସହିତ ଉଠିପଡ଼ି ସେମାନେ ଠିଆ ହୋଇଗଲେ । ସେହି ସୁନ୍ଦରୀ କନ୍ୟାଗଣଙ୍କୁ ଦେଖି ଦେବହୂତି କୌତୁକ ଅପନୋଦନ ନିମିତ୍ତ ପଚାରିଲେ—ଭଉଣି ! ତୁମ୍ଭେମାନେ କିଏ ? ଏଠାରେ କାହିଁକି ବସିଛ ? କାହାର ଅପେକ୍ଷାରେ ଅଛ ? ତୁମେ ଏସବୁ ଶୃଙ୍ଗାର ସାମଗ୍ରୀ କାହିଁକି ଧରି ଠିଆ ହୋଇଛ ?

ବିନମ୍ରଭାବେ ହାତଯୋଡ଼ି ଶିଷ୍ଟାଚାରର ସହିତ ସେହି ଯୁବତୀଗଣ ଉତ୍ତର ଦେଲେ—ହେ ସ୍ୱାମିନି ! ଆମ୍ଭେମାନେ ଆପଣଙ୍କର ଦାସୀ । ଆପଣଙ୍କ ଅପେକ୍ଷାରେ ରହିଛୁ । ଆପଣଙ୍କୁ ସ୍ନାନ ଓ ସୁବେଶ କରାଇବା ଆମର ପ୍ରଧାନ କର୍ତ୍ତବ୍ୟ । ଆପଣ ଦୟା କରି ଆମ୍ଭମାନଙ୍କୁ ନିଜର ଅନୁରକ୍ତ ସେବିକାଭାବେ ସ୍ୱୀକାରପୂର୍ବକ ସେବା କରିବାର ସୁଯୋଗ ଦେଇ କୃତକୃତ୍ୟ କରାନ୍ତୁ । ଅନିନ୍ଦ୍ୟ ସୁନ୍ଦରୀ, ସୁକୁମାରୀ, କୋମଳାଙ୍ଗୀ ଦିବ୍ୟ ଗନ୍ଧବତୀ ସେବିକାମାନଙ୍କୁ ଲାଭ କରି ଦେବହୂତିଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ସ୍ନାନ ନିମିତ୍ତ ଯଥାସ୍ଥାନରେ ଆସନ ଗ୍ରହଣ କଲେ । ସେହି ଯୁବତୀମାନଙ୍କ ମଧ୍ୟରୁ କିଏ ଶିରୋଭାଗରୁ, କିଏ ପୃଷ୍ଠଦେଶରୁ ମଳି ଛଡ଼ାଇବାରେ ଲାଗିଗଲେ । କିଏ ଧୀରେ ଧୀରେ ପାଦ ସେବା କଲା ତ, କିଏ ଦିବ୍ୟ ଗନ୍ଧଯୁକ୍ତ ଅଙ୍ଗରାଗ ଶରୀରରେ ଲେପନ କଲା । କିଏ ସୁବାସିତ ଜଳ ଆଣି ଢାଳିଲା ତ କିଏ ସୁଗନ୍ଧ ତୈଳ ଲେପନ କଲା । ସ୍ନାନ ପରେ ସେହି ଯୁବତୀମାନେ ଦେବହୂତିଙ୍କୁ ଦିବ୍ୟ ବସ୍ତ୍ର, କଞ୍ଚୁକ, ସୁବର୍ଣ୍ଣା-ଭରଣ, ଅଙ୍ଗରାଗ, ପୁଷ୍ପମାଳା ନୂପୁରାଦିଦ୍ୱାରା ମଣ୍ଡନ କରିବାରେ ଲାଗିଗଲେ । ରତ୍ନ କଙ୍କଣ, ଅଙ୍ଗୁଷ୍ଠ, କୁଣ୍ଡଳ, ଚୂଡ଼ି, ରୂପ, ଚନ୍ଦ୍ରହାର, ବାଜୁବନ୍ଧ, ମୋତିହାରାଦି-ଦ୍ୱାରା ଦେବହୂତି ଅପୂର୍ବ ଶୋଭା ଧାରଣ କଲେ । ଯୁବତୀଗଣ ଏହିଭଳି କର୍ଦ୍ଦମ ପତ୍ନୀ ଦେବହୂତିଙ୍କୁ ଆପାଦମସ୍ତକ ମଣ୍ଡନ କରିଥିଲେ । ଶୃଙ୍ଗାର ରଚନା ପରେ ଦେବହୂତି ନିଜର ପ୍ରତିବିମ୍ବକୁ ଦର୍ପଣରେ ଦେଖି ଆଶ୍ଚର୍ଯ୍ୟ ଚକିତା ହୋଇଗଲେ । ସେ ଯେ ଜଣେ ତପସ୍ୱିନୀ ଥିଲେ, ସେ କଥା ଆଉ ଭାବିପାରିଲେ ନାହିଁ ।

'ପ୍ରିୟେଷୁ ସୌଭାଗ୍ୟ ଫଳା ହି ଚାରୁତା'— ନାରୀର ସମସ୍ତ ସୌନ୍ଦର୍ଯ୍ୟ ଓ ଶୃଙ୍ଗାର ନିଜର ପ୍ରେମିକ ପତିପାଖରେ ହିଁ ସଫଳତା ଲାଭ କରେ । ସମସ୍ତ ପ୍ରକାର ଦିବ୍ୟ ବସ୍ତ୍ର ଆଭୂଷଣରେ ସଜ୍ଜିତ ହେବାପରେ ଦେବହୂତି ପ୍ରାଣନାଥ କର୍ଦ୍ଦମଙ୍କ ସାକ୍ଷାତପାଇଁ ବ୍ୟାକୁଳ ହୋଇଉଠିଲେ । ସେ ମନେ ମନେ ଭାବିଲେ— ମୁଁ ତାଙ୍କୁ ପ୍ରଥମରୁ ବିସ୍ମିତ କରିଦେବି । ନିଜର ଅନୁପମ ସୌନ୍ଦର୍ଯ୍ୟରେ ତାଙ୍କୁ ଆକୃଷ୍ଟ କରିବି । ମନେ ମନେ ପତିଙ୍କ ସହିତ ମିଳନର ଉତ୍କଣ୍ଠା ଜାତହେବା ମାତ୍ରେ ଦେବହୂତି ହଠାତ୍ ସ୍ୱାମୀଙ୍କ ସମ୍ମୁଖରେ ଉପସ୍ଥିତ ହୋଇଗଲେ ।

ଆଜିର କର୍ଦ୍ଦମ ମୁନି ପୂର୍ବର ସେଇ ଜଟା ବଲ୍‌କଳଧାରୀ ମୁନି ରୂପରେ ନାହାନ୍ତି । ତାଙ୍କର ସେ ମୌଞ୍ଜି ବନ୍ଧନ ନାହିଁ । ତାକୁ ସେ ଫିଙ୍ଗିଦେଇଛନ୍ତି । ହେମଭସ୍ମଲେପନରେ

ସୁବାସିତ ଅଙ୍ଗରାଗ ତାଙ୍କ ଶରୀର ଶୋଭାକୁ ଦ୍ୱିଗୁଣିତ କରୁଛି । ପରିଧେୟ ବଲ୍‌କଲ ବଦଳରେ ମଠା ଧୋତି ପିନ୍ଧି କାନ୍ଧରେ ଚଦର ପକାଇ କନ୍ଦମୂଳ ଆସନ ଉପରେ ବସିଛନ୍ତି । ଚନ୍ଦ୍ରମାର ଅମୃତ ପାନ ପାଇଁ ଅଙ୍କା ବଙ୍କା ହୋଇ ଦୌଡ଼ିଥିବା କଳା ନାଗ ଭଳି କର୍ଦ୍ଦମଙ୍କ ଚନ୍ଦ୍ରମୁଖ ଚାରିପାଖରେ ଘନକୃଷ୍ଣ କୁଞ୍ଚିତ କୁନ୍ତଳ ମନ୍ଦ ପବନରେ ଆନ୍ଦୋଳିତ ହେଉଛି । କର୍ଣ୍ଣରେ ମକରାକୃତି କୁଣ୍ଡଳ, ମସ୍ତକରେ ମନୋହର ମୁକୁଟ ଶୋଭାପାଉଛି । ମୂଲ୍ୟବାନ ରତ୍ନଜଡ଼ିତ ତକିଆରେ ଭରାଦେଇ ବସି କର୍ଦ୍ଦମ ମୁନି ଧୀରେ ଧୀରେ ହସୁଛନ୍ତି । ଅସଂଖ୍ୟ ବିଦ୍ୟାଧରୀ ଛତ୍ର, ଚାମର, ବ୍ୟଜନ ନେଇ ତାଙ୍କର ସେବା କରୁଛନ୍ତି । ନିଜ ସ୍ୱାମୀଙ୍କୁ ଏଭଳି ଦିବ୍ୟ ରୂପରେ ଦେଖି ଦେବହୂତିଙ୍କ ଆନନ୍ଦର ସୀମା ରହିଲା ନାହିଁ । କର୍ଦ୍ଦମ ମୁନି ମଧ୍ୟ ଦେବରମଣୀବେଷ୍ଟିତା ଲକ୍ଷ୍ମୀଙ୍କ ସଦୃଶ ସୁନ୍ଦରୀ ଯୁବତୀଗଣ ବେଷ୍ଟିତା ତ୍ରିସ୍ୱୃତିମା ଦେବହୂତିଙ୍କୁ ଦେଖି ହସିଦେଲେ । ଲୋକ ପିତାମହ ବ୍ରହ୍ମାଙ୍କ ପରି ପ୍ରତିଭାଶାଳୀ ନିଜ ପତିଙ୍କ ପ୍ରସନ୍ନତା ନିମିତ୍ତ ଦେବହୂତି କଟାକ୍ଷଦ୍ୱାରା ନିଜର ହାବ, ଭାବ ଓ କାମନାର ଧାରା ବର୍ଷା କରିବାକୁ ଲାଗିଲେ । ସ୍ୱାମୀଙ୍କ ଯୋଗ ପ୍ରଭାବ ଲକ୍ଷ୍ୟକରି ସେ ବିସ୍ମିତା ହୋଇଗଲେ । କର୍ଦ୍ଦମ ମୁନି ଦେବହୂତିଙ୍କ ହାତ ଧରି ସେହି ଦିବ୍ୟ ରଥରେ ବସାଇ ସ୍ନେହରେ କହିଲେ— ଆଜି ତ ତୁମକୁ ଆଦୌ ଚିହ୍ନି ହେଉନାହିଁ ।

ସ୍ନେହପୂର୍ଣ୍ଣ ହୃଦୟରେ ମଧୁର ବାଣୀରେ ନିଜର କୃତଜ୍ଞତା ପ୍ରକାଶପୂର୍ବକ ମନୁ ପୁତ୍ରୀ କହିଲେ —ପ୍ରଭୋ ! ଆପଣଙ୍କ ତପସ୍ୟାର ଶକ୍ତି ଅଭୂତପୂର୍ବ । ଆରାଧନା-ଦ୍ୱାରା ଅଚ୍ୟୁତଙ୍କୁ ଯେ ପ୍ରସନ୍ନ କରିପାରନ୍ତି , ସେ ଏହି ସଂସାରରେ ଆଉ ମଧ୍ୟ ଭୋଗ ମୋକ୍ଷ ସବୁ କିଛି ଲାଭ କରିଥାନ୍ତି । ଭଗବଦ୍‌କୃପାଲବ୍ଧ ବ୍ୟକ୍ତିଠାରେ ଭୁକ୍ତି କଥା ପରରେ କିଏ ମୁକ୍ତି ତ ହାତଯୋଡ଼ି ଠିଆ ହୋଇ ରହିଥାଏ ।

ମୈତ୍ରେୟ ମୁନି ବିଦୁରଙ୍କୁ କହୁଛନ୍ତି—ହେ ବିଦୁର ! ମହାତ୍ମନ କର୍ଦ୍ଦମ ଓ ଦେବହୂତି ସେହି ଦିବ୍ୟ ବିମାନରେ ବାସ କରି ଦିବ୍ୟାତିଦିବ୍ୟ ସୁଖ ଉପଭୋଗ କରି-ବାକୁ ଲାଗିଲେ । ଆନନ୍ଦରେ ଗାର୍ହସ୍ଥ୍ୟ ଜୀବନ କଟାଇବାରେ ଲାଗିଲେ ।

## ଛପ୍‌ପୟ୍

**ଷୋଳହି ଶୃଙ୍ଗାର କରେଁ କର କମଳ ଧ୍ୟାବତ ।**
**କମଳା ସମ ନିଜ ନାରୀ ନିରଖି ମୁନି ମନ ମୁସକାବତ ॥**
**ନବ ଯୌବନ ସମ୍ପନ୍ନ ଅଧର ମୁସିକାନି ମନୋହର ।**
**ଶୋଭିତଭଈ ସଜୀବ ତପସ୍ୟା ଅଥବା ତନୁ ଧର ॥**
**ଜସ ମନୁ ତନୟା ମୁନି ହୁ ତସ ଶୋଭେଁ ସୁନ୍ଦର ତନୁ ଧରେଁ**
**ମନୋ ଅଙ୍ଗ ଅନଙ୍ଗ ଧରି, ରତି ସଙ୍ଗ ସୁଖ କ୍ରୀଡ଼ା କରେଁ ॥**

## କର୍ଦ୍ଦମଙ୍କ ବିହାର

(୧୪୮)

ତେନାଷ୍ଟଲୋକପବିହାର କୁଲାଚଲେନ୍ଦ୍ର
ଦ୍ରୋଣୀଷ୍ୱନଙ୍ଗ ସଖ ମାରୁତ ସୌଭଗାସୁ ।
ସିଦ୍ଧୈର୍ନୁତୋଦ୍ୟୁଧୁନିପାତ ଶିବସ୍ୱନାସୁ
ରେମେ ଚିରଂ ଧନଦ ବଲ୍ଲଲନାବରୂଥୀ ॥

(ଭାଗବତ—୩-୨୩-୩୯)

ଛପ୍‌ପୟ

ବୋଲୀ ଭମିନି-ବନ୍ଧେ ! ବିଶ୍ୱବୈଭବ ହୋଂ ଦେଖୁଁ ।
ସୁଖଦ ସ୍ୱର୍ଗ ସୌନ୍ଦର୍ଯ୍ୟ ଇନ୍ଦ୍ରୀ ନୟ୍ନନନି ତେ ପେଖୁଁ ॥
ସୁନି ମୁନି ଉଡ଼େ୍ୟା ବିମାନ କୁଲାଚଲପତିପେ ଆୟୋ ।
ସୁର କ୍ରୀଡ଼ାବର ଭୂମି ଦିବ୍ୟ ଐଶ୍ୱର୍ଯ୍ୟ ଦିଖାୟୋ ॥
ନନ୍ଦନ, ସୁରସନ, ଚୈତ୍ରରଥ, ବୈଭ୍ରାଜକ, ମାନସ ସବନ ।
ପୁଷ୍ପଭଦ୍ର ଉଦ୍ୟାନ ସବ, ଲଖେ ଭୟୋ ଅତି ମୁଦିତ ମନ ॥

ଦିବ୍ୟ ହେଉ ବା ପାର୍ଥିବ ହେଉ, ବିଷୟରେ କେବେହେଲେ ସୁଖ ମିଳେ ନାହିଁ । ବିଷୟ ଶାଶ୍ୱତ ଶାନ୍ତି ଦିଏନାହିଁ , ତଥାପି ପରମ୍ପରା ଅନୁସାରେ ଲୋକେ ବିଷୟରେ ଅଭିଳାଷୀ ହୁଅନ୍ତି । ସୁଖ କାମନାରେ ଉତ୍ତରୋତ୍ତର ବିଷୟ ସମ୍ପତ୍ତି ଜମିବା ବ୍ୟଗ୍ର ଓ ବ୍ୟାକୁଳ ହୁଅନ୍ତି । ସାଧାରଣ ଲୋକ ଭାବେ ଲକ୍ଷପତି ସୁଖରେ ଥିବ, ତା ପାଖରେ ସୁଖର ପ୍ରଚୁର ସାମଗ୍ରୀ ଥିବ । ସେହିପରି ଲକ୍ଷପତି ଭାବେ କୋଟିପତି କଥା, କୋଟିପତି ଅର୍ବୁଦପତି, ଅର୍ବୁଦ ପଦ୍ମପତି, ପଦ୍ମପତି ଚକ୍ରବର୍ତ୍ତୀ ଏବଂ ସେହି କ୍ରମରେ ଇନ୍ଦ୍ର, ବ୍ରହ୍ମା, ତ୍ୟାଗୀ ବୈରାଗୀଙ୍କୁ ସୁଖୀବୋଲି ଭାବନ୍ତି । ବାସ୍ତବରେ ସେମାନଙ୍କ ଅନବୋଧରେ କହୁଛି ସତ୍ୟ ଆଏ । ବିଷୟ ଯେତେକ ବଢ଼େ, ତୃଷ୍ଣା ତତୋଽଧିକ ବଢ଼େ । ଯାହାର ଯେତେକ ତୃଷ୍ଣା ବଢେ, ସେ ସେତେକ ଅଧିକ ଦୁଃଖୀ ହୁଏ ; କିନ୍ତୁ ଏ ପ୍ରକାର ଅନୁଭବ କେବଳ କଥା ଶୁଣିବାରେ ହୁଏ ନାହିଁ । ସେଥିପାଇଁ କ୍ରମମୁକ୍ତିକାମୀ

ସାଧକ ଦିବ୍ୟ ସୁଖର ଅନୁଭୂତି ମଧ୍ୟରେ ନିଜ ମାର୍ଗରେ ଅଗ୍ରସର ହୁଅନ୍ତି । କେହି କେହି ବୁଦ୍ଧି ବଳରେ ଏବଂ ବିଷୟରେ ଦୃଢ଼ ଧାରଣାଦ୍ୱାରା ପାର୍ଥିବ ସୁଖକୁ ତୁଚ୍ଛ ମନେକରି ପୁରୁଷୋତ୍ତମ ଧାମରେ ରହିବା ସଙ୍ଗେ ସଙ୍ଗେ ନିତ୍ୟସୁଖର ଅଧିକାରୀ ହୋଇଥାନ୍ତି ।

କାମଦ ବିମାନରେ ବସି ପୃଥିବୀର ସବୁଦେଶ ବୁଲିସାରି ସମସ୍ତ ସୁଖ ଐଶ୍ୱର୍ଯ୍ୟ ଅନୁଭବ କରି ଦେବହୂତି ପତିଦେବ କର୍ଦ୍ଦମଙ୍କୁ କହିଲେ—ପ୍ରାଣନାଥ ! ସୁମେରୁ ପର୍ବତରେ ଅଷ୍ଟଲୋକପାଳଙ୍କ ଦିବ୍ୟସୁନ୍ଦର ପୁର ଥିବାର ମୁଁ ଶୁଣିଛି । ସେଠାରେ ଥିବା ମନୋରମ ବନ ଉପବନରେ କଳ୍ପବୃକ୍ଷ ନାମରେ ଏକ ଅଦ୍ଭୁତ ବୃକ୍ଷ ରହିଛି । ସେହି ବୃକ୍ଷ ମୂଳରେ ବସି ଯେ ଯାହା ଇଚ୍ଛାକରେ ତାର ଇଚ୍ଛା ସଫଳ ହୁଏ । ପର୍ବତମାନଙ୍କର ସ୍ୱାମୀ ସୁମେରୁ ପର୍ବତର ସୁନ୍ଦର ଉଚ୍ଚ ଶୃଙ୍ଗରେ ସଙ୍ଗୀତର ସୁମଧୁର ଧ୍ୱନି ଅହରହ ଶୁଣାଯାଏ । ସେହି ଗିରି କନ୍ଦରାରେ କିନ୍ନର, ବିଦ୍ୟାଧର ଓ ଗନ୍ଧର୍ବ କାମିନୀଗଣ ନିଜ ନିଜର ପତିମାନଙ୍କସହ ସର୍ବଦା ଲୀଳା ଖେଳା କରୁଛନ୍ତି । ଋତୁ ଅନୁକୂଳ ଶୀତଳ, ମନ୍ଦ ସୁଗନ୍ଧ ବାୟୁ ବହୁଛି । ସେହି ଗିରି ଶୃଙ୍ଗରୁ ଭଗବତୀ ଅଳକନନ୍ଦା ସର୍ବଦା ହର ହର ଶବ୍ଦ କରି ଝରି ଆସୁଛି । ସେଠାରେ ଶୋକ ନାହିଁ କି ଗ୍ଲାନି ନାହିଁ ସ୍ୱେଦ ବନ୍ଧେ ନାହିଁ କି ଆଳସ୍ୟ ଜାତ ହୁଏନାହିଁ । ବାର୍ଦ୍ଧକ୍ୟର ଅବକାଶହିଁ ନାହିଁ । ସଦା ସର୍ବଦା ସମସ୍ତେ ତାରୁଣ୍ୟ ମଧ୍ୟରେ ଦିବ୍ୟ ସୁଖ ଆସ୍ୱାଦନ କରୁଛନ୍ତି ସମସ୍ତେ ରୂପବାନ, ସୁନ୍ଦର ଓ ଦର୍ଶନୀୟ ହୋଇଛନ୍ତି । ବିହାର ମଧ୍ୟରେ ସେମାନେ କାଳ କଟାଉଛନ୍ତି । ବିହାର ହିଁ ସେମାନଙ୍କ ଦୈନନ୍ଦିନ ବ୍ୟାପାର, ଶାସ୍ତ୍ରକାରମାନେ ତାହାକୁ ଭୋଗଭୂମି ରୂପେ ବର୍ଣ୍ଣନା କରିଛନ୍ତି । ସେହି ବନ, ଉପବନକୁ ଦେଖିବାପାଇଁ ମୋର ଇଚ୍ଛା ହେଉଛି, ଦେବାଙ୍ଗନାମାନଙ୍କ ପରି ସେଠାରେ ଆପଣଙ୍କ ସହିତ ବିହାର କରିବା ନିମିତ୍ତ ମୋର ଇଚ୍ଛା ହେଉଛି । ଆମର ଅତୁଳ ଐଶ୍ୱର୍ଯ୍ୟଦ୍ୱାରା ସେହି ଦେବଲଲନାଙ୍କୁ ଲଜ୍ଜିତ କରିବାପାଇଁ ମୋର କୌତୁହଳ ଜାତ ହେଉଛି । ଆପଣ ଇଚ୍ଛା ଅନୁସାରେ ସବୁ କିଛି କରିବାପାଇଁ ସମର୍ଥ । ତେଣୁ ମୋର ଅଭିଳାଷ ପୂରଣ ନିମିତ୍ତ ହେ ସର୍ବଶକ୍ତିମାନ ! ଇଚ୍ଛା ପ୍ରାର୍ଥନା କରୁଛି ।

ମହାତ୍ମା କର୍ଦ୍ଦମ ଦେବହୂତିଙ୍କ ସେବାରେ ସନ୍ତୁଷ୍ଟ ହୋଇ ତାଙ୍କୁ ସର୍ବୋତ୍ତମ ସୁଖ ସୌଭାଗ୍ୟ ଉପଭୋଗ ଦେବାପାଇଁ ଉତ୍ସୁକ ଥିଲେ । ଦେବହୂତିଙ୍କ ସମସ୍ତ ଆକାଂକ୍ଷା ପୂରଣ କରିବାକୁ ଚାହୁଁଥିଲେ ଏବଂ ତାଙ୍କର ପ୍ରସନ୍ନତା ପାଇଁ ମୁନି ନିଜ ତପସ୍ୟାର ସମସ୍ତ ପ୍ରଭାବ ବିନିଯୋଗ ପାଇଁ ଇଚ୍ଛା କରୁଥିଲେ । ଅଭିଳାଷ ପୂରଣ ନିମିତ୍ତ କୌଣସି ଯାନାସନର ଆବଶ୍ୟକତା ନ ଥିଲା । ସଂକଳ୍ପ କରିବା ମାତ୍ରେ

ବିମାନ-ଭବନ ଆକାଶକୁ ଉଠିଲା । ଦେବଦୂତ କୌତୂହଳର ସହିତ ଲକ୍ଷ୍ୟ କରୁଥାନ୍ତି । ଅନ୍ତରୀକ୍ଷ, ଭୂଲୋକରେ ବା ଦ୍ୱୀପରେ ମନୁଷ୍ୟଙ୍କର ଆଖି ଭୂତ ପିଶାଚ ଓ ସିଦ୍ଧମାନଙ୍କୁ ଦେଖିଲେ । ବିମାନ ଆକାଶରେ ଭାସମାନ ମେଘମାଳା ଭେଦକରି ଉପରକୁ ଉଠୁଥିଲା । ନିମ୍ନ ଜଗତରେ ଥିବା ବୃକ୍ଷ, ଲତା, ବିଶାଳ ପଥ ଚିତ୍ର ରେଖାଭଳି ପ୍ରତୀତ ହେଉଥିଲା । ପ୍ରବହମାନା ନଦୀମାନଙ୍କ ଲମ୍ବମାନ କ୍ଷୀଣ ସର୍ପ ଭଳି ଦେଖାଯାଉଥିଲେ । ବୁଲୁଥିବା ନରନାରୀ ମାନେ ଏବଂ ହାତୀ, ରଥ, ଯାନ ପକ୍ଷୀ ଭଳି ପ୍ରତୀତ ହେଉଥିଲେ । ଦେବଦୂତଙ୍କ କୌତୂହଳର ସୀମା ରହୁ ନ ଥିଲା । ସେ ବିମାନରେ ଠିଆ ହୋଇ ଏ ସବୁ ଦୃଶ୍ୟ ନିରୀକ୍ଷଣ କରୁଥିଲେ । ଦିବ୍ୟ ମଣିମାଣିକ୍ୟଶୋଭିତ ତାଙ୍କ ରଥ ଝଲ୍‌ମଲ୍ କରୁଥିଲା । ନିମିଷକରେ ଓ ଛଣିଂଶରେ ରଥଟି ଉଡ଼ି ଉଡ଼ି ଯାଇ ମନ୍ଦର ପର୍ବତର ଶିଖର ଦେଶରେ ପହଞ୍ଚିଲା ।

ମନ୍ଦରାଚଳର ଶୋଭା ଦେଖି ଦେବଦୂତ ବିସ୍ମିତ ହୋଇଗଲେ । ସେହି ସୁବର୍ଣ୍ଣ ଶୈଳ ମନ୍ଦର ପର୍ବତର ସୌନ୍ଦର୍ଯ୍ୟ ଥିଲା ଅତୁଳନୀୟ । ମନୋହର ସୁବୃହତ୍ ଗିରିକନ୍ଦର, ସୁଗନ୍ଧ ଗନ୍ଧବହ ବାୟୁ ଆନ୍ଦୋଳିତ ଅଜସ୍ର ପୁଷ୍ପଶୋଭିତ ବୃକ୍ଷଲତା ଓ ବିଚିତ୍ର ପକ୍ଷୀମାନଙ୍କ ମଧୁର କଳ କାକଳିରେ ପୂର୍ଣ୍ଣ ଥିଲା । ଋତୁରାଜ ବସନ୍ତ ସେଠାରେ ଚିରକାଳ ଥିଲା । ବାୟୁଦେବ ଅନୁକୂଳତାର ଅଧୀନ ଥିଲେ । ବୃକ୍ଷ ଲତାଗଣ, ଶୋଭା ଅନୁରୂପ ଫଳ, ପୁଷ୍ପ ଓ ପତ୍ର ଧାରଣ କରୁଥିଲେ । ପରିପକ୍ୱ ଫଳରୁ ଏକ ଆମୋଦଦାୟକ ମାଦକ ଗନ୍ଧ ଆସୁଥିଲା । ପୁଷ୍ପ ଉପରେ ଭ୍ରମରଗଣ କଳଗୁଞ୍ଜନ ଶବ୍ଦ କରି ଉଡ଼ି ବୁଲୁଥିଲେ । ସେମାନେ ବାତକମ୍ପିତ ପୁଷ୍ପର ବାରମ୍ବାର ନିବାରଣ ସତ୍ତ୍ୱେ ମଧୁପାନରେ ମତ୍ତ ଥିଲେ । ପତ୍ରଗୁଡ଼ିକ ଚଞ୍ଚଳ ହୋଇଉଠୁଥିଲେ ; କିନ୍ତୁ ମକରନ୍ଦ ପାନ କରି ତୃପ୍ତ ଭ୍ରମରଗଣ ଉଡ଼ିଯାଉଥିଲେ । ଆଳସ୍ୟବିଜଡ଼ିତା ଦେବଲଳନାଗଣ ନିଜ ନିଜ ପତିଙ୍କ ସହ ଇତସ୍ତତଃ ଭ୍ରମଣ କରୁଥିଲେ । ଗନ୍ଧର୍ବମାନଙ୍କ ସଙ୍ଗରେ ତାଳେ ତାଳେ ଅପ୍ସରାଗଣ ନୃତ୍ୟ କରୁଥିଲେ । ଦେବଗଣ ବିଭିନ୍ନ ସ୍ଥାନରେ ଭ୍ରମଣ ରତ ଥିଲେ । ବୀଣା, ପଣବ, ମୃଦଙ୍ଗର ଧ୍ୱନି ଓ ପ୍ରତିଧ୍ୱନିରେ ମନ୍ଦରାଚଳର କନ୍ଦରାଗୁଡ଼ିକ ଗୁଞ୍ଜିତ ହେଉଥିଲା । କେତେକ ବିମାନ ପଂକ୍ତିବଦ୍ଧ ହୋଇ ରହିଥିଲା ଓ ଆଉ କେତେକ ଉଡ଼ୁଥିଲା । କେଉଁଠାରେ ଗୀତ, କେଉଁଠି ନୃତ୍ୟ, ବା ନାଟକ ହେଉଥିଲା । କେତେକ ଦେବତା ନିଜ ପତ୍ନୀଙ୍କ ସହିତ ବିମାନରୁ ଅବତରଣ କରି ଉପବନ ଆଡ଼କୁ ବୁଲିଯାଉଥିଲେ । ଚାରିଆଡ଼େ ମନୋରଞ୍ଜନର ଅସଂଖ୍ୟ ସାମଗ୍ରୀ ଭରି ରହିଥିଲା । ଗର୍ବୋଦ୍ଧତ ରୂପ ଯୌବନର ସମ୍ଭାର ବହନ କରି ମଦମତ୍ତ ଦେବଯୁବତୀଗଣ ଘୂରି ବୁଲୁଥିଲେ । ବିନୋଦର ଆୟୋଜନମଧ୍ୟରେ ଭୟ ବା ଲଜ୍ଜାର ଅବକାଶ ନ ଥିଲା । ହାସ୍ୟ, ଗୀତ, ନୃତ୍ୟ, ଖାଦ୍ୟ, ପେୟ, ସାଜସଜ୍ଜା,

ବିମାନ ମଧ୍ୟରେ ସମସ୍ତେ ବ୍ୟସ୍ତ ହେଉଥିଲେ । ବିଚିତ୍ର ପ୍ରକାର ଚାଞ୍ଚଲ୍ୟ ବିରାଜିତ ଥିଲା । ମୁନି କର୍ଦ୍ଦମଙ୍କ ବିମାନକୁ ଦେଖି ସମସ୍ତେ ସିଦ୍ଧ, ଚାରଣ, ଗନ୍ଧର୍ବ, ଦେବତା ଓ ଋଷିସମୂହ ବିସ୍ମିତ ହୋଇଗଲେ । ସମସ୍ତେ ତାଙ୍କର ଆଡ଼କୁ ଚାହିଁଥାନ୍ତି । ସେଭଳି ବିମାନ ଅଷ୍ଟଦିକ୍‌ପାଳଙ୍କ ମଧ୍ୟରୁ କାହାର ନ ଥିଲା । ଦେବାଙ୍ଗନାମାନଙ୍କ ମନରେ ପ୍ରଶ୍ନର ଅନ୍ତ ନ ଥିଲା । କିଏ ଏହି ଭାଗ୍ୟବତୀ ନାରୀ ଅପୂର୍ବ ବିମାନରେ ଭ୍ରମଣ କରୁଛି । ଆକୃତି ଓ ପ୍ରକୃତି ଦୃଷ୍ଟିରୁ ମାନବସ୍ତ୍ରୀ ମହିଳା ପରି ମନେ ହେଉଛନ୍ତି, କିନ୍ତୁ ଐଶ୍ୱର୍ଯ୍ୟରେ ସେ ତ ଆମ ସମସ୍ତଙ୍କଠାରୁ ଉର୍ଦ୍ଧ୍ୱରେ । ନିଜ ପତ୍ନୀମାନଙ୍କର ମନୋଭାବ ଜାଣି ଦେବଗଣ କହିଲେ— ଏ ଭଗବାନ୍ କର୍ଦ୍ଦ ମୁନିଙ୍କ ଧର୍ମପତ୍ନୀ । କର୍ଦ୍ଦମଙ୍କ ପ୍ରଭାବ ଅତୁଳନୀୟ । ଶ୍ରୀହରିଙ୍କ ଦୟାରୁ ସେ ସମସ୍ତ ସିଦ୍ଧିର ଅଧିକାରୀ ହୋଇଛନ୍ତି ।

ଦେବତା, ସିଦ୍ଧ, ଗନ୍ଧର୍ବାଦିଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ମୁନି କର୍ଦ୍ଦମ ପତ୍ନୀ ଦେବହୂତିଙ୍କ ସହିତ ବିଭିନ୍ନ ବନ, ଉପବନ ଭ୍ରମଣ କଲେ । ସର୍ବତ୍ର ତାଙ୍କୁ ସ୍ୱାଗତ କରାଗଲା । ପୁଷ୍ପାଞ୍ଜଳିରେ ବିମାନ ତାଙ୍କର ପୂରିଗଲା । ବୈଶ୍ରମ୍ଭକ, ସୁରସନ, ନନ୍ଦନ, ପୁଷ୍ପଭଦ୍ର, ମାନସ, ଚୈତ୍ରରଥ ଆଦି କାନନରେ ବହୁକାଳ ଭ୍ରମଣ କରିବାରେ ଦେବହୂତିଙ୍କ ଆନନ୍ଦର ସୀମା ରହିଲା ନାହିଁ । ଦେବଗଣଙ୍କ ବିମାନ, ଐଶ୍ୱର୍ଯ୍ୟ, ପ୍ରଭା, କାନ୍ତି ଆଦି ମୁନି କର୍ଦ୍ଦମଙ୍କଠାରେ ନ୍ୟୂନ ହୋଇଯାଉଥିଲା । ଦେବଗଣ କେବଳ ପୁଣ୍ୟର ପ୍ରଭାବରେ ସ୍ୱର୍ଗଲୋକକୁ ଆସିଛନ୍ତି ; କିନ୍ତୁ କର୍ଦ୍ଦମ ଭଗବଦ୍ ଉପାସନା ବଳରେ କି ସ୍ୱର୍ଗଠାରୁ ଅଧିକ ଐଶ୍ୱର୍ଯ୍ୟଶାଳୀ ହୋଇପାରିଛନ୍ତି । ହୃଦୟରେ ଯାହାର ଭଗବଦ୍ ଭକ୍ତି ରହିଛି, ପବିତ୍ରଚରିତ୍ର, ପୁଣ୍ୟଶ୍ଳୋକ, ଜଗତ୍ର ମଙ୍ଗଳ ସାଧକ, ଭବଭୟ-ହାରୀ ଭଗବାନ୍ ପୁରୁଷୋତ୍ତମଙ୍କ ପାଦପଦ୍ମରେ ଯେ ଆଶ୍ରୟ ଗ୍ରହଣ କରିଛି, ତା'ଠାରେ ସଂସାରର କୌଣସି ବସ୍ତୁ ଦୁର୍ଲଭ ନୁହେଁ । ସ୍ୱର୍ଗସୁଖ ତା'ପାଖରେ ନଗଣ୍ୟ ତୁଚ୍ଛ । ମୁନିବର କର୍ଦ୍ଦମ ଯେଉଁ ଯେଉଁ ଲୋକପାଳଙ୍କ ପୁରୀକୁ ଯାଉଥିଲେ, ସେମାନେ ତାଙ୍କୁ ଦର୍ଶନ କରିବାପାଇଁ ଆସୁଥିଲେ । ସେମାନଙ୍କ ପତ୍ନୀଗଣ ଦେବହୂତିଙ୍କ ଚରଣ ବନ୍ଦନା କରୁଥିଲେ । ଦେବହୂତି ସେମାନଙ୍କୁ ଆଲିଙ୍ଗନ କରି କହୁଥିଲେ— ଆମ୍ଭେମାନେ ମର୍ତ୍ତ୍ୟର ଜୀବ । ଆପଣମାନେ ସ୍ୱର୍ଗର ଦେବୀ ଓ ଦିକ୍‌ଲୋକର ଅଧୀଶ୍ୱର ଲୋକପାଳଙ୍କ ପତ୍ନୀ । ଆପଣମାନଙ୍କ ସହିତ ସଂସାରୀ ଲୋକର ତୁଳନା ଅସମ୍ଭବ ।

ଲୋକପାଳଙ୍କ ପତ୍ନୀଗଣ ଅଞ୍ଜଳିବଦ୍ଧ ହୋଇ ଶ୍ରଦ୍ଧାର ସହିତ ନିବେଦନ କଲେ— ଦେବି ! ଆମ୍ଭମାନଙ୍କୁ ଏପରି ପ୍ରଶଂସାଦ୍ୱାରା ଲଜ୍ଜିତ କରନ୍ତୁନାହିଁ । ଅମର କି ବା ଐଶ୍ୱର୍ଯ୍ୟ ବା ଅଧିପତ୍ୟ ଅଛି ? ଆପଣଙ୍କ ସାମାନ୍ୟ ଶାପରେ ଆମେ କୀଟ

ପତିଙ୍କ ଭାବେ ଜନ୍ମହେବୁ । ସଂସାରର ସମସ୍ତ ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟ ଆପଣଙ୍କ ଅଧୀନ । ଅଣିମାଦିକ ବିଷୟର କର୍ତ୍ତାମାନ । ଅଲୌକିକ ସାଧନାଦ୍ୱାରା ଆପଣ ଅଖିଳେଶ୍ୱରଙ୍କୁ ବଶୀଭୂତ କରିପାରିଛନ୍ତି । ଆପଣଙ୍କ ଐଶ୍ୱର୍ଯ୍ୟଠାରେ ଅନ୍ୟମାନଙ୍କ ଐଶ୍ୱର୍ଯ୍ୟ ଅତି ତୁଚ୍ଛ । ଏହିପରି ଆଶାତୀତ ସମ୍ବର୍ଦ୍ଧନା ଲାଭକରି ଦେବହୂତି ନିଜ ପତିଙ୍କ ଅତୁଳନୀୟ ମହିମା ସହିତ ଉତ୍ତମଭାବେ ପରିଚିତ ହୋଇଥିଲେ ।

ବହୁକାଳ ଧରି ମହାମୁନି କର୍ଦ୍ଦମ ନିଜର ପ୍ରାଣପ୍ରିୟା ପତ୍ନୀ ଦେବହୂତିଙ୍କୁ ତ୍ରିଲୋକର ଅତୀବ ସୁନ୍ଦର ଚିତ୍ର ବିଚିତ୍ର ସୃଷ୍ଟି ବିଷୟକୁ ଦେଖାଇବାକୁ ଯାଇ ଦ୍ୱୀପ’ ବର୍ଷ, ନଦ, ନଦୀ, ସମୁଦ୍ର, କାନନ, ଅନ୍ତରୀକ୍ଷର ସମସ୍ତ ସ୍ଥାନ ବୁଲି ବୁଲି ସରସ୍ୱତୀ ନଦୀ କୂଳରେ ଥିବା ନିଜ ଆଶ୍ରମକୁ ଫେରିଆସିଲେ ।

## ଛପ୍ପୟ

ଜହିଁ ଶୁଭ ସୁଖଦ ସମୀର ସୁଗନ୍ଧିତ ସବ୍ ଶ୍ରମହାରୀ ।
ମନ୍ଦ ମନ୍ଦ ଡରି ବହେ କାଳ ଅନୁରୂପ ବିହୃରି ।।
କୋକିଲ କୀ କଲ କୁଁଜ ଗୂଞ୍ଜ ମଧୁମୟ ମଧୁକରକୀ ।
ଦେବହୂତି ହେଁ ଚକିତ ଲଖେ ଶୋଭା ଗିରିବର କୀ ।।
ଦେବ, ସିଦ୍ଧ, ସୁର ବଧୂନି ତେଂ ପୂଜିତ ମୁନି
ବିହରତ ଭୟେ ।
ନିରଖି ନିଖିଲ ଭୂଗୋଲ ପୁନି, ନିଜ ଆଶ୍ରମକୁଁ
ଚଲି ଦୟେ ।।

## କର୍ଦ୍ଦମ ଓ ଦେବହୂତିଙ୍କ
## ଗାର୍ହସ୍ଥ୍ୟ ଜୀବନ

(୧୫୭)

ତସ୍ମିନ୍ନ ଲୁପ୍ତ ମହିମା ପ୍ରିୟୟାନୁରକ୍ତୋ
ବିଦ୍ୟାଧରୀଭିରୁପଚୀର୍ଣ୍ଣବପୁର୍ବିମାନେ ।
ବଭ୍ରାଜ ଉତ୍କଚକୁମୁଦ୍‌ଗଣ ବାନପୀଚ୍ୟ—
ସ୍ତାରାଭିରାବୃତ ଇବୋଡୁପତିର୍ନଭଃସ୍ଥଃ ॥

(ଭାଗ-୩-୨୩-୩୮)

### ଛପ୍ପୟ

ଦାସୀ ଦାସ ବିହୀନ ମଳିନ ତନୁ ଭବନ ନ ପାୟୋ ।
ସମୁଝି ଭାବ ମୁନି ବିନ୍ଦୁସରୋବର ଯଲ ପରସାୟୋ ॥
ଭଈ ଦିବ୍ୟ ଜଲ ପରସି ସହସ ବର ଦାସୀ ଆଈଂ ।
କରି ସେବା ଶୃଙ୍ଗାର ଭବନ ମହଁ ମୁନି ଢିଗ ଲାଈଂ ॥
ଇତ ମୁନି ମୌଜୀ ମୁଁଜକୀ, ତଜି, ହୃଦେସମ, ସୁନ୍ଦର ଭୟୋ ।
ଉନତେ ହଁସି ଆଈ ପ୍ରିୟା, ଉଭୟ ପ୍ରେମ ତେଁ ମିଲି ଗୟୋ

ସଂସାରୀ ଲୋକ ଯେଉଁ ବିଷୟ ଭୋଗ ପାଇଁ ବ୍ୟାକୁଳ ହୁଏ ଏବଂ ବିଷୟ ଲାଭ ଯାହା ଜୀବନର ପରମ ଲକ୍ଷ୍ୟ, ସେ ନିଜ ଇଚ୍ଛା ଅନୁସାରେ ବିଷୟ ସୁଖ ଲାଭ କରି ପାରେ ନାହିଁ; ପରନ୍ତୁ , ସେ ଭଗବାନଙ୍କଠାରୁ ଦୂରରୁ ଦୂରକୁ ଚାଲିଯାଏ ; କିନ୍ତୁ ଯେଉଁମାନେ ଭଗବାନଙ୍କୁ ନିଜର ସର୍ବସ୍ୱ ବୋଲି ମନେକରନ୍ତି, ସେମାନେ ସୁଖ ଦୁଃଖରେ ତାଙ୍କ ବ୍ୟତୀତ ଅନ୍ୟ କାହାକୁ କିଛି କହନ୍ତି ନାହିଁ ଏବଂ ଅନନ୍ୟଚିତ୍ତରେ ତାଙ୍କର ଶରଣ ପ୍ରାର୍ଥୀ ହୁଅନ୍ତି । ସେମାନଙ୍କର ବିଷୟ ଭୋଗ ଇଚ୍ଛା ରହେ ନାହିଁ । ଯଦି କେତେବେଳେ ବିଷୟଭୋଗ କାମନା ମନରେ ଆସେ, ସେତେବେଳେ ସେ ତ୍ରିଲୋକ ଦୁର୍ଲ୍ଲଭ ସୁଖ ଲାଭ କରିଥାଏ । ଏକ ନିର୍ଦ୍ଦିଷ୍ଟ ଲକ୍ଷ ନେଇ ସେ ସେହି ସୁଖକୁ ସ୍ୱୀକାର କରେ । ପରିଶେଷରେ ମଳ, ମୂତ୍ର ତ୍ୟାଗ କଲାଭଳି ସେ ନିସ୍ପୃହ ଭାବେ ସମସ୍ତ ସୁଖକୁ ପରିତ୍ୟାଗ କରି ଉଦାସୀନ ହୋଇଯାଏ ।

ମନ । ମନର ରହସ୍ୟମୟ ଗତିକୁ ଯେ ବୁଝିପାରେ, ସେ କେବେହେଲେ ସଂସାର ବିଷୟରେ ଲିପ୍ତ ହୁଏ ନାହିଁ । ଯଦି ପ୍ରାକ୍‌ତନ କର୍ମବଶତଃ ଭଗବଦ୍ ଇଚ୍ଛା ଅନୁସାରେ ସଂଯତ ବ୍ୟକ୍ତିକୁ ବିଷୟବନ୍ଧନ ସ୍ୱୀକାର କରିବାକୁ ପଡ଼େ, ତେବେ ସେ ଶୀଘ୍ର ସେ ସେହି ବନ୍ଧନରୁ ମୁକ୍ତ ହୋଇଯାଇପାରେ ।

-

ମହାମୁନି କର୍ଦ୍ଦମ ପତ୍ନୀ ଦେବହୂତିଙ୍କୁ ଭୂଗୋଳ, ଖଗୋଳ, ସ୍ୱର୍ଗୀୟ ବନ ଉପବନର ଶୋଭା ଦେଖାଇ ସାରି ନିଜ ଆଶ୍ରମକୁ ଫେରି ଆସିଲେ । ନିଜ ପତ୍ନୀକୁ ସଂସାର କର୍ମୋଚିତ ସୁଖଭୋଗଦେବାରେ ସେ ଟିକେହେଲେ ଛାଡ଼ିଲେ ନାହିଁ । ବହୁବର୍ଷ ଧରି ସେ ପତ୍ନୀ ସହିତ ସହବାସ ସୁଖରେ ମଗ୍ନ ରହିଲେ । ଦାମ୍ପତ୍ୟ ସୁଖ-ଭୋଗରେ ବୁଡ଼ିରହି ଉଭୟ ଦିନ ବା ରାତି ଜାଣି ପାରିଲେ ନାହିଁ । ମୁନିଙ୍କ ଔରସରେ ଦେବହୂତି ଯଥା ସମୟରେ ନଅଟି କନ୍ୟାଙ୍କୁ ଜନ୍ମ ଦେଲେ । କନ୍ୟାମାନେ ସମସ୍ତେ ଥିଲେ ସୁନ୍ଦରୀ, ସୁଶୀଳା ଓ ସ୍ମିତହାସିନୀ । କନ୍ୟାମାନଙ୍କ ଦେହର ଲଜ୍ଜାର ଦିବ୍ୟ କମଳ ଗନ୍ଧରେ ବିମାନ ଗୃହ ସର୍ବଦା ସୁବାସିତ ହେଉଥିଲା । ସେମାନେ ଶିଶୁ-ସୁଲଭ ଚପଳତା ଓ ଅର୍ଦ୍ଧସ୍ଫୁଟ କୋମଳ ମଧୁର ବଚନରେ ପିତା ମାତାଙ୍କ ମନ ଓ ହୃଦୟକୁ ଉତ୍ତରୋତ୍ତର ପ୍ରଲୋଭିତ କରୁଥିଲା । ସମୁଦ୍ର ଜଳରେ ସନ୍ତରଣରତ ରଙ୍ଗ ବିରଙ୍ଗର ମତ୍ସ୍ୟ ଭଳି ସେହି କନ୍ୟାମାନେ ବିମାନ-ଭବନର ଚାରିଆଡ଼େ ହସି ଖେଳି ବୁଲୁଥିଲେ । ମୁନିଙ୍କ ଗାର୍ହସ୍ଥ୍ୟ ଜଞ୍ଜାଳ କ୍ରମଶଃ ବଢ଼ୁଥିଲା । ସେ ବର୍ତ୍ତମାନ ଏକରୁ ଅନେକ ହୋଇଛନ୍ତି । ଦେବହୂତି ଏବେ ଜାୟା ପଦରେ ଅଧିଷ୍ଠିତା ; କିନ୍ତୁ ମୁନିଙ୍କ ହୃଦୟରେ ଭଗବାନ୍‌ଙ୍କର ସେହି ପୂର୍ବ ଛବି ଲାଗି ରହିଛି । ସେ ବ୍ରହ୍ମାଙ୍କ ଆଦେଶ ଅନୁସାରେ ଗୃହସ୍ଥାଶ୍ରମରେ ପ୍ରବେଶ କରିଥିଲେ । ସେ ଥିଲେ ନିବୃତ୍ତିଧର୍ମର ଉପାସକ । କେବଳ ଲୋକସଂଗ୍ରହ ଲକ୍ଷ୍ୟରେ ମୁନି ପ୍ରବୃତ୍ତିକୁ ସ୍ୱୀକାର କରିଥିଲେ । ଯେତେବେଳେ ସେ ଦେଖିଲେ ଘର ତାଙ୍କର ଝିଅ ମାନଙ୍କଦ୍ୱାରା ପୂରିଗଲା, ସାରା ଘର ସେମାନଙ୍କ କଳରବରେ ମୁଖରିତ ହୋଇଉଠିଲା ଏବଂ ଦେବହୂତି ସେମାନ-ମାନଙ୍କ ସେବାରେ ସଦା ବ୍ୟସ୍ତ ବିବ୍ରତ ରହିଲେ ଓ ନିଜ ମନକୁ କେତେକାଂଶରେ ଲିପ୍ତ ହୋଇଯାଇଥିବାର ଅନୁଭବ କଲେ, ସେତେବେଳେ ମୁନିଙ୍କ ଚେତନା ପଶିଲା—"ଆରେ ମୁଁ ତ ଠକି ଗଲି । ଭଗବାନଙ୍କ ମାୟା ମୋତେ ଆଚ୍ଛନ୍ନ କଲା । ମୁଁ ବିଷୟର ଅଧିକ ହୋଇଗଲି । ଗାର୍ହସ୍ଥ୍ୟରୂପ ପଙ୍କରେ ମୁଁ ନିମଗ୍ନ ହୋଇଗଲି । ମାୟା ଓ ମୋହ ମୋତେ ଦାସ କରିଦେଲେ । ତେଣୁ ଆଉ ଅଧିକ ଦିନ ଏ ଜଞ୍ଜାଳରେ ବୁଡ଼ିରହିବା ଠିକ୍ ନୁହେଁ ।" ଏହି ବିଚାର ମନରେ ଆସିବାମାତ୍ରେ କର୍ଦ୍ଦମମୁନି ଦେବହୂତିଙ୍କୁ କହିଲେ—ମାନବି ! ମୋ କମଣ୍ଡଳୁ କାହିଁ ?

ବର୍ତ୍ତମାନ ସୁନା, ରୂପାର ରତ୍ନଜଟିତ ବାସନ କୁସନ ପଡ଼ିଥିବାବେଳେ ସେହି ପୁରୁଣା ତମ୍ବା ଗଡ଼ୁ କଥା ମନେ ପଡ଼ିଲା କପରି ? କେଉଁଠି ପଡ଼ିଥିବ କିଏ ଜାଣେ ? ଏପରି ଉପେକ୍ଷାସୂଚକ ଦେବଦୂତଙ୍କ କଥା ଶୁଣି ମୁନି ଗମ୍ଭୀର ଭାବରେ କହିଲେ—ନାଁ ନାଁ ତୁମେ ମୋର ସେଇ କମଣ୍ଡଳୁ ଏବେ ଖୋଜା ଖୋଜି କରି ଆଣ, ଆଉ ମୋ' ମୁଞ୍ଜ ନିର୍ମିତ ମୌଞ୍ଜୀମଧ ନେଇ ଆସ ।

ଦେବଦୂତ କର୍ମ କର୍ମ ଚାଲିଗଲେ । ଦୁଇ ଜଣଙ୍କ ଝିଅ ମା'କୁ ଜାବୁଡ଼ି ଧଇଲେ । ମା ଦେବଦୂତ କାହାକୁ ଡାକି, କାହାକୁ ସ୍ନେହ କରି ଆଉ କାହାକୁ ବୋଲ ଦେଇ ଉପରକୁ ଚାଲିଗଲେ । ଶ୍ରେଷ୍ଠ ଝିଅଟି କୋଳରେ ଥାଏ । କମଣ୍ଡଳୁ ନେଇ ଆସିଲେ । ମୌଞ୍ଜୀକୁ କୋଳରେ ଧିବା ଝିଅ ଦୁଇ ହାତରେ ଟାଣି ଧାଡ଼ିରେ ସୁଇଇ- ଥାଏ । ହସି ହସି ଦେବଦୂତ ପତିଙ୍କ ପାଖକୁ ଆସି ଅହଂକାରିଆ ସ୍ୱରରେ କହିଲେ—ନିଅ, ଆପଣଙ୍କ ସମ୍ପତ୍ତି ମିଳିଗଲା । ଆଜି କପରି ଏଭୁଣ୍ଡିକର କଥା ମନେ ପଡ଼ିଲା ?

ମୁନି କିଛି ନ କହି ହଠାତ୍ ପଟ୍ଟବସ୍ତ୍ର ଦେହରୁ କାଢ଼ି ଫିଙ୍ଗିଦେଲେ । ମୁଞ୍ଜବନ୍ଧନରଜ୍ଜୁ ଅଣ୍ଟାରେ ବାନ୍ଧିଦେଲେ । କଦଳୀ ଗଛର ପଟୁକାରେ କଉପୀନ ମାରିଦେଲେ । କମଣ୍ଡଳୁ ହାତରେ ଧରି ଠିଆ ହୋଇପଡ଼ି କହିଲେ—ମନୁପୁଣି ! ବହୁତ ହୋଇଗଲା । ତୁମ ସଂସାର ତୁମେ ଏବେ ସମ୍ଭାଳ । ମୁଁ ଚାଲିଲି ।

ସେ ପର୍ଯ୍ୟନ୍ତ ଦେବଦୂତ ସବୁ କିଛି ଖିଆଲିଆ ଥଟ୍ଟା ବୋଲି ଭାବୁଥିଲେ ; କିନ୍ତୁ ଏବେ ତାଙ୍କର ଚେତା ପଶିଲା । ଆରେ ମୁନିଙ୍କ କଥା ତ ସତ । ମୁଁ ଭାବିଥିଲି ସେ ମୋର ପୂର୍ଣ୍ଣରୂପେ ବଶୀଭୂତ ହୋଇଛନ୍ତି । ମୋର କ୍ରୀଡ଼ାମୃଗ ପାଲଟି ଯାଇଛନ୍ତି । ମୁଁ ଭାବିଥିଲି-ଯେଉଁଭଳି ନଚେଇବି ସେ ସେଉଁଭଳି ନାଚିବେ । ଯେଉଁଠି ବସେଇବି ସେଇଠି ବସିବେ ; କିନ୍ତୁ ସେ ସମସ୍ତ ମୋର ବୃଥା ଭ୍ରମ ଛଡ଼ା ଆଉ କିଛି ନୁହେଁ । ବୈରାଗୀ କାହାର ନୁହନ୍ତି । ଦେବଦୂତ ଝିଅକୁ କୋଳରୁ ଓହ୍ଲାଇ ଦେଲେ । ପତିଙ୍କ ବେକରେ ପଡ଼େଇ ଭୟଭୀତା ହୋଇ ହାତଯୋଡ଼ି ହସି ହସି କହିଲେ —ପ୍ରଭୋ ! ଏ ସବୁ ଆପଣଙ୍କ ସ୍ୱଭାବର ଅନୁରୂପ ; କିନ୍ତୁ ମୋ ଭଳି ଅବଳା ପ୍ରତି କିଛି ତ କରିବାର ଅଛି ?

ବିରକ୍ତଭାବେ ମୁନି ଉତ୍ତର ଦେଲେ—ଦେବଦୂତ ? ଏ ସଂସାରରେ ସବଳ କିଏ ? ସମସ୍ତେ ଦୁର୍ବଳ, ଦୁର୍ବଳର ବଳ ହେଉଛନ୍ତି ସେହି ଭଗବାନ୍ । ତୁମେ ତାଙ୍କର ଆଶ୍ରୟ ନିଅ । ସଂସାର ସମ୍ବନ୍ଧ କ୍ଷଣଭଙ୍ଗୁର । ତେଣୁ ଏଠାରେ କିଏ କାହା

ଉପରେ ରାଗିବ ବା କଏ କାହାକୁ ଦୟା କରିବ ? କିଏ କରାଇବା ଲୋକ ସେହି ଜଣେ, ସେ ହେଉଛନ୍ତି ଭଗବାନ୍ ଶ୍ରୀହରି । ତାଙ୍କର ଆଶ୍ରୟ ତୁମେ ନିଅ । ସେ ଚରାଚର ଜୀବ ଓ ଅସଂଖ୍ୟ ବ୍ରହ୍ମାଣ୍ଡର ଏକମାତ୍ର ପ୍ରଭୁ ଓ ଯୋଗକ୍ଷେମକାରୀ ।

ଅତ୍ୟନ୍ତ ନମ୍ରସ୍ୱରରେ ଦେବହୂତି ପ୍ରାର୍ଥନା କଲେ—ସ୍ୱାମୀନ୍ ! ଆପଣଙ୍କ କଥା ସବୁ ସତ୍ୟ ; କିନ୍ତୁ ମୋର ସର୍ବସ୍ୱ ହେଉଛନ୍ତି ଆପଣ । ସ୍ତ୍ରୀମାନଙ୍କର ପତି ହିଁ ପରମେଶ୍ୱର । ମୁଁ ଆପଣଙ୍କର ଶରଣାଗତ, ମୋର ଅନ୍ୟ କୌଣସି ଅବଲମ୍ବନ ନାହିଁ । ଏଣୁ, ଆପଣ ମୋତେ ଏଭଳି ଅବସ୍ଥାରେ ଛାଡ଼ିଦେଇ ଯାଆନ୍ତୁ ନାହିଁ । ଦେବହୂତିଙ୍କ ବିନୟ ଦେଖି ମୁନି କର୍ଦ୍ଦମ କହିଲେ—ଦେଖ, ମୁଁ ତୁମ ବାପାଙ୍କୁ ପ୍ରଥମରୁ କହିଥିଲି । ତୁମର ମନେ ଥିବ । ବିବାହ ପୂର୍ବରୁ ମୁଁ ସ୍ପଷ୍ଟଭାବେ କହିଥିଲି, ସନ୍ତାନ ନ ହେବା ପର୍ଯ୍ୟନ୍ତ ମୁଁ ତୁମ ସହିତ ରହିବି । ସନ୍ତାନ ଜନ୍ମହେବା ପରେ ମୁଁ ମୋର ସାଧନାରେ ଲାଗିଯିବି । ବ୍ରହ୍ମାଙ୍କ ଆଦେଶରେ ମୁଁ ବିବାହ କରିଥିଲି । ନୋହିଲେ ଆମେ ତ ମୋକ୍ଷଧର୍ମାବଲମ୍ବୀ ସାଧକ । ଭଗବାନ୍ ବାସୁଦେବଙ୍କ ପାଦପଦ୍ମର ଉପାସନା ମଗ୍ନ ହେବା ମୋର କର୍ତ୍ତବ୍ୟ । ବର୍ତ୍ତମାନ ତୁମର ଗୋଟିଏ ନୁହେଁ ନଅଟି ସନ୍ତାନ ଜନ୍ମ ହେଲେଣି । ସେମାନଙ୍କୁ ତୁମେ ପାଳନପୋଷଣ କର । ମୁଁ ଭଗବତ୍ ପରିଚର୍ଯ୍ୟାରେ ବ୍ୟସ୍ତ ରହିବି ।

ପିତାମାତାଙ୍କ ଆଲୋଚନା ଶୁଣି କନ୍ୟାମାନେ ଆସି ପହଞ୍ଚିଗଲେ । ଆଜି ବାପାଙ୍କର ଅଦ୍ଭୁତ ବେଶ ଦେଖି ଝିଅମାନେ ଆବାକାବା ହୋଇଗଲେ । ବାରମ୍ବାର ସେମାନେ ବାପାଙ୍କ ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହୁଁଥାନ୍ତି । ମା'ଙ୍କୁ ବାପାଙ୍କ ଆଗରେ କାନ୍ଦୁଥିବା ଦେଖି ଛୋଟ ଝିଅମାନେ କାନ୍ଦିବାରେ ଲାଗିଲେ । ବଡ଼ ଝିଅଟା ଟିକିଏ ବୁଝିଲା ଚତୁର ହୋଇଯାଇଥିଲା । ସେ ସବୁ ବୁଝିପାରୁଥିଲା । ସେ ନୀରବରେ ଆଖିରୁ ଲୁହ ପୋଛୁଥିଲା । କାନ୍ଦି କାନ୍ଦି ଦେବହୂତି କହିଲେ—ସ୍ୱାମୀନ୍ ! ମୁଁ ଆପଣଙ୍କୁ ଭଗବତ୍ ଆରାଧନାରୁ ନିବୃତ୍ତ ରହିବାକୁ କହୁ ନାହିଁ । ତପସ୍ୟା ଆପଣଙ୍କର ଧନ, ଏହା ମୁଁ ଜାଣେ । ଆପଣଙ୍କ ତପସ୍ୟା ବଳରେ ମୁଁ ନିଜକୁ ସଂସାରର ସର୍ବଶ୍ରେଷ୍ଠ ସୌଭାଗ୍ୟବତୀ ବୋଲି ଭାବେ । ମୁଁ ଆପଣଙ୍କୁ ଦୋଷ ଦେଉନାହିଁ । ବାପାଙ୍କ ଆଗରେ ଆପଣ ଯେଉଁ ପ୍ରତିଜ୍ଞା କରିଥିଲେ ସେ ସମସ୍ତ ପୂରଣ କରିଛନ୍ତି । ଦିବ୍ୟସୁଖ, ସନ୍ତାନ, ପ୍ରେମ ଓ ନିଜର ସର୍ବସ୍ୱ ଆପଣ ମୋତେ ଦେଇଛନ୍ତି । ଏବେ ମୋର ଆଉ ଏକ ପ୍ରାର୍ଥନା ଅଛି, ସେତିକି ମୋତେ ଦେଇଯାଆନ୍ତୁ । ଆପଣ ଖୁସିରେ ବନକୁ ଯାଇ ସର୍ବେଶ୍ୱରଙ୍କ ଆରାଧନାରେ ଲାଗି ରୁହନ୍ତୁ ।

'କଣ ଚାହୁଁ' ବୋଲି ମୁନି ପଚାରିବାରୁ ଦେବହୂତି କହିଲେ — ପ୍ରଭୋ ! ମୁଁ ଜଣେ ଅବଳା ମାତ୍ର । ସ୍ୱଭାବେ ନାରୀ । ମୁଁ ଏକା ଏକା ଏଡ଼େ ବଡ଼ ପରିବାରର ପରିଚାଳନା କିପରି କରିପାରିବି । ଝିଅମାନେ ଏବେ ବଡ଼ ହୋଇଆସିଲେଣି । ସମସ୍ତେ ବିବାହ ବୟସ ଆଡ଼କୁ ଆଗେଇଲେଣି । ସେମାନଙ୍କ ପାଇଁ ଯୋଗ୍ୟ ବର ଅନୁସନ୍ଧାନରେ ମୁଁ କୁଆଡ଼େ ଯାଇପାରିବି । ଆପଣଙ୍କ ବିମାନ-କୁହୁରୁ ତଳକୁ ମୁଁ ଏପର୍ଯ୍ୟନ୍ତ ପାଦ ପକେଇ ନାହିଁ । ଏଇଠି ଥାଇ ମୁଁ ଆପଣଙ୍କ ସହିତ ଜନଲୋକରେ ଭ୍ରମଣ କରିଛି । କାହାକୁ ଯାଇ ପ୍ରାର୍ଥନା କରିବି ? ମୋ ଭଳି ସ୍ତ୍ରୀଲୋକର କଥା କିଏ ରଖିବ ? ଝିଅମାନଙ୍କର ବିବାହ ହୋଇ ନ ପାରିଲେ ଆପଣଙ୍କର ହିଁ ଅପଯଶ ହେବ । ତେଣୁ ଏ ଝିଅମାନଙ୍କୁ ଯୋଗ୍ୟ ବରର ବିବାହ ଦେଇଯାଆନ୍ତୁ । ଆଉ ଆଉ - - - କହୁଁ କହୁଁ ଦେବହୂତି ଅଟକିଗଲେ ।

ମୁନି କହିଲେ ଆଉ କଣ ? ତା'ହା ବି କୁହ । ଲୁଚାଉଛ କାହିଁକି ? ଲଜ୍ଜିତା ହୋଇ ଦେବହୂତି ଉତ୍ତର ଦେଲେ—ମହାରାଜ ! ଆଉ କିଛି କହିବା କହିବ ମୋତେ ଲଜ୍ଜା ଲାଗୁଛି । ଦେଖନ୍ତୁ, ଶାସ୍ତ୍ରକାରମାନେ ସ୍ତ୍ରୀଲୋକଙ୍କୁ ସ୍ୱାଧୀନଭାବେ ସ୍ୱତନ୍ତ୍ର ରହିବା ପାଇଁ ନିଷେଧ କରିଛନ୍ତି । ବାଲ୍ୟ କାଳରେ ମାତାପିତାଦି ଗୁରୁଜନଙ୍କ ଦେଖାଶୁଣାରେ ଝିଅ ରହେ । ବିବାହ ପରେ ପତିଙ୍କ ଆଶ୍ରୟରେ ଏବଂ ପୁତ୍ର ସନ୍ତାନ ହେବା ପରେ ପୁଅର ଆଶ୍ରମରେ ଜୀବନ କଟାଏ । ଆପଣ ଚାଲିଗଲା ପରେ ମୋର ସହାୟ କିଏ ହେବ ? ଆପଣ ଭଗବତ୍ ଆରାଧନାରେ ସଂସାରାବାଯୋଗରନ୍ତୁ ପାର ହୋଇଯିବେ ; କିନ୍ତୁ ଆପଣଙ୍କର ସହଧର୍ମିଣୀ ଓ ସହଚାରିଣୀ ହୋଇ ଯଦି ମୁଁ ରୌରବଶି ନର୍କରେ ପଡ଼ି ସଡ଼ିବି, ତେବେ ଆପଣଙ୍କପାଇଁ ତାହା ବଡ଼ ଅପକୀର୍ତ୍ତିକର ହେବ । ତେଣୁ ମୋର ଉଦ୍ଧାର ବିଷୟରେ ମଧ୍ୟ ଆପଣ ଟିକିଏ ଚିନ୍ତା କରିବା ଉଚିତ । ମୋର ଆଶ୍ରୟ ବ୍ୟବସ୍ଥା କରି ଆପଣ ଯାଆନ୍ତୁ । ଝିଅଗୁଡ଼ାକ ତ ପରଘରୀ ହେବେ । ପର ଘରକୁ ଯିବା ପାଇଁ ତାଙ୍କୁ ପାଳିପୋଷି ବଡ଼ କରାଯାଏ । ତାଙ୍କ ପଛ ଲାଗିଲାମାତ୍ରେ ସେମାନେ ଉଡ଼ିଯିବେ । ବାପା ମାଙ୍କୁ ସେମାନେ ଭୁଲିଯିବେ । ପୁତ୍ର ହିଁ ସ୍ତ୍ରୀର ଏକମାତ୍ର ଆଶ୍ରୟ । କୌଣସିମତେ ମା'ଙ୍କ ଦେଖାଶୁଣା କରେ ଏବଂ ମୃତ୍ୟୁ ପରେ ଶ୍ରାଦ୍ଧ ଦେଇ ପୁତ୍ ନାମକ ନରକରୁ ଉଦ୍ଧାର କରିଥାଏ । ତେଣୁ ଅନେକ ନୁହେଁ ଗୋଟିଏ ମାତ୍ର ପୁତ୍ର ମୋତେ ଦେଇଯାଆନ୍ତୁ । ଏହାହିଁ ମୋର ପ୍ରାର୍ଥନା ।

ପୁତ୍ର କଥା ଶୁଣିବା ମାତ୍ରେ ମୁନିବର କର୍ଦ୍ଦମଙ୍କ ମନରେ ଭଗବାନଙ୍କ କଥା ସ୍ମରଣ ହେଲା, ସେ ହସି ହସି କହିଲେ—ଏପର୍ଯ୍ୟନ୍ତ କଣ ତୁମର ପେଟ ପୂରିଲା ନାହିଁ ? ଲଜ୍ଜିତା ହୋଇ ଦେବହୂତି କହିଲେ—ମହାରାଜ ! ତୃଷ୍ଣା କେବେ କଣ ଶାନ୍ତହୁଏ ?

ଆଜି ପର୍ଯ୍ୟନ୍ତ ଧନ ଓ ସନ୍ତାନରେ କାହାର ତୃପ୍ତି ହୋଇଛି କି ? କିନ୍ତୁ ଲୋଭ-ବଶତଃ ନୁହେଁ, ମୁକ୍ତିକାମନାରେ କେବଳ ମୁଁ ପୁଅଟିଏ ଇଚ୍ଛା କରୁଛି; କିନ୍ତୁ ଭଗବାନ୍‌ଙ୍କର କି ବିଚିତ୍ର ମାୟା ? ଆପଣଙ୍କ ପରି ସମସ୍ତ ଐଶ୍ୱର୍ଯ୍ୟଶାଳୀ ଓ ସିଦ୍ଧିର ସ୍ୱାମୀଙ୍କୁ ପତି ରୂପେ ପାଇ ମଧ୍ୟ ମୁଁ ବିଷୟଭୋଗରେ ବୁଡ଼ି ଗଲି, କେବେହେଲେ ଆପଣଙ୍କଠାରେ ମୁକ୍ତି ପ୍ରସଙ୍ଗ ଉତ୍‌ଥାନ କରିନାହିଁ; ତଥାପି ମୋର ସତ୍ସଙ୍ଗ ହୋଇଛି । ମାନବ ଯେ ପରି ଭୁଲରେ ବିଷପାନକରି ମରିଯାଏ ଓ ଅମୃତ ପାନକରି ଅମର ହୁଏ, ସେହିପରି ଆପଣଙ୍କ ଅମୋଘ ପ୍ରସଙ୍ଗ କେବେହେଲେ ବ୍ୟର୍ଥହେବା ସମ୍ଭବ ନୁହେଁ । ଏଇ ଦେହରେ ଯଥାଶକ୍ତି ମହାପୁରୁଷଙ୍କ ସେବା, ଭଗବତ୍ ପ୍ରୀତି ସମ୍ପାଦନ କାର୍ଯ୍ୟ କରିବା ଓ ସଂସାର ପ୍ରତି ବୈରାଗ୍ୟ ଭାବ ଉତ୍ପନ୍ନ କରିବାଦ୍ୱାରା ଏ ଜୀବନ ସାର୍ଥକ ହୁଏ, ମାୟା ଜାଲରେ ଛନ୍ଦି ହୋଇ ମୁଁ ଏପରି କିଛି କରିପାରି ନାହିଁ, ମୋର ସେହି ଭ୍ରାନ୍ତି ଦୂର ହେଉ । ବିବେକ ଓ ବୈରାଗ୍ୟ ଯୁକ୍ତ ହୋଇ ଭକ୍ତିସହକାରେ ସେହି ଅନ୍ତର୍ଯ୍ୟାମୀ ପ୍ରଭୁଙ୍କ ଆରାଧନାରେ ମୁଁ ତ ଲୀନ ହେବି, ଏହାହିଁ ମୋର କାମନା ।

ପତ୍ନୀଙ୍କଠାରୁ ବିବେକବୈରାଗ୍ୟ ପୂର୍ଣ୍ଣ ବାକ୍ୟ ଶୁଣି ମୁନି କର୍ଦ୍ଦମ ସନ୍ତୋଷ ଲଭିଲେ । ଦେବହୂତିଙ୍କୁ ସାନ୍ତ୍ୱନା ଦେଇ ମୁନି କହିଲେ—ହେ ମନୁ ନନ୍ଦିନି ! ଆନନ୍ଦିତେ ! ଅନଘେ ! ସ୍ୱାୟଂଭୁବ ମନୁଙ୍କ ପୁତ୍ରୀ ସୁଲଭ ବାକ୍ୟ ତୁମେ କହିଛ ଆଦୌ ବ୍ୟସ୍ତ ହୁଅନାହିଁ, ତୁମର ଦୁର୍ଗତି ହେବ ନାହିଁ । ମୋର ସତ୍ସଙ୍ଗରୁ କେବେ ଦୁର୍ଗତି ହେବ ନାହିଁ, ମୁଁ ତୁମକୁ ପୁତ୍ରଟିଏ ଦେବି, ଏମିତି ସାଧାରଣ ପୁତ୍ରନୁହେଁ, ସ୍ୱୟଂ ନାରାୟଣ ତୁମ ଭକ୍ତିରେ ସନ୍ତୁଷ୍ଟ ହୋଇ ତୁମର ଗର୍ଭରୁ ଅବତୀର୍ଣ୍ଣ ହେବେ, ତୁମେ ଅବତାର ଜନନୀ ଓ ଜଗନ୍ମାତାରୂପେ ବିଖ୍ୟାତ ହେବ, ସୂର୍ଯ୍ୟଚନ୍ଦ୍ର ଆଦିଯାଏ ହେଉଥିବା ପର୍ଯ୍ୟନ୍ତ ତୁମର କୀର୍ତ୍ତି ଲୋକେ ଗାନ କରିବେ ।

ମୋଭଳି ମୂଢ଼ ଅବଳା ସାକ୍ଷାତ୍ ବିଶ୍ୱମ୍ଭରଙ୍କୁ ଉଦରରେ କିପରି ଧାରଣ କରିବି ? ସେଭଳି ସୌଭାଗ୍ୟ କଣ ଅଛି—ଦେବହୂତୀଙ୍କ ଏପରି ସଂଶୟ ବାଣୀ ଶୁଣି ମୁନି ପ୍ରସନ୍ନ ଚିତ୍ତରେ ଆଶ୍ୱାସନା ଦେଇ କହିଲେ—ଦେବି ! ମୋତେ ବିଶ୍ୱାସକର ! ତୁମ ସାମର୍ଥ୍ୟରେ ତୁମେ ତାଙ୍କୁ ଧାରଣ କରି ପାରିବ ନାହିଁ, ସେ ଯେତେବେଳେ ଦୟା କରି ତୁମ ଗର୍ଭରେ ପାଦ ଦେବେ, ସେତେବେଳେ ତୁମକୁ ଧାରଣ କରିବାର ଶକ୍ତି ମଧ୍ୟ ଦେବେ । ପ୍ରଭୁ ମୋ ଔରସରେ ତୁମର ଗର୍ଭରୁ ଆବିର୍ଭୂତ ହେବେ ବୋଲି ମୋତେ ବରଦାନ କରିଥିଲେ ।

ଦେବହୂତି ଆନନ୍ଦରେ କହିଲେ—ପ୍ରଭୋ ! ମୋତେ ମୋର କର୍ତ୍ତବ୍ୟ ଉପଦେଶ ଦିଅନ୍ତୁ । ଭଗବାନ କର୍ଦ୍ଦମ ବୁଝାଇଲେ—ଦେବି ! ପତିସେବାରହିତା ବ୍ରତହୀନା

ଓ ଶ୍ରୀହରି ଆରାଧନାବିମୁଖୀ ନାରୀଠାରେ ଭଗବାନ ପ୍ରକଟିତ ହୁଅନ୍ତି ନାହିଁ । ତୁମର ଜନ୍ମ ଜନ୍ମାନ୍ତରର ପୁଣ୍ୟ ପ୍ରଭାବରୁ ଏଭଳି ଦୁର୍ଲଭ ସୌଭାଗ୍ୟ ଲାଭ ହେବ, ସଂଯମ ଆଚରଣ କର, ଦୀନ ଦୁଃଖୀଙ୍କୁ ଅନ୍ନଦାନ କର, ସମସ୍ତଙ୍କ କାମନା ପୂର୍ଣ୍ଣକର ଓ ତପସ୍ୟା କର ।

ଦେବହୁତି କହିଲେ—ମହାରାଜ ! ମୋର ସଂସାର ବନ୍ଧନ କିପରି ତୁଟିବ ? ମୁନି ଉତ୍ତର ଦେଇ କହିଲେ—ସ୍ୱୟଂ ନାରାୟଣ ଆସୁଥିବାବେଳେ ତୁମର ଆଉ ସଂସାର କଣ ? ସୂର୍ଯ୍ୟ ଉଦୟ ହେଲେ ଅନ୍ଧକାର ଦୂର ହୁଏ, ଘର ବତି ଲେ ତାହା ପ୍ରକାଶିତ ହୁଅନ୍ତି, ଗଙ୍ଗାସ୍ନାନରେ ପାପଦୂର ହୁଏ । ସେହିପରି ଶ୍ରୀହରି ପ୍ରକଟ ହୋଇ ତୁମର ସମସ୍ତ ସଂଶୟ ଦୂର କରିବେ । ଏ ସଂସାରରେ ମାତା, ପିତା, ପୁତ୍ରକୁ ଉପଦେଶ ଦିଅନ୍ତି, କିନ୍ତୁ ତୁମର ପୁତ୍ର ତୁମକୁ ଉପଦେଶ ଦେବ । ସେହି ଉପଦେଶରେ ତୁମର କେବଳ ନୁହେଁ ଅସଂଖ୍ୟ ପ୍ରାଣୀଙ୍କର ମୁକ୍ତିପଥ ସୁଗମହେବ ।

ମୈତ୍ରେୟ ମୁନି ବିଦୁରଙ୍କୁ କହୁଛନ୍ତି—ହେ ବିଦୁର ! ନିଜ ସ୍ୱାମୀଙ୍କ କଥା ଶୁଣି ଦେବହୂତି ବିଶେଷ ପ୍ରୀତ ହେଲେ । ପତିଙ୍କ ଉପଦେଶ ଅନୁସାରେ ସେ ଯତ୍ନର ସହିତ ବିଭିନ୍ନ ବ୍ରତ ନିୟମ ପାଳନ କରିବାକୁ ଲାଗିଲେ ।

## ଛପ୍ପୟ

ଗହେ୍ୟା କମଣ୍ଡଳୁ ହାଥ ଚଲେ ତପ ହିତ ମୁନି ବନକୁଁ ।
କଛୀ ଗୃହଥୀ ନିରଖି ତପସ୍ୱିନୀ କେ ଦୁଃଖ ମନକୁଁ ॥
ଅଞ୍ଜଳି ବାଁଧେ ତରପି ବିନୟ ଯୁତ ବୋଲୀ ବାନୀ ।
କରି ପ୍ରତିଜ୍ଞା ପୂର୍ଣ୍ଣ ମହାମୁନି ହେଁ ଅବ ଜାନୀ ।
କିନ୍ତୁ ପ୍ରଭୋ ! ପୁତ୍ରୀନକୁଁ ଯୋଗ୍ୟ ବରନି ତେଂବ୍ୟାହି କେଂ ।
କିନ୍ତୁ ଅବଲମ୍ବନ ଛାଁଡି ପୁନି, କରେହୁଁ ତପସ୍ୟା ଜାଇକେ ॥

# ଭଗବାନ୍ କପିଳଙ୍କ ଜନ୍ମ

ଦେବହୂତ୍ୟପି ସନ୍ଦେଶଂ ଗୌରବେଣ ପ୍ରଜାପତେଃ ।
ସମ୍ୟକ୍ ଶ୍ରଦ୍ଧାୟ ପୁରୁଷଂ କୂଟସ୍ଥମଭଜଦ୍ ଗୁରୁମ୍ ॥
ତସ୍ୟାଂ ବହୁତିଥେ କାଳେ ଭଗବାନ୍ ମଧୁସୂଦନଃ ।
କାର୍ଦମଂ ବୀର୍ଯ୍ୟମାପନ୍ନୋ ଜଜ୍ଞେଽଗ୍ନିରିବ ଦାରୁଣି ॥

(ଭାଗବତ—୩—୨୪—୫,୬

## ଛପ୍ପୟ

ଆଛି ବର କୀ ୟାଦ କମଣ୍ଡଳୁ ଧରି ପୁନି ଦୀନ୍ହୋଂ ।
ମୁନି ଦୟାର୍ଦ୍ର ହେଗୟେ ଦୂରି ଦୟିତା ଦୁଃଖ କୀନ୍ହୋଂ ॥
ବୋଲେ ଭାମିନି ! ଦୁଃଖ ଶୋକ ଚିନ୍ତା ତଜି ଡାରେ ॥
ଗର୍ଭ ମାଁହିଁ ତବ ପ୍ରକଟ ହୋହିଁ ହରି ଶୁଭ ବ୍ରତଧାରେ ॥
ହର୍ଷିତ ହ୍ୱୈ ତପ ବ୍ରତ କରହିଁ,
ହରି ପ୍ରସନ୍ନ ଅତିଶୟ ଭୟେ ।
ଉପଜେ ଅରଣିତେଂ ଅନଳ,
ତେୟାଂ ପ୍ରଭୁ ପରଗଟ ହ୍ୱୈ ଗୟେ ॥

ରଜ ଓ ବୀର୍ଯ୍ୟର ସମନ୍ୱୟରେ ପାର୍ଥିବ ଦେହର ସୃଷ୍ଟି । ସଂସ୍କାରଦ୍ୱାରା ଅନ୍ତଃକରଣ ତିଆରି ହୁଏ । ଗର୍ଭାଧାନକାଳରେ ମାତା ଓ ପିତାଙ୍କ ସଂସ୍କାର ଅନୁସାରେ ବୀଜ ରୂପରେ ଅବସ୍ଥିତ ସନ୍ତାନର ସଂସ୍କାର ସୃଷ୍ଟି ହୁଏ । ସେହି ସଂସ୍କାର ଜାତକରଣ, ନାମକରଣ ଆଦି ସଂସ୍କାରଦ୍ୱାରା ଦୃଢ଼ ଓ ପରିପୁଷ୍ଟ ହୁଏ । ସେଥିପାଇଁ ବର୍ଣ୍ଣାଶ୍ରମ ଧର୍ମରେ ସଂସ୍କାର ଓ ରଜ-ବୀର୍ଯ୍ୟର ଶୁଦ୍ଧି ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଇଥାଏ । ବିବାହ ନିମିତ୍ତ ଉପଯୁକ୍ତ କୁଳ ଓ କନ୍ୟାର ବିଚାର କରାଯାଏ ।

ଶୁଦ୍ଧ ସଂସ୍କାରଦ୍ୱାରା ବୈଦିକ ମନ୍ତ୍ର ପାଠ ପୂର୍ବକ ତଥା, କାଳାଦି ବିଚାରକରି ଗର୍ଭାଧାନ ନିମିତ୍ତ ଉପଦେଶ ଦିଆଯାଇଛି । ଭାବୀ ସନ୍ତାନର ମଙ୍ଗଳ କାମନା ହିଁ ଏସବୁ ଉପଦେଶର ମୂଳଲକ୍ଷ୍ୟ । ଅବୈଧ ଓ ଅପବିତ୍ର ସ୍ଥିତିରେ ଜନ୍ମିତ ସନ୍ତାନ ପ୍ରାୟଶଃ ପାପାସକ୍ତ ହୁଅନ୍ତି । ସେମାନଙ୍କର ଧର୍ମକାର୍ଯ୍ୟରେ ପ୍ରବୃତ୍ତି ଜାତ ହୁଏନାହିଁ । ସେମାନେ ବିଷୟ ସୁଖକୁ ସର୍ବସ୍ୱ ଓ ଜୀବନର ଏକମାତ୍ର ଲକ୍ଷ୍ୟ ମନେକରି ଯେନ କେନ ଉପାୟରେ ତାହା ଲାଭ କରିବାପାଇଁ ଯତ୍ନଶୀଳ ହୁଅନ୍ତି । ସେଥିପାଇଁ କଳି-ଯୁଗରେ ବେଦ, ଧର୍ମଶାସ୍ତ୍ର ଓ ପରମାର୍ଥ ପଥ ପ୍ରାୟ ଲୁପ୍ତ ହେବାକୁ ଯାଉଛି । କାରଣ ସମସ୍ତଙ୍କର ପ୍ରବୃତ୍ତି ଅଧର୍ମରେ ପରିଚାଳିତ ହେଉଥିବାରୁ ରଜ-ବୀର୍ଯ୍ୟର ଶୁଦ୍ଧିରକ୍ଷା ବିଷୟରେ କେହି ଚିନ୍ତା କରୁନାହାନ୍ତି । ଅଗମ୍ୟାଗମନ, ସଂସ୍କାରର ଅପବିତ୍ରତା ଓ ବିଷୟ ବାସନାର ପ୍ରାବଲ୍ୟ ହେତୁ ସମାଜରେ ସ୍ୱେଚ୍ଛାଚାରର କ୍ରମଶଃ ବଢ଼ିଚାଲିଛି ।

ଭଗବାନ୍ ଯେଉଁ ଦମ୍ପତିଙ୍କୁ ନିମିତ୍ତ କରି ଅବତୀର୍ଣ୍ଣ ହେବାକୁ ଇଚ୍ଛାକରନ୍ତି, ସେ ସାଧାରଣ ଦମ୍ପତି ନୁହନ୍ତି । ଜନ୍ମଜନ୍ମାନ୍ତରର ଅସୀମ ପୁଣ୍ୟ, ଶୁଭକର୍ମ ଓ ବିବିଧ ଧର୍ମାଚରଣଦ୍ୱାରା କମ୍ପତି ବିଶେଷର ଏଭଳି ସୌଭାଗ୍ୟ ଉଦୟ ହୁଏ । ଭଗବାନ୍ କର୍ମର ଅଧୀନ ନୁହଁନ୍ତି କି କର୍ମଭୋଗ ପାଇଁ ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତିନାହିଁ । କୌଣସି ପୁଣ୍ୟ କର୍ମଦ୍ୱାରା ଭଗବତ୍ ପ୍ରାପ୍ତି ହୁଏନାହିଁ । ଭଗବତ୍ ପ୍ରାପ୍ତି ଭଗବାନଙ୍କ ଦୟା ଉପରେ ଆଧାରିତ । କାହା ପ୍ରତି ସେ ଦୟାପ୍ରକାଶ କରିବେ, କାହାକୁ ସାକ୍ଷାତ୍ ଦେବେ, କେଉଁଠି ଅବତୀର୍ଣ୍ଣ ହେବେ, ସେସବୁ ତାଙ୍କର ବ୍ୟତୀତ ଅନ୍ୟ କେହି ଜାଣେ ନାହିଁ । ତଥାପି ତପଃପୂତ, ଧର୍ମନିରତ, ପୁଣ୍ୟାତ୍ମା, ସଂସ୍କାରସମ୍ପନ୍ନ, ସଦାଚାରଯୁକ୍ତ ଦମ୍ପତିଙ୍କଠାରେ ଭଗବାନ୍ ଆବିର୍ଭୂତ ହୁଅନ୍ତି । ପରମେଶ୍ୱରଙ୍କ କୃପାପାତ୍ର ଭାବେ ଯେଉଁ ପତି ପତ୍ନୀଙ୍କୁ ଭଗବାନ୍ ନିମିତ୍ତରୂପେ ଗ୍ରହଣ କରନ୍ତି, ଆରମ୍ଭରୁ ସେହି ଦମ୍ପତିଙ୍କର ଧର୍ମରେ ପ୍ରବୃତ୍ତି ଜାତ ହୁଏ ।

ମୈତ୍ରେୟ ମୁନି କହୁଛନ୍ତି—ହେ ବିଦୁର ! ନିଜ ପତିଙ୍କଠାରୁ ସାକ୍ଷାତ୍ ଶ୍ରୀହରି ଅବତୀର୍ଣ୍ଣ ହେବା କଥା ଶୁଣି ଦେବହୂତି ବିଶେଷ ପ୍ରକାର ସଂଯମ ଓ ନିୟମରେ ଦୈନନ୍ଦିନକାର୍ଯ୍ୟ ନିର୍ବାହ କରିବାକୁ ଲାଗିଲେ । ଜନ୍ମକର୍ମବିନିର୍ମୁକ୍ତ ନିରଞ୍ଜନ, ନିର୍ବିକାର, ଜଗଦ୍‌ଗୁରୁ, ପରାତ୍ପର ପୁରୁଷୋତ୍ତମ ଦେଖାଦେବେ, ଏଇ ଗର୍ଭରେ ପୁତ୍ରରୂପେ ଅବତୀର୍ଣ୍ଣ ହେବେ ବୋଲି ଭାବିବା ମାତ୍ରେ ଦେବହୂତିଙ୍କ ଦେହ ରୋମାଞ୍ଚିତ ହୋଇଉଠୁଥିଲା । ସେ ଶୟନେ, ସ୍ୱପନେ, ଜାଗରଣେ, ଅହରହ ଅଚିନ୍ତ୍ୟଶକ୍ତିଶାଳୀ ପରମେଶ୍ୱରଙ୍କୁ ଧ୍ୟାନ କରିବାକୁ ଲାଗିଲେ । ଏହି ଭାବରେ ବହୁକାଳ ଅତୀତ ହେଲା ।

ଭଗବାନ୍‌ଙ୍କ ଅବତୀର୍ଣ୍ଣ ହେବାର ସମୟ ଆସିଗଲା । ବିନ୍ଦୁ ରୂପରେ ସେ ପ୍ରଜାପତି କର୍ଦ୍ଦମଙ୍କ ବୀର୍ଯ୍ୟରେ ପ୍ରବେଶ କଲେ । ଅରଣି ସଂଘର୍ଷଜନିତ ଉତ୍ପନ୍ନ ଅଗ୍ନି ପରି ସେ ଦେବହୂତିଙ୍କ ଗର୍ଭରୁ କପିଳ ରୂପରେ ଅବତୀର୍ଣ୍ଣ ହେଲେ । ଜନ୍ମକାଳରେ ସର୍ବତ୍ର ଆନନ୍ଦର ଢେଉ ଖେଳିଗଲା । ଚରାଚର ଜୀବ ଓ ମୁମୁକ୍ଷୁ ଜ୍ଞାନୀଗଣ ପରମ ଆନନ୍ଦ ଲାଭକଲେ । କପିଳ ଥିଲେ 'ଜ୍ଞାନାବତାର' । ଅବଲୁପ୍ତ ସାଂଖ୍ୟଜ୍ଞାନର ପ୍ରଚାର ନିମିତ୍ତ ସେ କପିଳ ରୂପ ଧାରଣ କରିଥିଲେ । କପିଳଙ୍କ ଜନ୍ମ ସମୟରେ ଦେବଗଣ ପୁଷ୍ପବୃଷ୍ଟି କରିଥିଲେ । ଆକାଶରେ ଗନ୍ଧର୍ବମାନେ ଗୀତଗାନରେ ଲାଗିଯାଇଥିଲେ । ଦେବଗଣଙ୍କ ଦୁନ୍ଦୁଭି ବାଦ୍ୟର ତାଳେ ତାଳେ ଅପ୍ସରାଗଣ ନୃତ୍ୟ କରିବାକୁ ଲାଗିଗଲେ । ଚତୁର୍ଦ୍ଦିଗରେ ପ୍ରସନ୍ନତାର ତରଙ୍ଗ ଉଚ୍ଛୁଳି ଉଠିଲା । ଅଗ୍ନି-ହୋତ୍ର ଯଜ୍ଞ ଅଗ୍ନି ସ୍ୱତଃ ପ୍ରଜ୍ଜ୍ୱଳିତ ହେଲା । ଆନନ୍ଦରେ ଜୀବଜଗତ୍ ପରିପୂର୍ଣ୍ଣ ହୋଇଉଠିଲା ।

ପୁତ୍ରଠାରୁ ବଳି ଆନନ୍ଦ ପୌତ୍ର ବା ନାତିର ଜନ୍ମରେ ଅନୁଭୂତ ହୁଏ । କର୍ଦ୍ଦମଙ୍କ ପୁତ୍ରଭାବେ ସ୍ୱୟଂ ନାରାୟଣ ଜନ୍ମ ଗ୍ରହଣ କରିବାର ଜାଣି ବ୍ରହ୍ମା ଆନନ୍ଦିତ ହୋଇ ମୁନିଙ୍କ ଆଶ୍ରମକୁ ଯିବାପାଇଁ ବ୍ୟସ୍ତ ହେଲେ । ବ୍ରହ୍ମାଙ୍କ ଚାରି ମସ୍ତକରେ ଚାରୋଟି ଦିବ୍ୟମୁକୁଟ ଚକ୍ ଚକ୍ ହେଉଥିଲା । କମଣ୍ଡଳୁ, ପୋଥି ଓ ଲେଖନୀ ଧରି ହଂସ ବାହନ ଉପରେ ସେ ବିରାଜମାନ ଥିଲେ । ଆଶ୍ରମକୁ ଆସିବାର ଅବ୍ୟବହିତ ପୂର୍ବରୁ ବ୍ରହ୍ମାଙ୍କ ବ୍ୟଗ୍ରତା ଦେଖି ଅନ୍ୟ ନଅଜଣ ମାନସ ପୁତ୍ର ଉତ୍କଣ୍ଠିତ ହୋଇ ପଚାରିଲେ—ପ୍ରଭୋ ! ଆପଣ ଏତେ ବ୍ୟାକୁଳ ହୋଇ କୁଆଡ଼େ ବାହାରିଛନ୍ତି ? ବିସ୍ମିତ ହୋଇ ବ୍ରହ୍ମା ସେମାନଙ୍କୁ କହିଲେ—ଆରେ ! ତୁମ୍ଭେମାନେ କଣ କିଛି ଜାଣି ନାହଁ । ମୋର ପୁଅ ପ୍ରଜାପତି କର୍ଦ୍ଦମଙ୍କ ଔରସରୁ ସ୍ୱୟଂ ନାରାୟଣ ଅବତୀର୍ଣ୍ଣ ହୋଇଛନ୍ତି । ସେ ସମସ୍ତଙ୍କର ମନୋବାଞ୍ଛା ପୂରଣ କରିବେ । ନିଷ୍କପଟ ହୃଦୟରେ ଯେ ଯେଉଁ ଭାବନା ନେଇ ତାଙ୍କ ପାଖକୁ ଯିବ ତା'ର ଭାବନା ତତ୍‌କ୍ଷଣାତ୍ ପୂର୍ଣ୍ଣତା ଲାଭ କରିବ ।

ପୁତ୍ରମାନଙ୍କର ଭଗବତ୍ ସାକ୍ଷାତ୍କାର ନିମିତ୍ତ ଆକାଂକ୍ଷା ଥିବାର ଜାଣି ପିତାମହ ବ୍ରହ୍ମା ସେମାନଙ୍କୁ ସାଙ୍ଗରେ ନେଇ କର୍ଦ୍ଦମଙ୍କ ଆଶ୍ରମ ଅଭିମୁଖେ ଯାତ୍ରା କଲେ । ଭଗବତୀ ସରସ୍ୱତୀ ପରିବେଷ୍ଟିତ ବିନ୍ଦୁସର ତୀରବର୍ତ୍ତୀ ଆଶ୍ରମରେ ମହାମୁନି କର୍ଦ୍ଦମ ଭଗବାନ୍ କପିଳଙ୍କ ଜନ୍ମୋତ୍ସବ ପାଇଁ ପ୍ରସ୍ତୁତ ହେଉଥିଲେ । ଏହି ସମୟରେ ମହର୍ଷିମାନଙ୍କ ସହିତ ବ୍ରହ୍ମାଙ୍କୁ ଆସୁଥିବାର ଦେଖି ମୁନି ସମ୍ଭ୍ରମତାର ସହି ଉଠି ଠିଆହେଲେ । ସେମାନଙ୍କ ପାଦତଳେ ଯଥାଯୋଗ୍ୟ ପ୍ରଣତି ଜଣାଇ ସ୍ୱାଗତ

ସତ୍କାର କଲେ । ଏହାପରେ ବ୍ରହ୍ମା ହସି ହସି କହିଲେ—ବତ୍ସ କର୍ଦ୍ଦମ ! ମୁଁ ତୁମ ଉପରେ ବିଶେଷ ପ୍ରସନ୍ନ ହୋଇଛି । ତୁମେ ହିଁ ମୋର ପ୍ରକୃତରେ ଯଥାର୍ଥ କାର୍ଯ୍ୟ କରିଛ । ଏ ପ୍ରକାର ବାହ୍ୟପୂଜନ ଅପେକ୍ଷା ମୁଁ ଆନ୍ତରିକ ପୂଜାକୁ ସର୍ବଶ୍ରେଷ୍ଠ ମନେ କରେଁ ।

ଅଞ୍ଜଳିବଦ୍ଧ ହୋଇ ମହାମୁନି କର୍ଦ୍ଦମ କହିଲେ—ମହାରାଜ ! ଆପଣଙ୍କର ସମୁଚିତ ସେବା ମୁଁ କରିପାରି ନାହିଁ । ଆପଣ ତ ମୋତେ ଗୃହ ଜଞ୍ଜାଳରେ ଏପରି ଭାବରେ ବୁଡ଼ାଇଦେଇଛନ୍ତି ଯେ ମୁଁ ସେବା ଶୁଶ୍ରୁଷା ସବୁ କିଛି ଭୁଲିଯାଇଛି । ଛୁଆ ପିଲା, ଲୁଣତେଲ ଚିନ୍ତାରେ ମୋର ସମସ୍ତ ସମୟ କଟିଯାଉଛି । ବ୍ରହ୍ମା ହସି ହସି କହିଲେ—ସେ ଯାହାହେଉ, ସୃଷ୍ଟି ରଚନାରେ ତୁମେ ମୋତେ ଆଶାତୀତ ସହଯୋଗ ପ୍ରଦାନ କରିଛ । ଏହାହିଁ ତୁମର ସର୍ବୋତ୍ତମ ସେବା । ଏହି ସମୟରେ କର୍ଦ୍ଦମଙ୍କ ନଅଟି କନ୍ୟା ଆସି ପିତାମହଙ୍କୁ ପ୍ରଣାମ କଲେ । ବ୍ରହ୍ମା ଆନନ୍ଦରେ ସେମାନଙ୍କ ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ ଦେଲେ ।

କର୍ଦ୍ଦମ କହିଲେ—କଣ କରିବି, ଏମାନେ ସମସ୍ତେ ବର୍ତ୍ତମାନ ବିବାହ ଯୋଗ୍ୟ ହୋଇଛନ୍ତି । କିପରି ବିବାହ ଦେବି ତାହା ହିଁ ମୋର ପ୍ରଧାନ ଚିନ୍ତାର କାରଣ । ସେମାନଙ୍କ ରୂପ ଓ ଗୁଣ ଅନୁରୂପ ବର ମିଳିଗଲେ ମୁଁ ନିଶ୍ଚିନ୍ତ ହେବି । ଏମାନଙ୍କୁ ବିବାହ ଦେଇ ବିଦା କରିଦେଲେ ଗାର୍ହସ୍ଥ୍ୟ ଜୀବନର ମୋର ସମସ୍ତ କାର୍ଯ୍ୟ ଶେଷ ହେବ ।

ବ୍ରହ୍ମା ହସି ହସି କହିଲେ—ତୁମେ ଦୀର୍ଘକାଳ ଧରି ଭଗବାନଙ୍କୁ ଆରାଧନା କଲ, ତାଙ୍କୁ ଦର୍ଶନ କଲ ଏବଂ ତାଙ୍କଠାରୁ ଦୁର୍ଲଭ ବର ମଧ୍ୟ ପାଇଲ । ତଥାପି ତୁମେ ଚିନ୍ତା କରୁଛ କାହିଁକି ? ଯେ ବିଶ୍ୱମ୍ଭର, ସାମାନ୍ୟ ପିମ୍ପୁଡ଼ିଠାରୁ ଆରମ୍ଭ କରି ମୋ ପର୍ଯ୍ୟନ୍ତ ଯେ ସମସ୍ତ କାର୍ଯ୍ୟ ଚିନ୍ତା କରୁଛନ୍ତି, ସମୟୋଚିତ ଯୋଗକ୍ଷେମର ପରିଚାଳନା ଯେ କରନ୍ତି, ସେ କଣ ତୁମ କାମକୁ ଭୁଲିଯାଇଛନ୍ତି ? କେବେ ନୁହେଁ । ଭଗବାନ ଭକ୍ତର ସମସ୍ତ କାର୍ଯ୍ୟ ନିଜେ କରନ୍ତି । ତୁମର କନ୍ୟା କେତୋଟି ?

କର୍ଦ୍ଦମଙ୍କଠାରୁ ନବଗ୍ରହ ଭଳି ନଅଟି କନ୍ୟା ଥିବାର ଶୁଣି ଏବଂ ସେହି କନ୍ୟାମାନଙ୍କ ପ୍ରତି ସ୍ନେହାକୃଷ୍ଟ ହୋଇଥିବା ନବ ମୁନିଙ୍କ ମନୋଭାବ ଜାଣି ବ୍ରହ୍ମା କହିଲେ—ଦେଖ, ଏମାନେ ନଅଜଣ ଋଷି । ତୁମ କନ୍ୟାମାନଙ୍କ ପାଇଁ ଉପଯୁକ୍ତ । ତୁମେ ଏମାନଙ୍କ ସହିତ କନ୍ୟାମାନଙ୍କୁ ବିବାହ ଦେଇଦିଅ ।

କର୍ଦ୍ଦମ ମୁନି କହିଲେ—ମହାରାଜ ! ମୋର ବଡ଼ ସୌଭାଗ୍ୟ । ଘରେ ବସି ମଧ୍ୟ ମୋ ଝିଅମାନଙ୍କ ପାଇଁ ପାତ୍ର ମିଳିଗଲେ । ସେ ପୁଣି ଜଣେ ଦୁଇଜଣ ନୁହେଁ ନଅ କନ୍ୟା ପାଇଁ ନଅ ଜଣ । ବର୍ତ୍ତମାନ ଆପଣ ଦୟାକରି ଆଦେଶ ଦିଅନ୍ତୁ, କାହାକୁ କେଉଁ କନ୍ୟା ପ୍ରଦାନ କରିବି ?

ବ୍ରହ୍ମା ହଠାତ୍ କହିଉଠିଲେ—ବାବୁ ! ତୁମେ ସେମାନଙ୍କ ସହିତ ମିଳାମିଶା, ଆଳାପ ଆଲୋଚନା ପ୍ରଥମେ କର । ତୁମକୁ ଯେଉଁ କନ୍ୟା ପାଇଁ ଯେ ଯୋଗ୍ୟ ମନେ ହେବ, ତାଙ୍କୁ ସେହି କନ୍ୟା ପାଇଁ ବରଣ କରିବ । ଆଚ୍ଛା, ଠିକ୍ ଅଛି, ଏସବୁ କାମ ପରେ ହେବ । ବର୍ତ୍ତମାନ ଚାଲ, ପରମାତ୍ମା ରୂପେ ପ୍ରକଟ ହୋଇଥିବା ତୁମ ପୁଅକୁ ଆମକୁ ଦେଖାଇବ । ମୁଁ ଅନେକ କାମ ଛାଡ଼ି ଆସିଛି । ମୁଁ ଶୀଘ୍ର ଫେରିଯିବି । ଚଉଦ ବ୍ରହ୍ମାଣ୍ଡର କାମ ତନଖି ଦେଖିବାକୁ ପଡ଼ୁଛି । ଆଉ ସମୟ ଦେବାକୁ ଅବସର ମିଳୁଛି କେଉଁଠୁ ?

ମହାମୁନି କର୍ଦ୍ଦମ ବ୍ରହ୍ମାଙ୍କ କଥା ଶୁଣି ଆଦର ସହକାରେ ତାଙ୍କୁ ନେଇ ପତ୍ନୀଙ୍କ ଭବନକୁ ଗଲେ । ଦୂରରୁ ପିତାମହଙ୍କୁ ଆସୁଥିବାର ଦେଖି ଦେବହୂତି ଓଢ଼ଣା ଟାଣିଲେ ଓ ଲାଜ ଲାଜ ହୋଇ ପ୍ରଣାମ କରି ଗୋଟିଏ କଡ଼କୁ ଠିଆହେଲେ । ବ୍ରହ୍ମା କହିଲେ—ଅରେ ଝିଅ ! ଏବେ ଆଉ ଓଢ଼ଣାର ପ୍ରୟୋଜନ କଣ ? ଏବେ ତ ତୁ ଆମର ପୂଜନୀୟା ଜନନୀ ହେଲୁ । ମୋର ତଥା ସମସ୍ତ ଜଗତର ପ୍ରଭୁ ଓ ପିତା ତୋର ପୁତ୍ରରୂପରେ ଜନ୍ମ ଗ୍ରହଣ କରିଛନ୍ତି । ତୁ ବର୍ତ୍ତମାନ ଜଗତର ମାତା ହୋଇଛୁ । ସେ ସାଧାରଣ ପୁତ୍ର ନୁହନ୍ତି, ସେ ସାକ୍ଷାତ୍ ବୈକୁଣ୍ଠାଧିପତି ଶ୍ରୀହରି । ତୁ ଦେଖ, ତାଙ୍କ କେଶ କପରି ନୀଳବର୍ଣ୍ଣ ହୋଇଛି । ବିଶାଳ ନେତ୍ରଦ୍ୱୟ ପ୍ରସ୍ଫୁଟିତ କମଳ ତୁଲ୍ୟ ଶୋଭା ପାଉଛି । ନବୀନ କୋମଳ ଅଶ୍ୱତ୍ଥ ପତ୍ର ସଦୃଶ ଶ୍ରେଷ୍ଠ ଶ୍ରେଷ୍ଠ ପାଦରେ ବଜ୍ର, ଅଙ୍କୁଶ, ଧ୍ୱଜାଦି ଚିହ୍ନ ଦେଖାଯାଉଛି । ଏସବୁ ଭଗବତ୍ତାର ସଙ୍କେତ ଦେଉଛି । ଏହି ପୁତ୍ର ଶାସ୍ତ୍ର ଓ ଅନୁଭବଜ୍ଞାନଦ୍ୱାରା ସମସ୍ତଙ୍କ ସଂଶୟ ଦୂର କରିବେ ।

ଦେବହୂତି ବଡ଼ ଝିଅକୁ ଚାହିଁ କହିଲେ—ମହାରାଜ ! ପୁଅ ତ ସମସ୍ତଙ୍କ ସଂଶୟ ଛେଦନ କରିବ । ଆଉ ମୁଁ କଣ ଯେପରି ଅଜ୍ଞ ଥିଲି ସେହିପରି ରହିଯିବି ? ମୋ ପ୍ରତି କିଛି ଦୟା ରହିବା ଆବଶ୍ୟକ ନୁହେଁ କି ?

ବ୍ରହ୍ମା ହସି ହସି ଉତ୍ତର ଦେଲେ—ପ୍ରିୟ ! ସର୍ବପ୍ରଥମେ ସେ ତୁମକୁ ଉପଦେଶ ଦେଇ ଏ ସଂସାର ସାଗରରୁ ମୁକ୍ତ କରିବେ । ସେ ହେବେ ସାଙ୍ଖ୍ୟାଚାର୍ଯ୍ୟଙ୍କ ସ୍ୱାମୀ ଓ ସିଦ୍ଧଗଣଙ୍କ ଅଧୀଶ୍ୱର । ତୋର ଯଶକୀର୍ତ୍ତିକୁ ସେ ଅମର କରିବେ । ତୁମ ଦୁହିଁଙ୍କ ତପସ୍ୟା ଓ ବୈରାଗ୍ୟ ଫଳରେ ସେ ଆବିର୍ଭୂତ ହୋଇଛନ୍ତି, ତେଣୁ ସେ ତ୍ୟାଗୀ ଓ ବୈରାଗୀଭାବେ ସର୍ବଦା ବିଚରଣ କରିବେ । ଦେବହୂତିଙ୍କ ଅନୁରୋଧ ରକ୍ଷାକରି ବ୍ରହ୍ମା ପୁତ୍ରର ନାମ ଦେଲେ କପିଳ । ଏହାପରେ କର୍ଦ୍ଦମ ଓ ଦେବହୂତିଙ୍କୁ ଆଶ୍ୱାସନାଦେଇ ବ୍ରହ୍ମା ହଂସବାହନରେ ବ୍ରହ୍ମଲୋକକୁ ପ୍ରତ୍ୟାବର୍ତ୍ତିନ କଲେ ।

## ଛପ୍ପୟ

ପ୍ରକଟେ ପ୍ରଭୁ ପରମେଶ ! ପିତାମହହିଁ ମୁନି ତହିଁ ଆୟେ ।
ଅତ୍ରି ଅଙ୍ଗିରା ପୁଲହ ଆଦି ନବ ଋଷି ସଙ୍ଗ ଆୟେ ॥
କର୍ଦ୍ଦମ ନିରଖେ ପିତା ଯଥା ବିଧି ସ୍ୱାଗତ କୀନ୍ହୋ ।
ଋଷି ସଙ୍ଗ ପୂଜା କରି ସବନିକୁଁ ଆସନ ଦୀନ୍ହୋ ॥
କରହୁ ବ୍ୟାହ ତନୟାନି କୋ,
ବିଧି ବୋଲେ ଇନ ଋଷିନତେଂ
କପିଳ ରୂପ ଧରି ପ୍ରଭୁବନ ହରି ଆୟେ ନିଜ ବରନି ତେଁ ॥

# କର୍ଦ୍ଦମଙ୍କ କପିଳ ସ୍ତୁତି

ପରଂ ପ୍ରଧାନଂ ପୁରୁଷଂ ମହାନ୍ତଂ
କାଳଂ କବିଂ ତ୍ରିବୃତଂ ଲୋକପାଳମ୍ ।
ଆତ୍ମାନୁଭୂତ୍ୟା ନୁଗତ ପ୍ରପଞ୍ଚଂ
ସ୍ୱଚ୍ଛନ୍ଦଶକ୍ତିଂ କପିଳଂ ପ୍ରପଦ୍ୟେ ॥
(ଭାଗ-୩-୨୪-୩୩)

## ଛପ୍‌ପୟ

ବିଧି ଆଜ୍ଞା ଶିରଧାରି ଋଷିନକୁଁ କନ୍ୟା ଦୀହ୍ନୀ ।
ବୈଦିକ ବିଧି ତେଂ ବ୍ୟାହ କରେ ବିନତୀ ବହୁକୀହ୍ନୀ ॥
ସବ୍‌ଋଷି ପତ୍ନୀ ଲଈ ଚଲେ ହିୟ ହରିକୁଁ ସୁମିରତ ।
କର୍ଦ୍ଦମ ଚିନ୍ତା ମିଟୀ ଭୟୋ ମନ ଅତିଶୟ ହରଷିତ ॥
ଗୃହୀ ବନେ ସବ୍ ସୁଖ ଲୟୋ ହରି ପ୍ରକଟେ କନ୍ୟା ଦଈ ।
କରୁଣାକର କୀ କୃପା ତେ ସବ୍ ଇଚ୍ଛା ପୂରନ ଭଈଁ ॥

ଆସକ୍ତି ଥିବା ପର୍ଯ୍ୟନ୍ତ ବିଷୟ ଭୋଗ ସୁଖକର ମନେ ହୁଏ । ଆସକ୍ତି ତୁଟିଗଲେ ବିଷୟ ବିଷବତ୍ ପ୍ରତୀତ ହୁଏ । ଆସକ୍ତିକୁ ଆଧାର କରି ଏହି ସଂସାର ଚାଲିଛି । ବୈରାଗ୍ୟ ଜାତ ହେବାମାତ୍ରେ ଏ ସଂସାର କ୍ଷଣିକ, ଅଳୀକ, ନଶ୍ୱର ଓ ମିଥ୍ୟା ବୋଲି ଜଣାପଡ଼େ । ଆତ୍ମା ବିଷୟରେ ଆମେ ଏହି ପାର୍ଥିବ ଶରୀର ସହିତ ନାନାପ୍ରକାର ସମ୍ବନ୍ଧ ସ୍ଥାପନ କରୁଁ । ସେ ମୋ ପିତା, ପୁତ୍ର, ପତି ବା ସମ୍ବନ୍ଧୀୟ ଇତ୍ୟାଦି । ଜୀବାତ୍ମା ଶରୀର ତ୍ୟାଗ କରିବା ପରେ ସମସ୍ତ ସମ୍ବନ୍ଧ ତୁଟିଯାଏ । ମୃତ ଶରୀରକୁ ଘରୁ ବାହାରକୁ ନେବାପାଇଁ ସମସ୍ତେ ବ୍ୟଗ୍ର ହୁଅନ୍ତି । ଯେଉଁ ଅଙ୍ଗକୁ ଦେଖି ଏକଦା ଆନନ୍ଦ ଆସୁଥିଲା, ମୃତ୍ୟୁପରେ ସେସବୁ ଭୀତିଜନକ ପ୍ରତୀତ ହୁଅନ୍ତି । ଏହି ଅନିତ୍ୟତା ବିଷୟରେ ଯାହାର ଜ୍ଞାନୋଦୟ ହୁଏ, ସେ ସଂସାର ବନ୍ଧନକୁ ଜଞ୍ଜାଳ ମନେ କରେ । କର୍ତ୍ତବ୍ୟ-ବଶତଃ କିଛିଦିନ ରହିବା ଦରକାର ହେଲେ ସେ ମୁକ୍ତିର ଦିନ ଗଣୁଥାଏ ।

ମୈତ୍ରେୟ ମୁନି କହୁଛନ୍ତି— ହେ ବିଦୁର ! ମହାମୁନି କର୍ଦ୍ଦମଙ୍କ ଘରେ ଭଗବାନ୍ କପିଳଙ୍କ ଆବିର୍ଭାବ ହେଲା । ବ୍ରହ୍ମା ପତି ପତ୍ନୀ ଦୁହିଁଙ୍କୁ ବୃହାଶୀର୍ବାଦ କରି ଯିବା ପୂର୍ବରୁ ସେହି ଋଷିମାନଙ୍କ ସହିତ କନ୍ୟାମାନଙ୍କୁ ବିବାହ ଦେବାପାଇଁ ଆଦେଶ ଦେଇ ଗଲେ । ମୁନି କର୍ଦ୍ଦମ ଋଷିମାନଙ୍କ ବୟଃକ୍ରମ ଅନୁସାରେ କଳା, ଅନସୂୟା, ଶ୍ରଦ୍ଧା, ହବିର୍ଭୂ, ଗତି, କ୍ରିୟା, ଖ୍ୟାତି, ଅରୁନ୍ଧତୀ ଓ ଶାନ୍ତିଙ୍କୁ ବିବାହ ଦେଲେ । ପ୍ରଜାପତି ମରୀଚିଙ୍କ ସହିତ କଳାଦେବୀଙ୍କ ବିବାହ ହେଲା । ଅତ୍ରି ମୁନି ଭଗବତୀ ଅନସୂୟାଙ୍କ ପାଣି ଗ୍ରହଣ କଲେ । ଭଗବାନ୍ ଦତ୍ତାତ୍ରେୟ ତାଙ୍କଠାରୁ ଜନ୍ମଗ୍ରହଣ କରିଥିଲେ । ଅଙ୍ଗିରାଙ୍କ ସହିତ ଶ୍ରଦ୍ଧାଦେବୀ, ପୁଲସ୍ତ୍ୟଙ୍କ ସହିତ ହବିର୍ଭୂ ଦେବୀଙ୍କ ବିବାହ ହେଲା । ସେହି ପୁଲସ୍ତ୍ୟଙ୍କ ବଂଶରେ କ୍ରୁରକର୍ମୀ ରାକ୍ଷସଗଣ ଜନ୍ମଗ୍ରହଣ କଲେ । ପୁଲହ ଗତି-ଦେବୀଙ୍କୁ ଓ କ୍ରତୁ କ୍ରିୟାଦେବୀଙ୍କୁ ବିବାହ କଲେ । ସେହିପରି ଭୃଗୁଙ୍କ ସହିତ ଖ୍ୟାତିଙ୍କ ବିବାହ ହେଲା । ତାଙ୍କଠାରୁ ଜନ୍ମହେଲେ ଭଗବାନ ପରଶୁରାମ । ବଶିଷ୍ଠଙ୍କ ସହିତ ଅରୁନ୍ଧତୀ ଓ ଅଥର୍ବା ମୁନିଙ୍କ ସହିତ ଶାନ୍ତିଦେବୀଙ୍କ ବିବାହ ହେଲା । ବଶିଷ୍ଠଙ୍କଠାରୁ ସୂର୍ଯ୍ୟବଂଶର ଉଦ୍‌ଭବ ହୋଇଥିଲା ।

ନିଜ ନିଜର ରୁଚି ଅନୁକୂଳ ପତି ଲାଭକରି କନ୍ୟାଗଣ ସର୍ବଶେଷ ଆନନ୍ଦିତ ହୋଇଥିଲେ । ଋଷିଗଣ ମଧ୍ୟ ସାକ୍ଷାତ ଭଗବଦ୍ ଦର୍ଶନର ଫଳଲାଭ କଲେ । ହଜାର ହଜାର ବର୍ଷ ଧରି ସମାଧିସ୍ଥ ହୋଇ ମୁନିଗଣ ଯାହାର ସାକ୍ଷାତ୍‌ପାଇଁ ଲାଳାୟିତ ହୁଅନ୍ତି, ତାଙ୍କ ସହିତ ସମ୍ବନ୍ଧ ସ୍ଥାପିତ ହେବା ସୌଭାଗ୍ୟର କଥା ନୁହେଁ କି ? ଜୀବ ସର୍ବଦା ଅଯଥା ଚିନ୍ତାରେ ମଗ୍ନରହେ । ଅଶ୍ରଦ୍ଧାବଶତଃ ଇତସ୍ତତଃ ଭ୍ରମଣ କରୁଥାଏ ; କିନ୍ତୁ ଭଗବାନଙ୍କ ଶରଣ ଲାଭ କରିବା ମାତ୍ରେ ଜୀବର ସମସ୍ତ ମନୋରଥ ପୂରଣହୁଏ । ତେଣୁ ଅନ୍ୟଠାରେ ତା'ର ହାତ ପାତିବା ଦରକାର ପଡ଼େନାହିଁ । କଳ୍ପତରୁର ଆଶ୍ରୟ ନେଇ ଲୋକ କେବଳ ମୁକ୍ତିଲାଭ କରେ ; କିନ୍ତୁ କୃଷ୍ଣ କଳ୍ପତରୁର ଛାୟାରେ ମୁକ୍ତି ଓ ଭୁକ୍ତି ଉଭୟ ଲାଭ ହୁଏ ; କିନ୍ତୁ ଭଗବଦ୍‌ଭକ୍ତ ଭଗବାନଙ୍କ ସେବା ନକରି ମୁକ୍ତି କାମନା କରେନାହିଁ । ସେ ହିଁ କେବଳ ଭଗବାନଙ୍କ ପାଖକୁ ଯାଇପାରିବ ଯାହା ଉପରେ ତାଙ୍କର ଦୟା ହେବ । ପ୍ରଭୁ କୃପା ବ୍ୟତୀତ ପ୍ରଭୁଙ୍କ ସାକ୍ଷାତ୍କାର ଆଦୌ ସମ୍ଭବ ନୁହେଁ । ତେଣୁ ସର୍ବଦା ତାଙ୍କରି କୃପାର ପ୍ରତୀକ୍ଷା କରିବା ବାଞ୍ଛନୀୟ ।

ମହାମୁନି କର୍ଦ୍ଦମ କନ୍ୟାମାନଙ୍କର ବିବାହ ପରେ ଗାର୍ହସ୍ଥ୍ୟ ଜୀବନର ସବୁଠାରୁ ବଡ଼ ଚିନ୍ତାରୁ ମୁକ୍ତ ଓ ନିଶ୍ଚିନ୍ତ ହେଲେ । ଗୃହସ୍ଥର ବଡ଼ ଇଚ୍ଛା ଥାଏ ଯେ, ତା'ର ପୁତ୍ରଟିଏ ଜନ୍ମ ହେଉ । ମୃତ୍ୟୁ ପରେ ସେହି ପୁତ୍ର ଶ୍ରାଦ୍ଧ, ତର୍ପଣ ଓ ପିଣ୍ଡଦାନ କରି ନରକଗାମୀ ପିତୃଗଣଙ୍କୁ ଉଦ୍ଧାର କରିବ । ତାହାଦ୍ୱାରା ବଂଶ ପରମ୍ପରା

ସୁରକ୍ଷିତ ହେବ । କର୍ଦ୍ଦମଙ୍କର ପୁତ୍ରରୂପେ ଜନ୍ମ ହୋଇଛୁ । ସେ ସାଧାରଣ ପୁତ୍ର ନୁହେଁ, ସାକ୍ଷାତ୍ ନିର୍ଗୁଣ, ନିରାକାର ଶ୍ରୀହରି ସଗୁଣ ଓ ସାକାର ରୂପ ଧାରଣ କରି ଅବତୀର୍ଣ୍ଣ ହୋଇଛନ୍ତି । ଏହା ଭାବିବା ମାତ୍ରେ ମୁନିଙ୍କ ହୃଦୟ ପୂରି ଉଠୁଥିଲା । ସେ ପ୍ରେମପୂର୍ଣ୍ଣ ଅନ୍ତଃକରଣରେ କପିଳଙ୍କ ଶରଣ କାମନା କଲେ ।

କିଛିକାଳ ପରେ ଭଗବାନ କପିଳ ବଡ଼ ହୋଇଗଲେ । ବାଳସୁଲଭ ଗୁପଳ୍ୟ ଦୂର ହୋଇଗଲା । ବାଲ୍ୟକାଳରୁ ସ୍ୱଭାବତଃ ସେ ଶାନ୍ତ, ଗମ୍ଭୀର ଓ ଚିନ୍ତାଶୀଳ ଥିଲେ ଦୀର୍ଘକାଳଧରି ବନଭୂମିର କୌଣସି ଏକାନ୍ତ ସ୍ଥାନରେ ଚିନ୍ତାମଗ୍ନ ରହୁଥିଲେ । ପ୍ରକୃତି ଓ ପୁରୁଷର ଗୁଢ଼ତମ ରହସ୍ୟ ବିଷୟରେ ସେ ବିଚାର କରୁଥିଲେ । ଦିନେ ନିପଟ ବନମଧ୍ୟରେ ଥିବା ଏକ ବିରାଟ ବଟବୃକ୍ଷର ଶୀତଳ ଛାୟାରେ କପିଳ ଧ୍ୟାନମଗ୍ନ ଥିବାର ମୁନି ଦେଖିଲେ । ମୁଣ୍ଡର ଲମ୍ବ ଲମ୍ବ ଜଟାଜୁଟ ବାଳ ପବନରେ ଆନ୍ଦୋଳିତ ହେଉଥିଲା । ପ୍ରସ୍ଫୁଟିତ କମଳ ତୁଲ୍ୟ ନୟନଦ୍ୱୟ ଖୋଲାଥିଲା । ମୁଖମଣ୍ଡଳରେ ଅପୂର୍ବ ଜ୍ୟୋତି ଆଭା ପ୍ରକାଶ ପାଉଥିଲା । ପଦ୍ମାସନରେ ବସି ଯେ କୌଣସି ଏକ ବିଷୟରେ ସେ ଗଭୀର ଚିନ୍ତାମଗ୍ନ ଥିଲେ । ମହାମୁନି କର୍ଦ୍ଦମ ପୁତ୍ରକୁ ଏପରି ଅବସ୍ଥାରେ ଦେଖି ଖୁବ୍ ଆନନ୍ଦିତ ହେଲେ । କାରଣ ସେ ସେହି ଅବସରର ଅପେକ୍ଷାରେ ଥିଲେ । ମନ ତାଙ୍କର ଆଉ ଗୃହସ୍ଥ ଜଞ୍ଜାଳରେ ଲଗ୍ନ ନଥିଲା । ଗାର୍ହସ୍ଥ୍ୟ ଜୀବନର ଆଉ ଆକର୍ଷଣ ନଥିଲା । ଝିଅମାନେ ବଡ଼ାହୋଇ ଯାଇଥିଲେ । ଦେବହୂତି ସର୍ବଦା ପୂଜାପାଠରେ ବ୍ୟସ୍ତ ରହୁ- ଥିଲେ । ଭଗବାନ କପିଳ ବାଲ୍ୟକାଳରୁ ବିରାଗଭାବାପନ୍ନ ଥିଲେ । ଚାହୁଁଥିଲା ତାଙ୍କର ଅହଙ୍କାର ଶୂନ୍ୟ । ଏ ମୋର ଘର, ମୋ ସ୍ତ୍ରୀ, ମୁଁ ତାର ଭରଣପୋଷଣ କର୍ତ୍ତା ଆଉ ଏ ମୋର ପୁଅ, ମୁଁ ତାର ପିତା , ଏଭଳି ଅହଙ୍କାରର ସୂକ୍ଷ୍ମାତିସୂକ୍ଷ୍ମ ବୀଜକୁ ମଧ୍ୟ ବିନାଶ କରିବା ଉଚିତ । ତେଣୁ କର୍ଦ୍ଦମ କେବଳ ମନରେ ନୁହେଁ, ଶରୀରଠାରୁ ମଧ୍ୟ ଏ ପ୍ରକାର ସମ୍ବନ୍ଧ ଦୂର କରିବାକୁ ଇଚ୍ଛା କରୁଥିଲେ ; କିନ୍ତୁ ଭଗବାନଙ୍କ ଆଜ୍ଞା ବିନା ତାହା କିପରି ସମ୍ଭବ ହେବ ? ପ୍ରଭୁ ଇଚ୍ଛାକଲେ ସବୁ କିଛି ସହଜ ହୋଇପାରେ । ତେଣୁ ସେହି ଆଦେଶପାଇବା ନିମିତ୍ତ ମହାମୁନି କର୍ଦ୍ଦମ ଭଗବାନ କପିଳଙ୍କ ସେବା ନିମନ୍ତେ ଅଗ୍ରସର ହେଲେ । ସେଠାରେ ପହଞ୍ଚି ସେ କପିଳଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ ।

ପିତାଙ୍କୁ ନିଜ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣାମ କରୁଥିବାର ଦେଖି ଲଜ୍ଜାଭାବ ପ୍ରକାଶ କରି ଭଗବାନ କପିଳ ସମ୍ଭ୍ରମରେ ସହସା ଉଠି ଠିଆ ହୋଇପଡ଼ିଲେ, ଆଉ କହିଲେ—ବାପା ! ଆପଣ ଏ କଣ କରୁଛନ୍ତି । ନିଜ ପୁଅକୁ କଣ ଏପରି ଲଜ୍ଜିତ କରନ୍ତି । ମୁଁ ଆପଣଙ୍କ ପୁଅ । ଆପଣ ମୋତେ ଆଶୀର୍ବାଦ ଦେବାର କଥା । ମୋର

ହିଁ ପ୍ରଣାମ ଭଗବାନ୍ ଅଧିକାର ଅଟୁ । ଆପଣ କିପରି ବିପରୀତ ଆଚରଣ କରୁଛନ୍ତି ।

କର୍ଦ୍ଦମ ନିଜର ଦୀନତା ପ୍ରଦର୍ଶନ ପୂର୍ବକ କହିଲେ—ପ୍ରଭୋ ! ଆପଣ ମୋତେ ପ୍ରବଞ୍ଚିତ କରନ୍ତୁ ନାହିଁ । ଆପଣ କାହାର ପୁତ୍ର ? ଏ ସଂସାର ତ ଆପଣଙ୍କ ପୁତ୍ର । ଆପଣ ଦୟାର ସାଗର । ଆପଣ କୌଣସି ସାଧନାର ବଶୀଭୂତ ନୁହନ୍ତି, ସାଧନାର ଦେବଗଣ ବି ବହୁ କଷ୍ଟରେ ପ୍ରସନ୍ନ ହୁଅନ୍ତି । ଆପଣ କେବଳ ଦୟାର ବଶୀଭୂତ ହୁଅନ୍ତି ଏବଂ ନିଜର ଅନୁକମ୍ପାଦ୍ୱାରା ପ୍ରସନ୍ନ ହୁଅନ୍ତି । ତାହା ହୋଇ ନଥିଲେ ଅସଂଖ୍ୟ ଯୋଗୀ ଜନ୍ମ ଜନ୍ମ ଧରି ଆପଣଙ୍କ ଜ୍ୟୋତି ଦର୍ଶନ ନିମିତ୍ତ ସମାଧିମଗ୍ନ ହୁଅନ୍ତେ କାହିଁକି ? ସେମାନଙ୍କ ମଧ୍ୟରୁ କେବଳ ଭାଗ୍ୟବାନ୍ ଯୋଗୀ ଆପଣଙ୍କ ଦର୍ଶନ ଲାଭକରନ୍ତି । ଏସବୁ ଜାଣି, ମୋଭଳି ବିଷୟଲୋଲୁପ ଅପରାଧୀ ଗୃହସ୍ଥ ପ୍ରତି ଧ୍ୟାନ ନଦେଇ ମୋ'ର ପୁତ୍ରଭାବେ ଆପଣ ଅବତୀର୍ଣ୍ଣ ହେବା ବିଶେଷ ଦୁଃଖଦାୟକ । ଆପଣଙ୍କ କୃପାବିନା ଏହା କେବେ ସମ୍ଭବ ହୋଇନଥାନ୍ତା ।

କପିଳ କହିଲେ—ବାପା ! ଭଗବାନ ହେଉଛନ୍ତି ଅଜ । ଏହି ଚର୍ମଚକ୍ଷୁରେ ତାଙ୍କୁ ଦେଖିବା ପାଇଁ କେହି ସମର୍ଥ ନୁହେଁ । ସେଥିପାଇଁ ତାଙ୍କୁ ଅରୂପ କହନ୍ତି । କିନ୍ତୁ ମୋର ରୂପତ ଆପଣ ଦେଖୁଛନ୍ତି । ମା'ଙ୍କ ଗର୍ଭରୁ ଆପଣଙ୍କ ଘରେ ହିଁ ମୋର ଜନ୍ମ । ପୁଣି ମୋତେ ଆପଣ ଭଗବାନ ବୋଲି କିପରି କହୁଛନ୍ତି ? ଏହା ଶୁଣି କର୍ଦ୍ଦମ ବିନୀତଭାବେ କହିଥିଲେ—ପ୍ରଭୋ ! ଆପଣ ଅରୂପ ହେଲେ ବି ଭକ୍ତର ଇଚ୍ଛା ଅନୁସାରେ ରୂପଧାରଣ କରନ୍ତି । ଆମ୍ଭମାନଙ୍କ ଭଳି କର୍ମଫଳ ଭୋଗ ନିମିତ୍ତ ଆପଣ ଜନ୍ମ ହୁଅନ୍ତି ନାହିଁ । ଆପଣ ଜନ୍ମଗ୍ରହଣ କରନ୍ତି ଭକ୍ତର ଅଭିଳାଷ ପୂରଣ ନିମିତ୍ତ । ଭକ୍ତର ଆନନ୍ଦ ପାଇଁ ଆପଣ ପୁତ୍ର, ମିତ୍ର, ସଖା, ସେବକ, ଦୂତ, କିଂକର ସବୁ କିଛି ହୋଇପାରନ୍ତି । ଆପଣ ସର୍ବଦା ଭକ୍ତର ମାନ ବୃଦ୍ଧି କରନ୍ତି । ଭକ୍ତର ସମସ୍ତ ମନୋରଥ ଯେ ଆପଣ ପୂର୍ଣ୍ଣ କରନ୍ତି, ତାହାର ପ୍ରମାଣ ହେଉଛି ମୁଁ ନିଜେ । ମୁଁ ଭୁଲ୍‌ରେ ଅଜ୍ଞାନତାବଶତଃ ଆପଣଙ୍କ ଭଳି ପୁତ୍ର ପ୍ରାର୍ଥନା କରିଥିଲି । ଆପଣ ନିଜେ ନିଜର ହିଁ ଏକମାତ୍ର ସାଦୃଶ୍ୟ । ତଥାପି ମୋର ଅଭିଳାଷ ପୂରଣ ନିମିତ୍ତ ଆପଣ ମୋର ପୁତ୍ରରୂପେ ଆବିର୍ଭୂତ ହେଲେ ।

ଭଗବାନଙ୍କଠାରେ ବୈରାଗ୍ୟ, ଯଶ, ଜ୍ଞାନ, ବୀର୍ଯ୍ୟ ଓ ସମ୍ପତ୍ତି ଆଦି ଷଡ଼ଗୁଣ ସର୍ବଦା ବିଦ୍ୟମାନ ଥାଏ । ସେ ସବୁ ମୋଠାରେ କାହିଁ ବୋଲି କପିଳଙ୍କ ପ୍ରଶ୍ନ ଶୁଣି କର୍ଦ୍ଦମ ବିନୀତ ଭାବେ କହିଲେ —ପ୍ରଭୋ ! ଆପଣଙ୍କ ଏ ଅବତାର ତତ୍ତ୍ୱଜିଜ୍ଞାସୁ ପଣ୍ଡିତମାନଙ୍କୁ ଉପଦେଶ ଦେବା ନିମିତ୍ତ ସମ୍ଭବ ହୋଇଛି । ଆପଣଙ୍କ ପାଦପଦ୍ମରେ ବଡ଼ ବଡ଼ ଜ୍ଞାନୀ, ସାଂଖ୍ୟାଚାର୍ଯ୍ୟ, ଯୋଗୀଗଣ ସର୍ବଦା ଲକ୍ଷ୍ୟ ରଖନ୍ତି । ଆପଣ ଷଡ଼ୈଶ୍ୱର୍ଯ୍ୟ

ମଧ୍ୟରେ ବିରାଜମାନ ଅଛନ୍ତି । ଆପଣ ପ୍ରକୃତି ଓ ପୁରୁଷର ନିୟାମକ ପୁରୁଷୋତ୍ତମ ଅଟନ୍ତି । ମହତତ୍ତ୍ୱ, କାଳ, ବ୍ରହ୍ମା, ସତ୍ତ୍ୱ, ରଜଃ ଓ ତମୋଗୁଣ, ଅହଙ୍କାର, ଦେବତା, ଲୋକପାଳ, ଜଡ଼, ଚେତନ, ଯାହା କିଛି ଅଛି, ସେ ସବୁର ଅସ୍ତିତ୍ୱ ଆପଣଙ୍କ ଶକ୍ତି-ମଧ୍ୟରେ ବିଦ୍ୟମାନ । ଆପଣ ସ୍ୱଚ୍ଛନ୍ଦ, ଶକ୍ତ, ସର୍ବଜ୍ଞ ଓ ଅନନ୍ତ । ମୋତେ ଭ୍ରମରେ ପକାନ୍ତୁ ନାହିଁ । ମୁଁ ଆପଣଙ୍କ ଚରଣରେ ପୁନଃ ପୁନଃ ପ୍ରଣାମ କରୁଛି ।

ଏହା ଶୁଣି ଭଗବାନ ହସି ହସି କହିଲେ— ମହାମୁନି ! ଆପଣତ ପ୍ରକୃତ ଜ୍ଞାନୀ । ମାୟା ଆପଣଙ୍କୁ ସ୍ପର୍ଶ କରିପାରିବ ନାହିଁ । କର୍ଦ୍ଦମ ମୁନି ଲଜ୍ଜିତ ହୋଇ କହିଲେ—ପ୍ରଭୋ ! ଯାହା ଉପରେ ଆପଣଙ୍କର ଦୟା ଅଛି, ଯାହାର ଉଦ୍ଧାର ଭାର ଆପଣ ସ୍ୱୟଂ ସ୍ୱୀକାର କରିଛନ୍ତି ଓ ଯେ ଆପଣଙ୍କୁ ଏକମାତ୍ର ଆଶ୍ରୟରୂପେ ଅବଲମ୍ବନ କରିଛି, ମାୟା ତାକୁ ସ୍ପର୍ଶ କରିବ କିପରି ? ଅରେ ଆପଣ ଯାହାକୁ ଆଦର କରିଛନ୍ତି, କୌଣସି କାରଣବଶତଃ ଯଦି ସେ ବିଷୟ ଭୋଗରେ ଆସକ୍ତ ହୋଇଥାଏ, ତେବେ ଯଥାଶୀଘ୍ର ତାକୁ ମୁକ୍ତ ଦିଅନ୍ତି । ସଂସାର ମଗ୍ନ ମୋତେ ଉଦ୍ଧାର କରିବା ପାଇଁ ଆପଣ ପୁତ୍ର ରୂପରେ ଅବତୀର୍ଣ୍ଣ ହୋଇଛନ୍ତି । ଭଗବାନ କପିଳ କର୍ଦ୍ଦମଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ତତ୍ତ୍ୱଜ୍ଞାନ ଉପଦେଶ ଦେଇଥିଲେ ।

## ଛପ୍ପୟ

ପୁତ୍ର ରୂପ ହରି ଲଖେ ଏକ ଦିନ ବୈଠେ ବନ ମହେଁ ।<br>
ଆଜ୍ଞା ଲେ ଘର ତ୍ୟାଗ ଚଲୁଁ ସୋଚ ମୁନି ମନମହେଁ ॥<br>
କରିକେ ଦଣ୍ଡ ପ୍ରଣାମ ବିନୟ ଶ୍ରଦ୍ଧା ଯୁତ ବାନୀ ।<br>
ବୋଲେ ହେ ଅଖିଲେଶ । ତୁମ୍ହରୀ ମହିମା ଜାନୀ ॥<br>
ମାୟା ମୋହିତ ମୂଢ଼ ହୌଁ, ତୁମ ମହେଶ,<br>
ଅଜ, ଅଖିଳପତି ।<br>
ସାଧନ ସୁଲଭ ନାଦରଶ, ପ୍ରକଟେ କୀହ୍ନୀଂ କୃପା ଅତି ॥

# କର୍ଦ୍ଦମଙ୍କ ସନ୍ନ୍ୟାସ ଗ୍ରହଣ

ଆସ୍ମାଭିପୃଚ୍ଛେଽଦ୍ୟ ପତିଂ ପ୍ରଜାନାମ୍
ତ୍ୱୟାବତୀର୍ଣ୍ଣର୍ଣ୍ଣ ଉତାପ୍ତକାମଃ ।
ପରିବ୍ରଜପୃଦବୀମ ସ୍ଥିତୋଽହଂ
ଚରିଷ୍ୟେ ତ୍ୱାଂ ହୃଦି ଯୁଞ୍ଜନ୍ ବିଶୋକଃ ॥

(ଭାଗବତ—୩ ୨୪-୩୪)

## ଛପ୍ପୟ

ଭୟୋ କୃତାରଥ ଦେବ ପିତୃ ଋଷି ଋଣତେଁ ଛୁଟ୍ୟୋ ।
ଜଗ କେ ଝୋଟେ ଭୋଗ ମୋହ କୋ ନାତୋ ଟୁଟ୍ୟୋ ॥
ଏକ କୃପା ଅବ କରୋ ମୂର୍ତ୍ତି ହିୟ ମହଁ ତବ ଧାରୂଁ ।
ବିଚରୂଁ ହ୍ୱୈ ନିର୍ଦ୍ୱନ୍ଦ ତୁମ୍ହେ ସର୍ବଦା ନିହାରୂଁ ॥
ଇଚ୍ଛାଦ୍ୱେଷ ବିହୀନ ବନି ଦେହ ଗେହ ମମତ ତଜହୁଁ ।
ସୁଖ ଦୁଃଖ ମହେଁ ସମ ଭାବ କରି ହ୍ୱୈ
ଅନନ୍ୟ ତୁମକୂଁ ଭଜହୁଁ ॥

ତ୍ୟାଗ ହିଁ ଅମୃତତ୍ୱ ପ୍ରାପ୍ତିର ଏକମାତ୍ର ଉପାୟ । ତ୍ୟାଗ ବିନା ସୁଖ ନାହିଁ କି ଶାଶ୍ୱତ ଶାନ୍ତି ନାହିଁ । ତ୍ୟାଗ ବିନା ସଂସାରରୁ ମୁକ୍ତି ପାଇବା ଅସମ୍ଭବ । ଯେଉଁମାନେ ପ୍ରବୃତ୍ତିର ମାର୍ଗ ଅବଲମ୍ବନ କରନ୍ତି, ସେମାନେ ଭୋଗ ବିଳାସରେ ବୁଡ଼ି ରହିବା ନିମିତ୍ତ ସେପରି କରି ନ ଥାନ୍ତି । ବିଷୟରେ ସର୍ବଦା ଲିପ୍ତ ରହିବାଟା କର୍ମଯୋଗ ବା ବର୍ଣ୍ଣାଶ୍ରମଧର୍ମର ଅଭିପ୍ରାୟ ନୁହେଁ । ତାହା ମଧ୍ୟ ତ୍ୟାଗ ନିମିତ୍ତ ଉଦ୍ଦିଷ୍ଟ । ଯୁଦ୍ଧ ସମୟରେ ଶତ୍ରୁଙ୍କୁ ଆକୃଷ୍ଟ କରିବା ନିମିତ୍ତ ଯେପରି କିଛିଦୂର ପଛକୁ ଫେରିଆସିବାକୁ

ପଟଢ଼ ସେହିପରି ତ୍ୟାଗ ନିମିତ୍ତ ପ୍ରବୃତ୍ତିର ମାର୍ଗ ଗ୍ରହଣ କରାଯାଇଥାଏ । ଆକ୍ରମଣକୁ ଅଧିକ ଭୟଙ୍କର କରିବା ଓ ବଳସଂଗ୍ରହ କରିବା ନିମିତ୍ତ ସିଂହ ଯେପରି କିଛିଦୂର ପଛକୁ ହଟିଆସେ, ସେହିପରି ଅନେକ ଜନ୍ମର ସଂସ୍କାରବଶତଃ ଜୀବର ବିଷୟ ପ୍ରତି ଆକର୍ଷଣ ସୃଷ୍ଟି ହୁଏ । ପ୍ରାରବ୍ଧକର୍ମ ବଳାତ୍‌ପୂର୍ବକ ଜୀବକୁ ସେ ଆଡ଼କୁ ଟାଣିନିଏ । ସେଥିପାଇଁ ପଣ୍ଡିତମାନେ କର୍ମତ୍ୟାଗକୁ ବର୍ଣ୍ଣାଶ୍ରମଧର୍ମର ଶ୍ରେଷ୍ଠ ଅବଦାନ ବୋଲି ମତ ବ୍ୟକ୍ତ କରନ୍ତି । ବ୍ରହ୍ମଚର୍ଯ୍ୟାଶ୍ରମରେ ତ୍ୟାଗର ଶିକ୍ଷାମିଳେ । ଗୃହସ୍ଥାଶ୍ରମରେ ପ୍ରାରବ୍ଧ କର୍ମ ଭୋଗକରିବା ମଧ୍ୟରେ ଧର୍ମପୂର୍ବକ କାମ ଓ ବିଷୟର ସେବା କରାଯାଏ । ବାନପ୍ରସ୍ଥାଶ୍ରମରେ ଜ୍ଞାନକୃତ ଓ ଅଜ୍ଞାନକୃତ ପାପର ପ୍ରାୟଶ୍ଚିତ୍ତ ଦ୍ୱାରା ପୂର୍ଣ୍ଣତ୍ୟାଗ ପାଇଁ ପ୍ରସ୍ତୁତ ଆରମ୍ଭହୁଏ । ପରିଶେଷରେ ସନ୍ନ୍ୟାସାଶ୍ରମରେ ସର୍ବତ୍ୟାଗୀ ହୋଇ ପରିବ୍ରାଜକ ହେବା ବାଞ୍ଛନୀୟ । ଏହି ହିଁ ବର୍ଣ୍ଣାଶ୍ରମଧର୍ମର ମୂଳ ରହସ୍ୟ । ତାର ଗ୍ରହଣ ତ୍ୟାଗପାଇଁ ଉଦ୍ଦିଷ୍ଟ । ତ୍ୟାଗ ହିଁ ଜୀବନର ଚରମ ଲକ୍ଷ୍ୟ ।

ମହାମୁନି ମୈତ୍ରେୟ କହୁଛନ୍ତି—ହେ ବିଦୁର ! ଋଷିପ୍ରବର କର୍ଦ୍ଦମ ଭଗବାନ୍‌ଙ୍କ ଉପଦେଶ ଅନୁସାରେ ତ୍ୟାଗକୁ ଲକ୍ଷ୍ୟ ରଖି ଗୃହସ୍ଥାଶ୍ରମ ବରଣ କରିଥିଲେ । ତେଣୁ ଶ୍ୱଶୁର ସ୍ୱାୟମ୍ଭୁବ ମନୁଙ୍କୁ ବିବାହ ପୂର୍ବରୁ ସେ କହିଥିଲେ—'ଦେଖନ୍ତୁ', ମୁଁ ଗୃହସ୍ଥାଶ୍ରମକୁ ସ୍ୱୀକାର କରୁଛି ; କିନ୍ତୁ ଆପଣ କେବେହେଲେ ଭାବିବେ ନାହିଁ ଯେ, ମୁଁ ମୃତ୍ୟୁପର୍ଯ୍ୟନ୍ତ ଏହି ଗୃହସ୍ଥାଶ୍ରମରେ ପଡ଼ି ରହିବି ? ମୃତ୍ୟୁ ପୂର୍ବରୁ ମୋ ଗୃହପାଖରେ ପରିବାର ଘେରି ରହିଥିବେ, ଏହା କେବେ ହେବ ନାହିଁ । ଆପଣଙ୍କ କନ୍ୟାର ସନ୍ତାନସନ୍ତତି ହେବାପରେ ମୁଁ ବିଦାୟ ନେଇଯିବି । ମୁଁ ସର୍ବତ୍ୟାଗୀ ହୋଇ ସେହି ଅନନ୍ତ ଭଗବାନ୍‌ଙ୍କ ଆଶ୍ରୟ ନେବି ।' ଏହା ଶୁଣି ମନୁ ମହାରାଜ କହିଥିଲେ—ପ୍ରଭୋ ! ତ୍ୟାଗ ହିଁ ଆମଭଳି ଲୋକଙ୍କର ପରମ ଭୂଷଣ । ଆପଣଙ୍କ ପ୍ରସ୍ତାବରେ ମୋର କୌଣସି ଆପତ୍ତି ନାହିଁ । ଦେବୀ ଦେବହୂତି ମଧ୍ୟ ସବୁ କିଛି ଶୁଣିଥିଲେ । ତେଣୁ ଆଗରେ ବା ପଛରେ ଆଉ କାହାରି କିଛି କହିବାର ବା ଶୁଣିବାର ନ ଥିଲା ।

ବର୍ତ୍ତମାନ ଝିଅମାନେ ବିବାହ କରି ଚାଲିଗଲେ । ପୁତ୍ରରୂପେ ସ୍ୱୟଂ ଭଗବାନ ଘରେ ଅବତୀର୍ଣ୍ଣ ହୋଇଗଲେ । ତେଣୁ ମନେ ମନେ ସନ୍ନ୍ୟାସ ଗ୍ରହଣରେ ସିଦ୍ଧାନ୍ତ ନେଇ ମହାମୁନି କର୍ଦ୍ଦମ ଭଗବାନ୍ କପିଳଙ୍କୁ ପ୍ରାର୍ଥନା କରିଥିଲେ । ପିତାଙ୍କ ବିନୀତ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଭଗବାନ୍ କପିଳ କହିଲେ—ମୁନି ! ଅନୁକମ୍ପା ବିନା କେହି ମୋତେ ସାକ୍ଷାତ୍ କରିପାରନ୍ତି ନାହିଁ, ଏହା ସତ୍ୟ । ତଥାପି ଲୌକିକ ଓ

ବୈଦିକ କର୍ମରେ ମୋର ବଚନ ପ୍ରମାଣ ରୂପେ ଗୃହୀତ ହୁଏ । ମୋ'ର ବାଣୀକୁ ବେଦଶାସ୍ତ୍ର କୁହାଯାଏ । ତୁମ ଘରେ ଅବତୀର୍ଣ୍ଣ ହେବା ନିମିତ୍ତ ମୁଁ ପୂର୍ବରୁ ତୁମକୁ ପ୍ରତିଶ୍ରୁତି ଦେଇଥିଲି । ସେଥିପାଇଁ ମୁଁ ଅବତାର ଗ୍ରହଣ କରିଛି । ମୋର ଏହି ଅବତାରଦ୍ୱାରା ଏକ ବିଶେଷ କାର୍ଯ୍ୟ ସିଦ୍ଧହେବ । ସେହି କାର୍ଯ୍ୟଟି ହେଉଛି ସାଂଖ୍ୟ ମତବାଦର ପ୍ରତିଷ୍ଠା । ପ୍ରାଚୀନ ସାଂଖ୍ୟଶାସ୍ତ୍ର ବର୍ତ୍ତମାନ ଲୁପ୍ତପ୍ରାୟ । ମୁକ୍ତି ଅଭିଳାଷୀ ଲୋକମାନଙ୍କ ପକ୍ଷରେ ସାଂଖ୍ୟଶାସ୍ତ୍ର ହିଁ ସର୍ବୋତ୍କୃଷ୍ଟ ସାଧନ । ମୂଳପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ଭୂତ-ଇନ୍ଦ୍ରିୟ ଆଦି ତତ୍ତ୍ୱର ପରିସଂଖ୍ୟାନ ଓ ଏସବୁଠାରୁ ପୃଥକ୍ ପୁରୁଷୋତ୍ତମ, ଏହି ଜ୍ଞାନର ନାମ ହେଉଛି ସାଂଖ୍ୟ । ସେହି ଶାସ୍ତ୍ରର ପ୍ରଚାର ଓ ପ୍ରସାର ନିମିତ୍ତ ମୁଁ ଅବତାର ଗ୍ରହଣ କରିଛି । ତୁମେ ଦୁହେଁ ବୈରାଗ୍ୟ ଭାବରେ ମୋତେ ଆବାହନ କଲ । ତେଣୁ ମୁଁ ଗୃହସ୍ଥଧର୍ମ ଅବଲମ୍ବନ କରିବି ନାହିଁ । ତ୍ୟାଗୀ ଓ ବିରାଗୀ ଜୀବନ ନେଇ ମୁଁ ସଂସାର ଆଗରେ ସନ୍ନ୍ୟାସଧର୍ମର ମହାନ୍ ଆଦର୍ଶ ପ୍ରତିଷ୍ଠା କରିବି ।

କର୍ଦ୍ଦମ କହିଲେ—ପ୍ରଭୋ ! ଏହା ମୁଁ ଜାଣେ । ଆପଣ ଗାର୍ହସ୍ଥ୍ୟଧର୍ମ ଗ୍ରହଣ କରନ୍ତୁ, ସେ ଇଚ୍ଛା ମୋର ନାହିଁ । ମୋର ସୌଭାଗ୍ୟ ଯେ, ଆପଣ ଆମଭଳି ଅଧମଙ୍କ ଗୃହରେ ଅବତୀର୍ଣ୍ଣ ହୋଇଛନ୍ତି ; କିନ୍ତୁ ଏବେ ମୁଁ ଜାଣିବାକୁ ଚାହୁଁଛି ଯେ ଆପଣ କେତେକାଳ ଏଠାରେ ବିରାଜମାନ କରିବେ ? ଆଉ ମୋତେ କଣ ଆଦେଶ ଦେବେ ?

ଭଗବାନ୍ କପିଳ କହିଲେ—ମୁନିବର ! ଏଠାରେ ମୋ ରହିବାର ବିଶେଷ କିଛି ପ୍ରୟୋଜନ ନାହିଁ । ମୋ ମା'ଙ୍କୁ କେବଳ କେତୋଟି ଉପଦେଶ ଦେବି । ସେ ମୋର ଏକାନ୍ତ ଅନୁରକ୍ତା ଓ ଅଧିକାରିଣୀ । ତାଙ୍କର ସାଂସାରିକ ବିଷୟରେ ଆସକ୍ତି ନାହିଁ । ବାଲ୍ୟକାଳରୁ ସେ ମୋର ସ୍ମରଣ ଓ ଭଜନ କରିଆସୁଛନ୍ତି । ବାସ୍ତବରେ ତାଙ୍କୁ ହିଁ ଉପଦେଶ ଦେବା ନିମିତ୍ତ ମୁଁ ଏଠାରେ ରହିବି । ତାଙ୍କର ପୂର୍ଣ୍ଣତତ୍ତ୍ୱଜ୍ଞାନ ହେବାପରେ ମୁଁ ଗୃହତ୍ୟାଗ କରିବି । ଆଉ ଆପଣ ମନ ଆନନ୍ଦରେ ଏବେଠୁ ଗୃହ ତ୍ୟାଗ କରନ୍ତୁ । ଆପଣଙ୍କ କାର୍ଯ୍ୟ ପ୍ରତି ମୋର ପୂର୍ଣ୍ଣ ସହାନୁଭୂତି ରହିଛି । ମୁଁ ଆନନ୍ଦ ଚିତ୍ତରେ ଆପଣଙ୍କୁ ଆଦେଶ ଦେଉଛି । ଆପଣ ସମସ୍ତ କର୍ମ ଓ କର୍ମଫଳ ମୋତେ ସମର୍ପଣ କରି ମୋର ଆରାଧନାରେ ଓ ମୋଠାରେ ଅନନ୍ୟଯୋଗୀ ହୁଅନ୍ତୁ । ଆପଣ ଦୁର୍ଜୟ ମୃତ୍ୟୁକୁ ଜୟ କରି, ମାୟାମୁକ୍ତ ହୋଇ ମୋକ୍ଷପଦ ଲାଭ କରିବେ ।

ପୁନଶ୍ଚ ପିତାଙ୍କ ପ୍ରଶ୍ନର ଉତ୍ତର ଦେଇ କପିଳ କହିଲେ—କୌଣସି ସାଧନାର ଆବଶ୍ୟକତା ନାହିଁ । ସୂକ୍ଷ୍ମାତିସୂକ୍ଷ୍ମ ବୁଦ୍ଧିଦ୍ୱାରା ଆତ୍ମାକୁ ନିଜେ ନିଜମଧ୍ୟରେ ନିରୀକ୍ଷଣ କର । ଏକାଗ୍ର ମନ ଓ ସୂକ୍ଷ୍ମ ଚକ୍ଷୁରେ ବିଚାର କର ଯେ, ଅନ୍ତଃକରଣରେ ଯେଉଁ ଆତ୍ମା ପ୍ରକାଶିତ ହେଉଛି, ତାହା ଚରାଚର ବିଶ୍ୱରେ ପରିବ୍ୟାପ୍ତ । ଏହିଭଳି ସର୍ବାତ୍ମ-ଭାବରେ ମୋତେ ଭଜନ କର, ମୋତେ ହିଁ ଚିନ୍ତାକର ଏବଂ ମୋର ନାମ କୀର୍ତ୍ତନ କର । ଏହାଦ୍ୱାରା ଅନ୍ତଃକାଳରେ ତୁମେ ପରମ ପଦ ଲାଭ କରିବ ।

ମୈତ୍ରେୟ କହୁଛନ୍ତି—ହେ ବିଦୁର ! ଭଗବାନ୍ କପିଳଙ୍କ ଆଦେଶ ଲାଭ କରି ମହାମୁନି କର୍ଦ୍ଦମଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ଭଗବାନ୍‌ଙ୍କ ପାଦ-ପଦ୍ମରେ ସାଷ୍ଟାଙ୍ଗ ପ୍ରଣାମ କଲେ । ଭଗବାନ୍ ମୁନିଙ୍କୁ ତଳୁ ଉଠାଇ କୁଣ୍ଢାଇ ପକାଇଲେ । ଦୁହିଙ୍କ ନେତ୍ର ଲୋତକାପ୍ଲୁତ ହୋଇ ଯାଇଥିଲା । ପିତା, ପୁତ୍ର, ଭକ୍ତ ଓ ଭଗବାନ୍ ଜଣେ ଜଣକୁ ନିଜ ନିଜ ଆଡ଼କୁ ଆକର୍ଷଣ କରୁଥିଲେ । ଜ୍ଞାନ ଓ ସ୍ୱାଭାବିକ ପ୍ରେମ ପୃଥକ୍ ପୃଥକ୍ ଅବସ୍ଥା । ପ୍ରେମପୂର୍ଣ୍ଣ ହୃଦୟରେ ମୁନି ନିଜର ପୁତ୍ରରୂପ ପ୍ରଭୁଙ୍କୁ ପ୍ରଦକ୍ଷିଣ କଲେ । ପୁନଃ ପୁନଃ ପ୍ରଣାମ କରାଇ ମୁନି ନିର୍ଜ୍ଜନ କାନନ ଅଭିମୁଖେ ଅଗ୍ରସର ହେଲେ । ସମସ୍ତ କର୍ମର ଫଳ ତ୍ୟାଗକରି ସେ ସନ୍ନ୍ୟାସୀ ହୋଇଗଲେ ।

ବନରେ ପ୍ରଥମେ କର୍ଦ୍ଦମ ମୁନି ବାକ୍ ସଂଯମ ଆଚରଣ କଲେ । କଥା କହିବା ବନ୍ଦ କରି ସେ ମୌନ ଅବସ୍ଥାରେ ରହିଲେ । ଅହିଂସା, ସତ୍ୟ ଆଦି ନିୟମ ପାଳନ କଲେ । ଗୃହସ୍ଥ ଥିବାବେଳେ ଯେଉଁ ଅଗ୍ନିହୋତ୍ର ହୋମ କରୁଥିଲେ, ତାହା ତ୍ୟାଗକଲେ ଓ ନିରଗ୍ନିକ ପାଳିଚାଲିଗଲେ । କୌଣସିଠାରେ ବା ଯେ କୌଣସି ଅବସ୍ଥାରେ ସେ ନିରହଙ୍କାର ବ୍ରତ ପାଳନ କଲେ । ଶୂନ୍ୟଗୃହ, ଦେବାଳୟ, ନଦୀ, ବୃକ୍ଷଛାୟା ଯେଉଁଠି ଇଚ୍ଛା ସେଇଠି ଆଶ୍ରୟ ନେଲେ । କେବଳ ଭଗବତ୍ ଚିନ୍ତା ବ୍ୟତୀତ ସମସ୍ତ ସଙ୍ଗ ତ୍ୟାଗ କରି ସଙ୍କଳ୍ପରହିତ ହୋଇ ସ୍ୱେଚ୍ଛାରେ ବିଚରଣ କଲେ । ଭକ୍ତିବଳରେ ନିଜ ମନକୁ ସମସ୍ତ କାର୍ଯ୍ୟ କାରଣରୁ ନିବୃତ୍ତ କରି ନିର୍ଗୁଣ ନିରାକାରଙ୍କ-ଠାରେ ମନ ଲଗାଇଲେ । ଏହିଭାବରେ ଧ୍ୟାନମଗ୍ନ ହେବା ଫଳରେ ମୁନିଙ୍କ ଚିତ୍ତବୃତ୍ତି

ଗମ୍ଭୀର, ଶାନ୍ତ ଓ ଅନ୍ତର୍ମୁଖୀ ହେଲେ । ଭକ୍ତିର ଆତିଶଯ୍ୟ ହେତୁ ତାଙ୍କର କାମ୍ୟିକ ଜ୍ଞାନ ରହିଲା ନାହିଁ । ତାଙ୍କ ହୃଦୟରୁ ଗ୍ରନ୍ଥି ଖୋଲିଗଲା, ସମସ୍ତ ସଂଶୟ ଦୂର ହୋଇଗଲା । ସେ ସର୍ବତ୍ର ଶ୍ରୀହରିଙ୍କ ଦର୍ଶନ ଲାଭକଲେ ।

ମହାମୁନି କର୍ଦ୍ଦମ ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ ଆଦି ସମସ୍ତ ପ୍ରକାର ଦ୍ୱନ୍ଦ୍ୱମୁକ୍ତ ହୋଇ ପ୍ରକୃତି ଭକ୍ତିଭାବାପନ୍ନ ଭକ୍ତ ହୋଇଗଲେ । ପରିଶେଷରେ ଭଗବାନଙ୍କ କୃପାରୁ ଦୁର୍ଲ୍ଲଭ ମୁକ୍ତି ଲାଭ କରିଥିଲେ ।

## ଛପ୍‌ପୟ

ଜନକ ବଚନ ସୁନି କପିଳ କହେଂ ଜାବୋପିତୁ ବନକୁଁ ।
ଚଞ୍ଚଳ ଚିତ୍ତକୁଁ ରୋକି ଲଗାଓ ମୋ ମେଁ ମନକୁଁ ॥
ପରମ ମଧୁର ଅତି ସରଳ ବଚନ ଶ୍ରୀହରିକେ ସୁନି କେ ।
ପ୍ରଭୁ ବିୟୋଗ କୁଁ ସହିକିର ନୈନ ଭରି ଆୟେ ମୁନିକେ ॥
ଚଲେ ମୋହ ମମତା ତଜି ବନ ବିରକ୍ତ ବନ
ବନ ଫିରହିଁ ।
ଗାଇ ଭାଗବତୀ ଗତି, ସନତ ଚରିତ କଳିମଳ ତରହିଁ ॥

## ଦେବହୂତିଙ୍କ ତତ୍ତ୍ୱଜିଜ୍ଞାସା

ତଂ ତ୍ୱାଂ ଗତାହଂ ଶରଣଂ ଶରଣ୍ୟଂ
ସ୍ୱଭୃତ୍ୟ ସଂସାରତରୋଃ କୁଠାରମ୍ ।
ଜିଜ୍ଞାସୟାହଂ ପ୍ରକୃତେଃ ପୁରୁଷସ୍ୟ
ନମାମି ସଦ୍ଧର୍ମବିଦାଂ ବରିଷ୍ଠମ୍ ।।
(ଭାଗ-୩-୨୫-୧୧)

### ଛପ୍‌ପୟ

ଇତ ମାତା ନେ ଆଇ କରୀ ହରି ତେଁ ଜିଜ୍ଞାସା ।
ପ୍ରଭୋ ଉବାରୋ ମୋହ ଲଗାଇ କବତେଁ ଆଶା ।।
ପ୍ରକୃତି ପୁରୁଷ କୋ ଭେଦ ବତାଓ ସଂଶୟ ନାସୋ ।।
ତମ ଅଜ୍ଞାନ ମିଟାଇ ହୃଦୟ ରବି ଜ୍ଞାନ ପ୍ରକାସୋ ।।
ଭବ ଭୟ ଭଞ୍ଜନ କରହୁ ପ୍ରଭୁ, ଭକ୍ତ ବଚ୍ଛଲ
ଅଶରଣ ଶରଣ ।
ପାର ଜଗତ୍ ଜଲନିଧି କରନ ତରଣି ରୂପ ତବ ଶୁଭଚରଣ ।।

ସୃଷ୍ଟିକର୍ତ୍ତା ବ୍ରହ୍ମା ଚକ୍ଷୁର ଗୋଲକକୁ ବାହାର ଆଡ଼କୁ ରଖିଛନ୍ତି । ତେଣୁ ସ୍ୱଭାବତଃ ଜୀବ ଏହି ସଂସାରର ପଦାର୍ଥକୁ କେବଳ ଦେଖୁଛି । ସେଥିରେ ମଜ୍ଜି ଯାଇ ପରମ ସୁଖ ଅନୁଭବ କରୁ ବୋଲି ଭାବୁଛି । ବିଷୟବାସନା ପୂର୍ଣ୍ଣ ବିଷୟରେ କୌଣସି ବିଦ୍ୟାଳୟ ନାହିଁ କି ଶିକ୍ଷାକେନ୍ଦ୍ର ନାହିଁ । ବହୁଜନ୍ମଧରି ସେହି ବିଷୟ ସୁଖକୁ ଭୋଗ କରି କରି ଜୀବ ସେଥିରେ ଅଭ୍ୟସ୍ତ ହୋଇଗଲାଣି । ତେଣୁ ଜନ୍ମହେବା ମାତ୍ରେ କେହି ଶିଖାଇ ନ ଦେଲେ ମଧ୍ୟ ସେ ସ୍ୱତଃ ମାତୃସ୍ତନରୁ କ୍ଷୀର ଶୋଷଣ କରି ପିଅନ୍ତି । ପୂର୍ବଜନ୍ମର ଅଭ୍ୟାସ ଯଦି ନ ଥାନ୍ତା, ତେବେ ବାଳକ କପରି ଜାଣନ୍ତା ଯେ ମାତୃସ୍ତନରେ କ୍ଷୀର

ଅଛୁ ? କ ଭାବରେ ସେଥିରୁ କ୍ଷୀର ଶୋଷଣ କରାଯାଏ, ତା'ବି ଜାଣିଛୁ କମିତ ? ସଂସାରର ସମସ୍ତ ପଦାର୍ଥ ତା ଆଡ଼କୁ ଆମକୁ ଟାଣି ନେଉଛୁ । ଆମେ ସମସ୍ତେ ସେହି ଚନ ବଚନ ବଷୟକୁ ଦେଖି, ଶୁଣି, ଶୁଂଘି ଓ ସ୍ପର୍ଶ କରି ତାହାର ଆଡ଼କୁ ଆକୃଷ୍ଟ ହୋଇଯାଉ । ଏହି ଆକର୍ଷଣ ପ୍ରତ୍ୟେକ ଜୀବଠାରେ ସମ୍ଭବ । ମନ ଓ ଇନ୍ଦ୍ରିୟ ସହତ ବଷୟ ସଂସର୍ଗ ହେବାମାତ୍ରେ କାମନା ଜାତ ହୁଏ । ଯେ ଯେଉଁଠାରୁ ଜନ୍ମହୁଏ ତାହାର ସେହି ଉତ୍ପତ୍ତିସ୍ଥାନ ପ୍ରତ ସ୍ୱାଭାବକ ଆକର୍ଷଣ ଜାତ ହୁଏ । ସେଥିରେ ନୈସର୍ଗିକ ଅନୁରାଗ ଥାଏ । ବାସ୍ତବରେ ଜୀବ ସଚ୍ଚିଦାନନ୍ଦ ଆନନ୍ଦସ୍ୱରୂପ ପରମାତ୍ମାଙ୍କ-ଠାରୁ ହିଁ ଜନ୍ମ ଗ୍ରହଣ କରିଛୁ । ଜୀବର ଅନୁରାଗ ତାଙ୍କର ପ୍ରତ ରହିବା ବାଞ୍ଛନୀୟ ; କନ୍ତୁ ଜୀବ ମୁଖ୍ୟକାରଣକୁ ଭୁଲି ଗୌଣ କାରଣକୁ ନଜର ଜନକ ବୋଲି ଭାବେ । ଉଦାହରଣ ସ୍ୱରୂପ ଫୁଲରେ ରଙ୍ଗ ନ ଥାଏ, ରଙ୍ଗ ଥାଏ ସୂର୍ଯ୍ୟଙ୍କଠାରେ ଅର୍ଥାତ୍ ପ୍ରକାଶରେ । ପ୍ରକାଶ ନ ଥିଲେ ସବୁ ଫୁଲ ଏକ ରଙ୍ଗୀ ପାଲଟିଯିବେ । ପ୍ରକାଶରେ ଯେଉଁ ନାନାରଙ୍ଗ ଦେଖାଯାଏ,ସେ ସମସ୍ତ ଫୁଲର ନୁହେଁ । ଆମ୍ଭେମାନେ ଅଜ୍ଞାନତା-ବଶତଃ ସେଗୁଡ଼ିକୁ ଫୁଲର ରଙ୍ଗ ବୋଲି କହୁ । ସେହିପରି ଜୀବର ବୀଜ ହେଉଛନ୍ତି ଶ୍ରୀହରି । ଆମେ ତାଙ୍କୁ ଉତ୍ପତ୍ତିର କାରଣ ବୋଲି ନ ଭାବି, ଜନକ, ଜନନୀ, ରଜ, ବୀର୍ଯ୍ୟ ଆଦିକୁ କାରଣ ବୋଲି ବୁଝୁଛୁ । ପୁଣି ସେହି ସେହି ଉପାଦାନରେ ଆସକ୍ତ ହୋଇ ଆନନ୍ଦର ଅନ୍ୱେଷଣ କରୁଛୁ । ଆମେ ଯେଉଁ ଆନନ୍ଦପାଇଁ ସର୍ବଦା ବ୍ୟସ୍ତ ବବ୍ରତ ହେଉଛୁ ସେ ଆନନ୍ଦ କଣ ? ସେହି ଆନନ୍ଦ ହେଉଛୁ ବ୍ରହ୍ମ । ତାକୁ ଭଗବାନ୍ କୁହ, ପରମାତ୍ମା କ ବ୍ରହ୍ମ ଯାହା କୁହ, ଏକା କଥା । ଆମେ ଆମର ଉତ୍ପତ୍ତି ସ୍ଥାନକୁ ଖୋଜବୁଲୁଛୁ ; କନ୍ତୁ ଆମର ସେ ଅନ୍ୱେଷଣ ଏକାନ୍ତ ମିଥ୍ୟା । ଯେଉଁ ଆନନ୍ଦରେ ଆମେ ଚତ୍କାର କରିଉଠୁ , ତାହା ପ୍ରକୃତ ଆନନ୍ଦ ନୁହେଁ, ମାତ୍ର ଆନନ୍ଦର ଆଭାସ । ବାସ୍ତବ ଆନନ୍ଦ ବହୁଦୂରରେ । ଭ୍ରମମୁକ୍ତ ହେଲେ ଆମେ ସେ ଆନନ୍ଦର ନକଟବର୍ତ୍ତୀ ହୋଇପାରିବା । ଉଦାହରଣ ସ୍ୱରୂପ- ପିଲାଟିଏ ମା' ଆଗରେ କାନ୍ଦି କାନ୍ଦି କହୁଛୁ — 'ମୋତେ ଘୋଡ଼ା ଦେ' । ମା ମାଟି ଘୋଡ଼ାଟିଏ ଦେଇ କହୁଛୁ— 'ଏଇ ନେ' । ପିଲାଟି ଘୋଡ଼ାପାଇ ଖୁସି ହେଉଛୁ । ଆଉ ଏକ ବାଳକ କାଠ ଘୋଡ଼ାଟି ଆଣି ଖେଳୁଛୁ । ଉଭୟ ବାଳକ ନଜ ନଜର ଘୋଡ଼ା ଭଲ ବୋଲି ଦାବି କରୁଛନ୍ତି, ତେବେ ବଗ୍ଭର କରନ୍ତୁ ପିଲା ଦୁଇଟି କାହିଁକି ଆନନ୍ଦିତ ହେଉଛନ୍ତି । ଦୁଇଟି ଘୋଡ଼ା କେହି ଗୋଟିଏ ପ୍ରକୃତ ଘୋଡ଼ା ନୁହେଁ । ଘୋଡ଼ା ନାମକୁ ବୁଝାଉଥିବା ଗୋଟିଏ ଗୋଟିଏ ଖେଳନାମାତ୍ର । ପିଲା ତାକୁ ନେଇ ଆନନ୍ଦ ହେଉଛନ୍ତି । କଛି କାଳ ପରେ ତା'ର ସେ ଭ୍ରମ ଦୂର ହୋଇଯାଏ । ସେ ବଡ଼ ହୋଇଯାଏ । ସେ ପ୍ରକୃତ ଘୋଡ଼ା ପାଇବାପରେ ଉକ୍ତ ଖେଳନା ଘୋଡ଼ାକୁ ମିଥ୍ୟା ବୋଲି ବୁଝିପାରେ ।

ଆଜି ଯେଉଁ ସୁନ୍ଦର ରୂପ, ସୁସ୍ୱାଦୁ ରସ, ମନୋହର ଗନ୍ଧ, ସୁଖଦ ସ୍ପର୍ଶ ତଥା ହୃଦସ୍ପର୍ଶୀ ଶବ୍ଦ ଲଭିକରି ଆମେ ନିଜ ନିଜକୁ ସୁଖୀ ବୋଲି ଭାବୁଛୁ, ବାସ୍ତବରେ ତାହା ସୁଖ ନୁହେଁ । ଅଜ୍ଞାନତାବଶତଃ ସେଗୁଡ଼ିକୁ ଆମେ ସୁଖକର ମନେକରୁଁ । ସମସ୍ତ ପ୍ରକୃତି ଓ ତାର ବିକୃତି ଜାତ ପଦାର୍ଥକୁ ପୁରୁଷଠାରୁ ପୃଥକ୍ ବୋଲି ଜାଣି ନ ପାରିବା ପର୍ଯ୍ୟନ୍ତ ଆମର ଅଜ୍ଞାନତା ଦୂର ହେବନାହିଁ । ଯେତେବେଳେ ପ୍ରକୃତି, ପୁରୁଷ ଓ ପୁରୁଷୋତ୍ତମ ବିଷୟରେ ଯଥାର୍ଥ ଜ୍ଞାନ ଜାତ ହେବ, ସେତେବେଳେ ସାଂସାରିକ ବିଷୟ ତୁଚ୍ଛ ମନେ ହେବ ଓ ସେ ସବୁ ଅସୁଖକର ଲାଗିବ । ଯଦି ତାହା ହୁଅନ୍ତା, ତେବେ ବଡ଼ ବଡ଼ ଚକ୍ର-ବର୍ତ୍ତୀ ରାଜାମାନେ ତ ସମସ୍ତ ସୁଖ ତ୍ୟାଗ କରି ବଣ ଜଙ୍ଗଲରେ ବୁଲୁଥାନ୍ତେ ; କିନ୍ତୁ ସେହି ଜ୍ଞାନ କେବଳ ଭାଗ୍ୟଶାଳୀଙ୍କୁ ହିଁ ମିଳିଥାଏ । କେବଳ ପୂର୍ବଜନ୍ମର ସୁକୃତିବଳରୁ ତାହା ସମ୍ଭବ ହୁଏ ! ହଜାର ଲକ୍ଷ ପୁରୁଷ ମଧ୍ୟରେ କେହି ଜଣେ ଜିଜ୍ଞାସୁ ମିଳେ । ପରମ ଭାଗ୍ୟବତୀ ଅବତାର ଜନନୀ ଭଗବତୀ ଦେବହୂତି ସେହି ଭାଗ୍ୟଶାଳିନୀ ଲଳନା-ମାନଙ୍କ ମଧ୍ୟରେ ଜଣେ ଥିଲେ ଯେ ଗୋଟିଏ ଜନ୍ମରେ ସଂସାର ସାଗରକୁ ପାରି ହୋଇ-ଗଲେ । କର୍ଦ୍ଦମ ଓ ଦେବହୂତିଙ୍କ ଚରିତ ପ୍ରସଙ୍ଗରେ ଭଗବାନ୍ କପିଳଙ୍କ ଅବତାର ଗ୍ରହଣ କଥା ଶୁଣି ଋଷିଗଣ କୌତୂହଳୀ ହୋଇ ଉଠିଲେ । ସେମାନଙ୍କ କୌତୂହଳ ଲକ୍ଷ୍ୟ କରି ଶୌନକ ମହର୍ଷି ସୂତଙ୍କୁ ପ୍ରଶ୍ନ କଲେ ।

ଶୌନକ କହିଲେ—ହେ ସୂତ ! ଆପଣ ଭଗବାନ୍ କପିଳଙ୍କ ଅବତାର ବିଷୟରେ ଅନେକ କଥା ବର୍ଣ୍ଣନା କଲେ । ସେହି ପବିତ୍ର କଥା ଶୁଣି ଶୁଣି ଆମର କର୍ଣ୍ଣ ପରିତୃପ୍ତ ହେଉନାହିଁ । ଅନବରତ ସେହି କଥା ଶୁଣିବା ନିମିତ୍ତ ଇଚ୍ଛାହେଉଛି । ଅଜ ହୋଇ ମଧ୍ୟ ଜନ୍ମଗ୍ରହଣ କରିବା, ନିର୍ଗୁଣ ହୋଇ ମଧ୍ୟ ଗୁଣର ଆଶ୍ରୟ ନେବା କଥାଟା ଆମକୁ ବିପରୀତ ହେଲା ଭଳି ଲାଗୁଛି । ଭଗବାନ୍ କପିଳ ରୂପରେ ଜିଜ୍ଞାସୁମାନଙ୍କୁ କିପରି ଉପଦେଶ ଦେଲେ ? କି କି ଲୀଳାଖେଳା କଲେ ? ମାନବ ସୁଲଭ କି କି କାର୍ଯ୍ୟ କଲେ ? ନିଜର ଜନନୀଙ୍କୁ କିପରି ଉପଦେଶ ପ୍ରଦାନ କଲେ ସେ ସମସ୍ତ ଶୁଣିବା ନିମିତ୍ତ ଇଚ୍ଛା ହେଉଛି । ଆପଣ ବିସ୍ତୃତ ଭାବେ ସେ ସବୁ କଥା ଆମକୁ କହନ୍ତୁ ।

ମହର୍ଷି ସୂତ ହସି ହସି କହିଲେ— ମହାଭାଗ ! ଆପଣ ଏଭଳି ପ୍ରଶ୍ନ କରି ମୋତେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ନିଜ ନିଜ ଅନ୍ତରର ପ୍ରଭୁପ୍ରେମକୁ ପ୍ରଦର୍ଶିତ କରିଛନ୍ତି । ଆପଣଙ୍କ ଅଲୌକିକ ଭକ୍ତିକୁ ଧନ୍ୟବାଦ । ଯେଉଁମାନେ ପ୍ରକୃତ ଭକ୍ତ ସେମାନେ ଭଗବତ୍ କଥାରେ ଏହିଭଳି ରସିଥାନ୍ତି । କାମୁକ ଓ କାମିନୀର କାମଭାବ ଯେପରି କେବେହେଲେ ତୃପ୍ତ ହୁଏ ନାହିଁ, ସେହିପରି ଭଗବତ୍ କଥାରେ ଭକ୍ତ ସର୍ବଦା ଅତୃପ୍ତ ହୋଇ ରହେ । ଆପଣଙ୍କ ପରି ବିଦୁର ଥିଲେ ମହାନ୍ ରସିକ । ଆପଣ

ମୋତେ ଯେଉଁ କଥା ପଚାରୁଛନ୍ତି ସେହିକଥା ବିଦୁର ଭଗବାନ୍ ମୈତ୍ରେୟଙ୍କୁ ପଚାରି-ଥିଲେ । ମୈତ୍ରେୟ ମୁନି ଦେଇଥିବା ଉତ୍ତର ମୁଁ ମୋର ଗୁରୁ ଶୁକଦେବଙ୍କଠାରୁ ଯେପରି ଶୁଣିଥିଲି ତାହା କହୁଛି ଶୁଣନ୍ତୁ ।

ମହାମୁନି କର୍ଦ୍ଦମ ଭଗବାନ୍ କପିଳଙ୍କ ଆଦେଶ ଅନୁସାରେ ବନକୁ ଚାଲିଗଲେ । ବର୍ତ୍ତମାନ ଏଡ଼େ ବଡ଼ ବିମାନ ଗୃହରେ ଦାସୀମାନଙ୍କ ଗହଣରେ କେବଳ ଦେବହୂତି ରହିଲେ । କନ୍ୟାମାନେ ବିବାହ ପରେ ନିଜ ନିଜ ଶାଶୁଘରକୁ ଚାଲିଯାଇଥିଲେ । ପରମେଶ୍ୱରଙ୍କ ପୂଜା ନିମିତ୍ତ ପତି ପରିବ୍ରାଜକ ଯତି ହୋଇଗଲେ । ଏବେ ମୋର ସମସ୍ତ ଦ୍ୱାର ଅବରୁଦ୍ଧ । ପୁତ୍ର ନିମିତ୍ତ ସବୁଠାରୁ ଅଧିକ ମୋହ ଜାତ ହୁଏ । ପୁତ୍ର ତ ସାକ୍ଷାତ ଭଗବାନଙ୍କ ଅବତାର । ସମସ୍ତ ଅବତାରର ମାଧୁର୍ଯ୍ୟ ଥାଏ, କିଛି ଲୀଳାଖେଳା ମଧ୍ୟ ଥାଏ; କିନ୍ତୁ କପିଳ ତ ଜ୍ଞାନର ଅବତାର । ତାଙ୍କର ଦୃଷ୍ଟି ସର୍ବଦା ନାସାର ଅଗ୍ର-ଭାଗରେ ଲାଗିରହିଛି । ନାସିକାର ଅଗ୍ରଭାଗରେ କ'ଣ ଅଛି କିଏ ଜାଣେ ? ବୈଷ୍ଣବମାନେ ସେହିଠାରୁ ତିଲକର ସ୍ୱରୂପ ଆରମ୍ଭ କରିଥାନ୍ତି । ତେଣୁ ନାମତଃ କପିଳ ପୁତ୍ର ମାତ୍ର, କିନ୍ତୁ ସେ ସ୍ୱୟଂ ଭଗବାନ୍ । ଦେବହୂତିଙ୍କର ସେହି ପୁତ୍ର ହିଁ ତାଙ୍କର ଏକମାତ୍ର ଗତି । ତାଙ୍କର ଶରଣ ଗଲେ ସଂସାରରୁ ମୁକ୍ତି ମିଳିବ । ଏହିସବୁ କଥା ଚିନ୍ତା କରି ଦିନେ ଦେବହୂତି ଏକା ଏକା ବିମାନ ଗୃହର ତଳକୁ ଆସି ବନଆଡ଼କୁ ଅଗ୍ରସର ହେଲେ ।

ଆଜି ସମଗ୍ର ସଂସାର ତାଙ୍କ ଆଗରେ ଅତି ବିଚିତ୍ର ରୂପ ଧାରଣ କରିଛି । ସଂସାର କଣ, ତାହା ଭଗବାନଙ୍କୁ ଜଣା; କିନ୍ତୁ ସମସ୍ତେ ନିଜ ନିଜ ଭାବନା ଅନୁସାରେ ଏହି ସଂସାରର କଳନା କରନ୍ତି । କ୍ଷୁଧାର୍ତ୍ତ ପୁରୁଷକୁ ସଂସାର ଖାଲି ଖାଲି ଲାଗେ । ଚାରିଆଡ଼ ଶୂନ୍ୟ ଦେଖାଯାଏ । ଯାହାର ସର୍ବସ୍ୱ ଚୋରି ହୋଇଯାଏ,ତାକୁ ସଂସାରଯାକ ଚୋରିଗଲା ଭଳି ମନେ ହୁଏ । ସୁଖୀ ଲୋକ ଅନ୍ୟର ଦୁଃଖକୁ ଜାଣିପାରେ ନାହିଁ । ଦୁଃଖୀକୁ ସର୍ବତ୍ର କେବଳ ଦୁଃଖ ହିଁ ଦେଖାଯାଏ । ଯେ ସଂସାର ପ୍ରତି ବୀତସ୍ପୃହ; ଅଭି ମନରେ ଯାହାର ବୈରାଗ୍ୟ ଜାତ ହୋଇଛି, ତାକୁ ଗଛ ପତ୍ର ସବୁଠି ବୈରାଗ୍ୟର ଝଲକ ଦେଖାଯାଏ ।

ଜନନୀ ଦେବହୂତିଙ୍କୁ ଆଜି ସମଗ୍ର ସଂସାର ଏକ ନାଟକଭଳି ମନେହେଉଛି । ବୃକ୍ଷ, ଲତା, ବନ, ଉପବନ, ନଦ, ନଦୀ, ସରୋବର ଯାହାକୁ ଚାହିଁଲେ ବି ତାଙ୍କ ମନରେ ବୈରାଗ୍ୟ ଭାବନା ଉତ୍ତରୋତ୍ତର ବଢ଼ିଚାଲିଛି । ବନଭୂମିର ଶୋଭା ନିରୀକ୍ଷଣ କରୁ କରୁ ସେ ଘୋର ଅରଣ୍ୟରେ ପହଞ୍ଚିଗଲେ । ଯାଉଁ ଯାଉଁ ସେ ଦେଖିଲେ ଏକ

ବିରାଟ ବଟବୃକ୍ଷର ଗୁମ୍ଫାରେ ତାଙ୍କର ପୁଅ ଭଗବାନ କପିଳ ଧ୍ୟାନମଗ୍ନହୋଇ ବସିଛନ୍ତି । ମାତାଙ୍କ କେଶରାଶି ଉନ୍ମୁକ୍ତ ଥିଲା । ସାରା ଦେହ ଧୂଳିଧୂସର ହୋଇ ଯାଇଥିଲା । ନିହାତ ସାଧାରଣ ଶାଢ଼ୀ ଖଣ୍ଡିଏ ପିନ୍ଧିଥିଲେ । ଧ୍ୟାନମଗ୍ନ ଅବସ୍ଥାରେ ନିଜର ତେଜସ୍ୱୀ ପୁତ୍ରକୁ ଦେଖିବା ମାତ୍ରେ ତାଙ୍କର ସମସ୍ତ ମୋହ ଦୂରୀଭୂତ ହୋଇଗଲା । ସେ ଧୀରେ ଧୀରେ ଯାଇ ଭୂମିରେ ମୁଣ୍ଡ ଲଗାଇ ଭଗବାନଙ୍କ ପାଦପଦ୍ମରେ ଶ୍ରଦ୍ଧାର ସହିତ ପ୍ରଣାମ କଲେ । ଭଗବାନ ଆଖି ଖୋଲି ନିଜର ମା'ଙ୍କୁ ପ୍ରଣାମ କରୁଥିବାର ଦେଖି ହସିଦେଲେ ଓ ଅତୀବ କୋମଳ ବଚନରେ କହିଲେ—ମା ! ଆପଣ ଏକା ଏକା ଏ ଆଡ଼କୁ କିପରି ଆସିଲେ, ଆବଶ୍ୟକ ଯଦି ଥିଲା ତେବେ କୌଣସି ଦାସୀକୁ ପଠାଇ ଦେଇଥିଲେ ମୁଁ ଶୀଘ୍ର ଚାଲିଯାଇଥା'ନ୍ତି । ମୁଁ ତ ଆପଣଙ୍କ ପୁଅ ।

ମା ଦେବହୂତି ଅତୀବ ନମ୍ରତାର ସହିତ କହିଲେ—ପ୍ରଭୋ ! ଆପଣ ମୋତେ ଆଉ ଅଧିକ ଭୁଲାନ୍ତୁ ନାହିଁ । ଆପଣଙ୍କ ଜନ୍ମ ସମୟରେ ଲୋକ ପିତାମହ ଭଗବାନ୍ ବେଦଗର୍ଭ ବ୍ରହ୍ମା ମୋତେ ଆପଣଙ୍କ ଅବତାରର ରହସ୍ୟ କହିଯାଇଥିଲେ । ଆଜି ପର୍ଯ୍ୟନ୍ତ ମୁଁ ବିମୂଢ଼ା ହୋଇ ରହିଥିଲି । ଆଜି ମୋର ମନେ ପଡ଼ିବାରୁ ମୁଁ ଆପଣଙ୍କ ନିକଟକୁ ଆସିଛି । ମୁଁ କଥାଟିଏ ପଚାରିବା ପାଇଁ ଇଚ୍ଛାକରୁଛି, ଯଦି ଆଦେଶ ଦେବେ, ତେବେ ପଚାରିବି । କପିଳଙ୍କଠାରୁ ଅନୁମତିନେଇ ଦେବହୂତି ପଚାରିଲେ—ଭଗବାନଙ୍କଠାରେ ସ୍ତ୍ରୀ ପୁରୁଷର ଭେଦଭାବ ଅଛି ନା କଣ ? ଦେଖନ୍ତୁ, ଆପଣ ବାପାଙ୍କୁ ଜ୍ଞାନୋପଦେଶ ଦେଇ ସଂସାର ସାଗରରୁ ପାରି କରିଦେଲେ । ମୋ ଆଡ଼କୁ ଟିକିଏ ହେଲେ ଦୃଷ୍ଟି ଦେଲେ ନାହିଁ । ଆପଣଙ୍କ ଜନନୀହୋଇ ମୁଁ ଏହି ଚୌରାଶି ନର୍କରେ ପଡ଼ିରହି ଘାଣ୍ଟି ହେବି, ଏହା କଣ ଆପଣଙ୍କ ଇଚ୍ଛା ?

ଭଗବାନ୍ କପିଳ କହିଲେ—ନା ମା ! ତା'କେବେ ହେବ ନାହିଁ । ଭଗବତ୍ ପଦର ଅଧିକାରୀ ସମସ୍ତେ । ସେ ପୁରୁଷ ହୁଅନ୍ତୁ ବା ସ୍ତ୍ରୀ ହୁଅନ୍ତୁ, ବୃଦ୍ଧ, ବାଳକ, ଯୁବକ ଯେ କେହି ହୁଅନ୍ତୁ ପଛକେ, ଯାହାର ହୃଦୟରେ ଜିଜ୍ଞାସା ଅଛି, ସେ ସେହି ଜ୍ଞାନର ପ୍ରକୃତ ଅଧିକାରୀ ହୁଏ । ପୁତ୍ରର ଉଦ୍‌ବୋଧନରେ ବିଗଳିତହୃଦୟା ଦେବହୂତି କହିଲେ—ପ୍ରଭୋ ! ଏହି ଇନ୍ଦ୍ରିୟଗୁଡ଼ିକ ମୋତେ ବଶୀଭୂତକରି ରଖିଛନ୍ତି । ମୋତେ ସେମାନେ ଦାସୀ ଭଳିରେ ବ୍ୟବହାର କରୁଛନ୍ତି । ଇନ୍ଦ୍ରିୟମାନଙ୍କଠାରେ ଆସକ୍ତ ରହି ସେହିମାନଙ୍କ ଲାଳସା ପରିପୂରଣ କରିବା ନିମିତ୍ତ ମୋ ଜୀବନର ସମସ୍ତ ଦିବାରାତ୍ରି କଟିଯାଇଛି । ତଥାପି ତୃଷ୍ଣା ଶାନ୍ତ ହେଉନାହିଁ କି ମନର କାମନା ପୂର୍ଣ୍ଣ ହେଉନାହିଁ । ଭୋଗର ଇଚ୍ଛା କେବେହେଲେ ପୂର୍ଣ୍ଣ ହୁଏ ନାହିଁ । ଜ୍ୱଳନ୍ତ ଅଗ୍ନିରେ ଯେତେ ଘୃତ ଆହୁତି ଦିଆଯିବ, ଅଗ୍ନିର ଜ୍ୱାଳା ସେତିକି ବଢ଼ୁଥିବ । ଇନ୍ଦ୍ରିୟମାନଙ୍କର ସେହି ଦଶା ।

ଭୋଗ ବାସନାରେ ଏମାନେ ଅଧିକରୁ ଅଧିକ ଲାଲସାଯୁକ୍ତ ହୁଅନ୍ତି । ସେଥିରୁ ମୁକ୍ତି ପାଇବାର ଉପାୟ କଣ ? ଆପଣ ଭକ୍ତ ବତ୍ସଳ, ଅଶରଣରେ ଏକମାତ୍ର ଶରଣ, ଶରଣାଗତର ପ୍ରତିପାଳକ । ମୁଁ ସମସ୍ତ ତ୍ୟାଗକରି ଆପଣଙ୍କ ଶରଣ ପ୍ରାର୍ଥନା କରୁଛି । ଆପଣ ମୋତେ ରକ୍ଷାକରନ୍ତୁ । ମୋତେ ପରମାର୍ଥ ପଥ ନିର୍ଦ୍ଦେଶ କରନ୍ତୁ । ମୁଁ ଆପଣଙ୍କର ଅନୁରକ୍ତା ଓ ପ୍ରପନ୍ନା ।

ମହାମୁନି ମୈତ୍ରେୟ କହୁଛନ୍ତି—ହେ ବିଦୁର ! ଭଗବାନ୍ କପିଳ ନିଜ ଜନ୍ମଦାତ୍ରୀ ଜନନୀଙ୍କର ସରଳ କୋମଳ ଓ ମୋକ୍ଷ ଅଭିଳାଷସୂଚକ ବଚନ ଶୁଣି ତାଙ୍କୁ ତତ୍ତ୍ୱଜ୍ଞାନ ଉପଦେଶ ଦେବା ନିମିତ୍ତ ଉଦ୍ୟତ ହେଲେ ।

### ଛପ୍ପୟ

ସୁନିକେ ପରମ ପବିତ୍ର ମୋକ୍ଷ ହିତକର ବରବାନୀ ।
ଜିଜ୍ଞାସା ହୈ ଗଈ ମାତୁ ସ୍ୱ ହରି ନେ ଜାନୀ ॥
ହରି ବୋଲେ ଅଧ୍[illegible] ସାଧନ ଭଲ ସୁଖକର ।
ଜାକେ ଆଶ୍ରୟ ତରେଂ [illegible]ଗତ୍ ଜଲନିଧି ଅତି ଦୁସ୍ତର ॥
ଜୋ ମନ ବିଷୟନି ମହିଁ ଫଁସେ୍ୟା ସୋ ବନ୍ଧନ କୋ ହେତୁ ହେ ।
ହରି ଚରନନି ମହଁ ଜୋ ଲଗେ ତୋ ଜଗ ତାରନ ସେତୁ ହେ ॥

# କପିଳଙ୍କ ଉପଦେଶ

ସତାଂ ପ୍ରସଙ୍ଗାନ୍ମମ ବୀର୍ଯ୍ୟ ସଂବିଦୋ
ଭବନ୍ତି ହୃତ୍କର୍ଣ୍ଣରସାୟନାଃ କଥାଃ
ତଜ୍ଜୋଷଣାଦାଶ୍ୱପବର୍ଗ ବର୍ତ୍ମନି
ଶ୍ରଦ୍ଧା ରତିର୍ଭକ୍ତିରନୁକ୍ରମିଷ୍ୟତି ,,

(ଭାଗବତ—୩-୨୫-୨୫)

ଛପ୍ପୟ

ମୋକ୍ଷ ଭବନ କୋ ଦ୍ୱାର ସନ୍ତ ସଙ୍ଗମ ମୁନି ଭାଷେଁ ।
ସରସ କଥା କହି ହୋହି କର୍ଣ୍ଣହୃଦୟ ତହଁ ସବ ରାଖେଁ ।
ସତ୍ସଙ୍ଗତ ତେଁ ବେଗି ହୋହି ଶ୍ରଦ୍ଧା ସତ୍ପଥ ମହଁ ।
ଶ୍ରଦ୍ଧା ତେଁ ରତି ହୋହି ଭକ୍ତି ପୁନି ପଦ ଭଗବତ୍ ମହଁ ।
ଭକ୍ତି ଭବାନୀ ହୃଦୟ ବସେଁ, ଜଗସୁଖ ବିଷବତ୍ ହୋହିଁ ସବ୍
କରତ କରତ ଅଭ୍ୟାସ ଦୃଢ଼ ହୋହିଁ କୃତାରଥ ପ୍ରାଣୀ ତବ୍ ।

ସମ୍ବନ୍ଧ ଦୁଇପ୍ରକାର । ଗୋଟିଏ ଶାରୀରିକ ସମ୍ବନ୍ଧ ଓ ଅନ୍ୟଟି ହେଲା ଶିକ୍ଷା ଦୀକ୍ଷା ସମ୍ପର୍କୀୟ ସମ୍ବନ୍ଧ । ଶରୀରର ସମ୍ପର୍କୀୟ ସମ୍ବନ୍ଧକୁ ଲୌକିକ ସମ୍ବନ୍ଧ କହନ୍ତି । ବାପା, କକେଇ, ଭାଇ, ଭଉଣୀ, ଭଣିଜା, ଭଣେଜା, ମା, ଅଜା, ମାମୁଁ ପ୍ରଭୃତି ଶରୀର ସମ୍ବନ୍ଧୀୟ । ଯେ ପର୍ଯ୍ୟନ୍ତ ଶରୀର ଅଛି, ସେ ପର୍ଯ୍ୟନ୍ତ ଏ ସମସ୍ତ ସମ୍ପର୍କ ରହେ ; କିନ୍ତୁ ଜୀବାତ୍ମା ଏ ଶରୀର ତ୍ୟାଗ କରି ଅନ୍ୟ ଶରୀର ଗ୍ରହଣ କଲେ, ପୂର୍ବଜନ୍ମର ପିତା ପୁତ୍ର ରୂପ ଧାରଣ କରେ ଓ ମାତା ପତ୍ନୀ ସ୍ୱରୂପରେ ଜନ୍ମ ନିଏ । ଏଜନ୍ମରେ ମିତ୍ର ବା ଶତ୍ରୁ ପରଜନ୍ମରେ ଶତ୍ରୁ ବା ମିତ୍ରରୂପ ଗ୍ରହଣ କରନ୍ତି ।

ସୂକ୍ଷ୍ମ ଶରୀର ସହିତ ଶିକ୍ଷା ଦୀକ୍ଷାର ସମ୍ବନ୍ଧ ଥାଏ । ଏ ସମ୍ବନ୍ଧଦ୍ୱାରା ଇହ ଲୋକରେ ବିଶେଷ କାର୍ଯ୍ୟ ନ ହେଲେ ମଧ୍ୟ ପରଲୋକରେ ବହୁକାର୍ଯ୍ୟ ସାଧିତ ହୁଏ । ତେଣୁ ଏହା ପାରଲୌକିକ କାର୍ଯ୍ୟ ନିମିତ୍ତ ଉଦ୍ଦିଷ୍ଟ । ଶିକ୍ଷାଦୀକ୍ଷାଦ୍ୱାରା ଆମେ ପରମ ପଦ ,ଦିବ୍ୟଲୋକ ତଥା ମୁକ୍ତି ପର୍ଯ୍ୟନ୍ତ ଲାଭ କରିପାରୁଁ ପାରମାର୍ଥିକ ସମ୍ବନ୍ଧ ସହିତ ଲୌକିକ ସମ୍ବନ୍ଧର କୌଣସି ସମ୍ପର୍କ ନାହିଁ । ଯେ କୌଣସି ସ୍ଥାନରେ ଯେ କୌଣସି ଜନଗୋଷ୍ଠୀରେ ଜନ୍ମ ହୋଇଥିବା ପୁରୁଷ ପାରଲୌକିକ କାର୍ଯ୍ୟ କରିପାରେ । ଶରୀର ସମ୍ବନ୍ଧୀୟବୃନ୍ଦଦ୍ୱାରା ମଧ୍ୟ ଏ କାର୍ଯ୍ୟ ସମ୍ଭବ । ପାରମାର୍ଥିକ ସମ୍ବନ୍ଧ ଆଗରେ ଲୌକିକ ସମ୍ବନ୍ଧର ସ୍ଥାନ ନିହାତି ଗୌଣ । ଉପନିଷଦ କଥାରୁ ଜଣାଯାଏ ଯେ ଅଳ୍ପସାମର୍ଥ୍ୟ ଥିବା କୌଣସି ଋଷି ନିଜର ପିତା, ପିତାମହ ଆଦି ବୃଦ୍ଧ ଋଷି-ମାନଙ୍କୁ ବାଳକ ବା ବତ୍ସ କହି ସମ୍ବୋଧନ କରିଥିଲେ । ସେଠାରେ ଏହି ସିଦ୍ଧାନ୍ତ କରାଯାଇଛି ଯେ ଅବସ୍ଥା ଯାହା ହେଲେ ମଧ୍ୟ ଜ୍ଞାନ ଦୃଷ୍ଟିରୁ ସେ ବୃଦ୍ଧ । ତେଣୁ ଶରୀର ସମ୍ବନ୍ଧୀୟଗଣ ବୃଦ୍ଧ ହେଲେ ମଧ୍ୟ ଜ୍ଞାନ ଦୃଷ୍ଟିରୁ ନ୍ୟୁନ ହୋଇଥିବାରୁ ବାଳକଭାବେ ସମ୍ବୋଧିତ ହୋଇଛନ୍ତି ।

ମୈତ୍ରେୟ ମୁନି କହୁଛନ୍ତି— ହେ ବିଦୁର ! ନିଜର ମା'ଙ୍କୁ ହାତଯୋଡ଼ି ଆଗରେ ବସି ପରମାର୍ଥ ଜିଜ୍ଞାସା କରୁଥିବା ଦେଖି ଭଗବାନ କପିଳ ସାଂଖ୍ୟ ସମ୍ବନ୍ଧୀୟ ପାରମାର୍ଥିକ ଉପଦେଶ ଦେବାକୁ ଯାଇ କହିଥିଲେ— ମା, ଭଗବତ୍ ପ୍ରାପ୍ତି ଓ ନିର୍ବାଣ ଲାଭ ନିମିତ୍ତ ବହୁ ମାର୍ଗ ରହିଛି; କିନ୍ତୁ ସେଥି ମଧ୍ୟରେ ଭକ୍ତିମାର୍ଗ ହିଁ ମୋ ଦୃଷ୍ଟିରେ ସର୍ବଶ୍ରେଷ୍ଠ । ସେହି ଭକ୍ତି ଲାଭର ସର୍ବଶ୍ରେଷ୍ଠ ଉପାୟ ହେଲା ସତ୍‌ପୁରୁଷଙ୍କ ସତ୍ସଙ୍ଗଲାଭ । ସାଧୁ ସଜ୍ଜନମାନେ ସର୍ବଦା କୃଷ୍ଣକଥା ଆଲୋଚନା କରନ୍ତି । ଭଗ-ବାନଙ୍କ ନାମ କୀର୍ତ୍ତନରେ ସେମାନେ ସମୟ କଟାନ୍ତି । କୃଷ୍ଣକଥା କୀର୍ତ୍ତନ,ଶ୍ରବଣ,ମନନ ଓ ଅଭ୍ୟାସଦ୍ୱାରା ତାଙ୍କ ନାମ ଓ ଗୁଣ ପ୍ରତି ଅନୁରାଗ ଜାତହୁଏ, ଶ୍ରବଣଦ୍ୱାରା ଶ୍ରଦ୍ଧା ଉତ୍ପତ୍ତି ହୁଏ ଓ ଶ୍ରଦ୍ଧାରୁ ଆସକ୍ତି ଜାତ ହୁଏ । ଏହି ଆସକ୍ତି ଉତ୍ତରୋତ୍ତର ବର୍ଦ୍ଧିତ ହୋଇ ଭକ୍ତିରେ ରୂପାନ୍ତରିତ ହୁଏ । ତେଣୁ ଭକ୍ତି ନିମିତ୍ତ ସଙ୍ଗର ଆଶ୍ରୟ ନେବା ପ୍ରଥମ କର୍ତ୍ତବ୍ୟ ।

ଏହା ଶୁଣି ଜନନୀ ଦେବହୂତି କହିଲେ —ପ୍ରଭୋ ! ଆପଣ ଯେଉଁ ଭକ୍ତିର ଏତେ ପ୍ରଶଂସା କରୁଛନ୍ତି, ସେ ଭକ୍ତି କଣ ? ତାହା କିପରି ଲାଭ ହୁଏ । ମୋଭଳି ମନ୍ଦବୁଦ୍ଧିଙ୍କୁ ତାହା ବୁଝାଇ କହନ୍ତୁ । ଏକରେ ତ ମୁଁ ସ୍ତ୍ରୀଲୋକ, ଦ୍ୱିତୀୟରେ ମୋ ବୁଦ୍ଧି ମଧ୍ୟ ଆଦୌ ତୀକ୍ଷ୍ଣ ନୁହେଁ । ତେଣୁ ସରଳଭାବରେ ମୋତେ ଭକ୍ତିପ୍ରସଙ୍ଗ ବୁଝାଇ ଦିଅନ୍ତୁ । ନିଜର ଜନନୀ, ଯେ ଏହି ଶରୀରକୁ ପାଳି ପୋଷି ବଡ଼ କରିଛନ୍ତି,

ସେହି ପୂଜନୀୟା ମା ଆଜି ଅତି ଧୀରଭାବେ ପ୍ରଶ୍ନ କରୁଥିବାର ଦେଖି ଭଗବାନ୍ କପିଳଙ୍କ ହୃଦୟ ବିଗଳିତ ହୋଇଗଲା । ସେ କହିଲେ —ମା, ତୁମେ ଭକ୍ତର ଲକ୍ଷଣ ପଚାରୁଛ, ତାହା ହେଉଛି ହୃଦୟର ସହିତ ସମସ୍ତ ଚିତ୍ତବୃତ୍ତିକୁ ଭଗବାନଙ୍କୁ ସମର୍ପଣକରିବା, ଭକ୍ତର କିଛି କାରଣ ନାହିଁ କି କାମନା ନାହିଁ । ନିଷ୍କାମ ଭକ୍ତଠାରେ ମୋକ୍ଷ ଅତି ତୁଚ୍ଛ ବୈରଭାବ ଆଚରଣ କରୁଥିବା ରାକ୍ଷସମାନେ ମଧ୍ୟ ମୁକ୍ତି ଲାଭ କରିଥାନ୍ତି । ସେଥିରେ କି ଆନନ୍ଦ ଅଛି ? ଠିକ୍ ରସଗୋଲା, ଗୋଲାପଜାମ୍, ଅଙ୍ଗୁର ବା କମଳାକୁ ପାଟିରେ ପୂରାଇ ଦାନ୍ତରେ ଦାବିବା ମାତ୍ରେ ଯେପରି ମିଷ୍ଟରସ ପାଟିରେ ପୂର୍ଣ୍ଣ ହୋଇଯାଏ, ସେହିପରି ହୃଦୟରେ ଥିବା ରସ ଭକ୍ତ ମାଧ୍ୟମରେ ଚିତ୍ତକୁ ପ୍ରସନ୍ନ କରିଦିଏ, ଏହାହିଁ ଭକ୍ତର ବୈଶିଷ୍ଟ୍ୟ । ସେହି ଭକ୍ତିରସର ଆସ୍ୱାଦନ ଧୂଇ ବା ଦୂରରୁ ଅଧିକ ଉପାୟର ସମ୍ମିଶ୍ରଣ ଦ୍ୱାରା ସମ୍ଭବ ହୁଏ । ସଙ୍ଗୀ ଆଙ୍କ ଭଜି ଭକ୍ତମାନେ ଏକତ୍ରିତ ହୁଅନ୍ତି । ଜଣେ ଭଗବାନଙ୍କ ଗୁଣଗାନ କରେ ଏବଂ ଅନ୍ୟମାନେ ଶୁଣି ଶୁଣି ପ୍ରେମରେ ବିଭୋର ହୋଇଯାଆନ୍ତି । କେବେ କେବେ ଭକ୍ତଗଣ ମିଳି ମିଶି ଦିବ୍ୟ, ରସମୟ, ଆନନ୍ଦ, ମଧୁ, ପ୍ରେମପୂର୍ଣ୍ଣ ପବିତ୍ର ନାମ କୀର୍ତ୍ତନ କରୁ କରୁ ଭାବବିହ୍ୱଳ ହୋଇ ହସନ୍ତି, କାନ୍ଦନ୍ତି, ନାଚନ୍ତି ତ କେବେ କେବେ ଚିତ୍କାର କରନ୍ତି, ଝୁଅନ୍ତି,ଗଡ଼ାଗଡ଼ି ହୁଅନ୍ତି ଏବଂ କାନ୍ଦି କାନ୍ଦି ଶୋଇଯାଆନ୍ତି । ଲୋକସାଧାରଣରେ ସେମାନେ ପାଗଳ ହେଲାଭଳି ଦେଖାଯାଆନ୍ତି । ସେମାନେ ମୁକ୍ତିକୁ ମଧ୍ୟ ପସନ୍ଦ କରନ୍ତିନାହିଁ; କିନ୍ତୁ ମା', ସେମାନଙ୍କ ପାଗଳାମିର କେବେହେଲେ ସମାପ୍ତି ଘଟେ ନାହିଁ । ସେମାନେ ସବୁବେଳେ କିଛି ନା କିଛି କରୁଥାନ୍ତି । କେବେ ଭଗବାନଙ୍କ ସେବା ତ କେବେ ବିଗ୍ରହର ଅର୍ଚ୍ଚନା କରନ୍ତି । ସେହି ବିଗ୍ରହ ସହିତ କଥାବାର୍ତ୍ତା କରନ୍ତି ।

ମା, ଭକ୍ତମାନଙ୍କ ପାଇଁ ସେହି କେବଳ କଥା ହୋଇ ଫେରିଯାଏ ନାହିଁ ସେମାନେ ସମସ୍ତେ ମାନରହିତ, ଦମ୍ଭରହିତ ଓ ଅହମିକା ଶୂନ୍ୟ ମନୋଭାବ ନେଇ ପ୍ରତ୍ୟେକ ପ୍ରାଣୀକୁ ସମ୍ମାନ ଦିଅନ୍ତି । କେବଳ କୀର୍ତ୍ତନ ବିରୋଧୀ ବ୍ୟକ୍ତି ସେମାନେ ମିଳା ମିଶା କରନ୍ତିନାହିଁ ; କିନ୍ତୁ ସେମାନଙ୍କୁ ଅନାଦର କରନ୍ତି ନାହିଁ । ତେଣୁ ଭକ୍ତବତ୍ସଳ ପ୍ରଭୁ ମୁକ୍ତିକୁ ଭକ୍ତର ଦାସୀ ରୂପେ ପ୍ରତିଷ୍ଠା କରିଛନ୍ତି । ଜନନୀର ଦାସୀ ଜନମତୁଲ୍ୟା । ସେଥିପାଇଁ ବୈକୁଣ୍ଠରେ ମୁକ୍ତ ଭକ୍ତ ଦେବାଙ୍କ ଆଶ୍ରୟରେ ଆଥାନ୍ତି । ଭକ୍ତମାନେ ସିଦ୍ଧି କି ଋଦ୍ଧି କିଛି ଇଚ୍ଛା କରନ୍ତିନାହିଁ । ସ୍ୱର୍ଗୀୟ ଐଶ୍ୱର୍ଯ୍ୟ କଥା କଣ କହିବା, ସେମାନେ ବୈକୁଣ୍ଠ ନିବାସିନୀ ଶ୍ରୀଙ୍କୁ ଲାଭ କରିବାପାଇଁ ଆଦୌ ଅଭିଳାଷୀ ନୁହନ୍ତି । ଭକ୍ତ କେବଳ ଭକ୍ତିକୁ ଜାଣେ । ମୁକ୍ତି ହେଉଛି ଭକ୍ତିର ଅଧୀନ । ଭକ୍ତମାନେ ଅନାୟାସରେ ମୁକ୍ତି ଲାଭ କରିଥାନ୍ତି ।

ଦେବହୂତି କହିଲେ—ପ୍ରଭୋ ! ସମସ୍ତ ଶାସ୍ତ୍ରର ସାରଭୂତ ଉପଦେଶ ମୋତେ ପ୍ରଦାନ କରନ୍ତୁ । ଭଗବାନ୍ କପିଳ ମା'ଙ୍କୁ ବୁଝାଇବାକୁ ଯାଇ ଉପଦେଶ ଦେଲେ —ମା, ଏ ସଂସାରରେ ଭକ୍ତି-ଯୋଗ' ହିଁ ସର୍ବଶ୍ରେଷ୍ଠ ଯୋଗ । ଏହାଦ୍ୱାରା ଆମର ଚଞ୍ଚଳ ଚିତ୍ତବୃତ୍ତି ଦୃଢ଼ଭାବେ ଭଗବାନ୍ ଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ଲାଗିଯାଏ । ସର୍ବାନ୍ତଃକରଣରେ ସମସ୍ତ କର୍ମ ତାଙ୍କୁ ସମର୍ପଣ କଲେ ମନ ସ୍ଥିର ହେବ । ଏହାହିଁ ଭକ୍ତିଯୋଗର ସାରକଥା ।

ଭକ୍ତିଯୋଗର ଉତ୍କର୍ଷତା ବିଷୟରେ ମାଙ୍କୁ ବୁଝାଇ କପିଳ ମହତତ୍ତ୍ୱାଦି ଭିନ୍ନ ଭିନ୍ନ ତତ୍ତ୍ୱର ଉତ୍ପତ୍ତି ପ୍ରସଙ୍ଗ ବର୍ଣ୍ଣନା କଲେ । ପ୍ରକୃତି କଣ ? ପୁରୁଷ କଣ ? ପ୍ରକୃତିର ବିକୃତିର ଏ ଜଗତର ବିଶ୍ୱ କପରି ଜନ୍ମନେଲା ? ପଞ୍ଚଭୂତ, ପଞ୍ଚତନ୍ମାତ୍ରା, ଗୁଣ ଆଦି ପ୍ରସଙ୍ଗ ବିସ୍ତୃତ ଭାବେ ବର୍ଣ୍ଣନା କରିଥିଲେ । ପ୍ରକୃତି ପୁରୁଷର ଜ୍ଞାନଦ୍ୱାରା ମୋକ୍ଷ ପ୍ରାପ୍ତି ହୁଏ । ସାଂଖ୍ୟଜ୍ଞାନ ସମ୍ବନ୍ଧୀୟ ଏହି ଉପଦେଶ ଦେଇ ଭଗବାନ୍ କପିଳ 'ଅଷ୍ଟାଙ୍ଗଯୋଗ' ବର୍ଣ୍ଣନା କରିଥିଲେ । ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ, ସଂପ୍ରଜ୍ଞାତ-ସମାଧି ଓ ନିର୍ବୀଜ-ସମାଧିର ଲକ୍ଷଣ ବୁଝାଇଥିଲେ । ଧ୍ୟାନର ବିଧିବିଧାନ, ଭକ୍ତିର ମହତ୍ତ୍ୱ, କାଳର ମହିମା, ଜ୍ଞାନଯୋଗ ବା କ୍ରିୟାଯୋଗଦ୍ୱାରା ଭଗବତ୍ ଚିନ୍ତନ ବିଷୟ ବର୍ଣ୍ଣନା କରିଥିଲେ ।

ପ୍ରାରବ୍ଧ କର୍ମ ଭୋଗ କରିବା ନିମିତ୍ତ ଜୀବ ଜନ୍ମ-ଗ୍ରହଣ କରେ । ବିଭିନ୍ନ ଯୋନିରେ ଭ୍ରମଣ କରି ବହୁକାଳ ପରେ ମାନବ ଜନ୍ମ ପାଏ । ଅଭାବ ଦୁଃଖ କଷ୍ଟରେ ବଢ଼େ । ପୁଣି ଛନ୍ଦ, କପଟ, ପ୍ରପଞ୍ଚମାର୍ଗରେ ଅର୍ଥ ଉପାର୍ଜନ କରେ । ଘରଦ୍ୱାର, ସ୍ତ୍ରୀ, ପୁତ୍ର, କନ୍ୟା ପାଇଁ କ୍ରୂର କର୍ମମାନ କରି ଚାଲେ । ଶେଷରେ ବୁଢ଼ା ହୁଏ । ନିଜପ୍ରିୟ ଲୋକଙ୍କଠାରୁ ନାନାବିଧ କଷ୍ଟ ପାଏ । ମୃତ୍ୟୁ ପରେ ପୁଣି କର୍ମ ଅନୁସାରେ ମାତୃ-ଗର୍ଭରେ ପ୍ରବେଶ କରେ । ରଜ ଓ ବୀର୍ଯ୍ୟର ସଂସର୍ଗଦ୍ୱାରା ପୁଣି କପରି ଜନ୍ମହେବା ପାଇଁ ନାନାପ୍ରକାର କ୍ଳେଶ ଭୋଗକରେ ସେ ସମସ୍ତ ଭଗବାନ୍ କପିଳ ମା'ଙ୍କୁ ବୁଝାଇଥିଲେ । ଏହାପରେ ଧୂମମାର୍ଗ ଓ ଅର୍ଚିମାର୍ଗର ତତ୍ତ୍ୱ ବର୍ଣ୍ଣନା କରିଥିଲେ । କାମନା ଅନୁସାରେ ଏ ଜୀବ ନାନାଲୋକ ଗମନ କରେ । ସେଠାରେ ପାପ ପୁଣ୍ୟ ଭୋଗ କରିବା ପରେ ପୁଣି କର୍ମ ଅନୁଯାୟୀ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରେ । ସକାମ କର୍ମରେ ଜନ୍ମ-ମରଣ ଚକ୍ରରୁ ମୁକ୍ତି ମିଳେ ନାହିଁ । ସେଥିପାଇଁ ଭକ୍ତି ହିଁ ପ୍ରତ୍ୟେକର ଆଚରଣୀୟ ସର୍ବଶ୍ରେଷ୍ଠ ମାର୍ଗ । ପରମ ପୁରୁଷ ପରମାତ୍ମାଙ୍କ ପାଦପଦ୍ମ ହିଁ ପରମ ପୂଜନୀୟ ଓ ଭଜନୀୟ । ତାଙ୍କର ଗୁଣାତୀତ ଭକ୍ତିଦ୍ୱାରା ତାଙ୍କର ଭଜନକୁ ଶ୍ରେଷ୍ଠମାର୍ଗ କହନ୍ତି । ଏହାହିଁ ସର୍ବଶ୍ରେଷ୍ଠ ସାଧନ, ସର୍ବୋପଯୋଗୀ ପଥ ଓ ପ୍ରଭୁପଦ ପ୍ରାପ୍ତିର ଉତ୍ତମ ଉପାୟ ।

ବାସ୍ତବରେ ଲକ୍ଷ୍ୟ ତତ୍ତ୍ୱ ହେଉଛି ଏକ । ଉପନିଷଦରେ ଯେ ବ୍ରହ୍ମ, ଯୋଗଶାସ୍ତ୍ରରେ ସେ ପରମାତ୍ମା ବା ପରମେଶ୍ୱର ଭାବେ ଅଭିହିତ । ସାଂଖ୍ୟବାଦରେ ସେହି ପରମେଶ୍ୱରଙ୍କୁ ପୁରୁଷ କୁହାଯାଏ । ଭକ୍ତିଶାସ୍ତ୍ରରେ ସେ ଭଗବାନ୍ । ଜ୍ଞାନଲୋକେ ତାଙ୍କୁ ନିର୍ଗୁଣ କହନ୍ତି । ରସିକ ଭକ୍ତ ତାଙ୍କୁ ଭଗବାନ୍ କହନ୍ତି । କିଏ ଶୁଭକାର୍ଯ୍ୟଦ୍ୱାରା, କିଏ ଯଜ୍ଞଯାଗଦ୍ୱାରା, ଆଉ କେହି ଦାନ, ତପ, ବେଦାଧ୍ୟୟନ, ବେଦାନ୍ତ ବିଚାର, ମନୋନିଗ୍ରହ, କର୍ମ, ସନ୍ନ୍ୟାସ, ଯୋଗ, ଭକ୍ତି, ନିବୃତ୍ତି, ପ୍ରବୃତ୍ତି ମାର୍ଗଦ୍ୱାରା ତାଙ୍କୁ ପାଇବା ନିମିତ୍ତ ଯତ୍ନ କରେ । ଯେଉଁ ଉପାୟରେ ହେଉ କାୟମନୋବାକ୍ୟରେ ଭଗବତ୍ ଚିନ୍ତନ ହିଁ ଏ ଜୀବନର ପରମ ଲକ୍ଷ୍ୟ ହେବା ବାଞ୍ଛନୀୟ । ଏହାଦ୍ୱାରା ମାନବ ଜନ୍ମର ସାର୍ଥକତା ପ୍ରତିପାଦିତ ହେବ । ଏହିଭଳି ତତ୍ତ୍ୱ ଉପଦେଶ ଦେଇ ଭଗବାନ୍ କପିଳ ନୀରବ ହେଲେ ।

## ଛପ୍‌ପୟ

ଭକ୍ତିଯୋଗ ଅତି ସରଳ ସରସ ସବୁକେ ହିତକାରୀ ।
ବିପ୍ରଶୂଦ୍ର ନର ନାରୀ ସବହିଁ ତାକେ ଅଧିକାରୀ ।।
ପରମାତ୍ମା ପରଂବ୍ରହ୍ମ ପୁରୁଷ ଭଗବାନ୍ କହୋ ହରି ।
ଜ୍ଞାନୀ କରତେ ଜ୍ଞାନ ଲହେଁ ନର ଭକ୍ତ ଭକ୍ତି କରି ।।
କପିଲ ଦେବକେ ବଚନ ସୁନି ମୁଦିତ ମାତୁ ମନ
ଅତିଭୟୋ ।
ହଟ୍ୟୋ ମୋହ ଆବରଣ ସବ ଦ୍ୱନ୍ଦ୍ୱ କଟେ
ତମ ନସି ଗୟୋ ।।

# ଭଗବାନ୍ କପିଳଙ୍କ ଗୃହତ୍ୟାଗ

ଇତି ପ୍ରଦର୍ଶ୍ୟ ଭଗବାନ୍ ସତୀଂ ତାମାତ୍ମନୋ ଗତିମ୍ ।
ସ୍ୱମାତ୍ରା ବ୍ରହ୍ମବାଦିନ୍ୟା କପିଳୋଽନୁମତୋ ଯଯୌ ॥

(ଭାଗ-୩-୩୩-୧୨)

### ଛପ୍‌ପୟ

ସିଦ୍ଧଭକ୍ତ ଜବ୍ ଜନନୀ ଜୋର୍ ଯୁଗ କର୍ ସିର୍ ନାୟୌ ।
ଗଦ ଗଦ୍ ଗିରା ଗମ୍ଭୀର୍ ମାତୁ ଗୁରୁ ଗୌରବ ଗାୟୌ ॥
ହୌଂ ମତି ମନ୍ଦ ଗଁୱାର୍ ନାରୀ ନିଜ ନାମ ସିଖାୟୌ ।
ଜାକୂଁ ଲୌକେ ଶ୍ୱପଚ ପରମ ଶୁଚି ଶ୍ରେଷ୍ଠ କହାୟୌ ॥
ଜାକୋ କୀର୍ତ୍ତନ କରତହୀ କଲି କଲୁଷ ଛିନମହଁ କଟହିଁ ।
ବଡ଼ ଭାଗି ତେ ନାରୀ ନର୍ ଜେ ତବ ନାମନ କୂ ରଟହିଁ ॥

ବୁଦ୍ଧିଦ୍ୱାରା ବିଚାର ବିମର୍ଶ କରି କୌଣସି ସିଦ୍ଧାନ୍ତରେ ଉପନୀତ ହେବା ଅଲଗା କଥା ଏବଂ ଚିତ୍ତର ସ୍ୱାଭାବିକ ବୃତ୍ତି ଆଉ ଏକ କଥା । ନିଜ ଆତ୍ମୀୟ ଲୋକଙ୍କ ବିୟୋଗରେ ବଡ଼ ବଡ଼ ତ୍ୟାଗୀ, ବିରାଗୀ ପୁରୁଷଙ୍କର ମଧ୍ୟ କ୍ଷୋଭ ଜାତ ହୁଏ । ସ୍ୱଜନଙ୍କ ସ୍ନେହାନୁବନ୍ଧ ମୁନିମାନଙ୍କ ପକ୍ଷରେ ମଧ୍ୟ ଦୁସ୍ତ୍ୟଜ୍ୟ ବୋଲି କୁହାଯାଇଛି । ଆମେ କୌଣସି ପିଲାକୁ ତ୍ୟାଗୀ, ବିରାଗୀ, ମହାତ୍ମା ହୋଇଥିବାର ଦେଖିଲେ କହୁଁ ଯେ, ଆହା ଏହାର ମାତା ପିତା ଧନ୍ୟ । ଏ ମହାତ୍ମା ପିତୃଗଣଙ୍କୁ ଉଦ୍ଧାର କଲେ । ପୁତ୍ର ହେବ ତ ଏହିପରି ହେବା ବାଞ୍ଛନୀୟ ।' କିନ୍ତୁ ନିଜ ପୁଅ ଯେତେବେଳେ ଗୃହତ୍ୟାଗ କରି ବୈରାଗୀ ହେବାକୁ ଇଚ୍ଛା କରିବ, ସେତେବେଳେ ଆମର ହୃଦୟ ଅସୀମ ବ୍ୟଥାରେ ପରିପୂର୍ଣ୍ଣ ହୋଇଯିବ । ସ୍ବାକୁ କହି, ତାକୁ କହି, ନାନାପ୍ରକାର ଯୁକ୍ତି ଦେଖାଇ ଆମେ ତାକୁ ଅଟକାଇବାକୁ ଉଦ୍ୟମ କରୁ । ପୁଅ ବୈରାଗୀ ହେଲେ ଆମର ସପ୍ତପୁରୁଷ ଯେ ଉଦ୍ଧାର ହେବ, ସେତେବେଳେ ଏକଥାଟା ଏକଦମ୍ ଭୁଲି ଯାଉଁ । ଏହାକୁ ସହଜ ସ୍ନେହ କହନ୍ତି । ସହଜ ସ୍ନେହବନ୍ଧନ ଅତି କଷ୍ଟରେ ତୁଟେ ।

ଭଗବାନ୍ କପିଳ ନିଜ ଜନନୀ ଦେବହୂତିଙ୍କୁ ଯୋଗ, ଭକ୍ତି ଓ ଜ୍ଞାନ ଉପଦେଶ ଦେଲେ । ଜୀବର ପରିଣତି, ନାନା ଯୋନିରେ ଜନ୍ମଗ୍ରହଣ କରିବାର

କାହାଣୀ କହି ସାରିବା ପରେ ପଚାରିଲେ—ମା, ତୁମେ ବର୍ତ୍ତମାନ ପରମାର୍ଥର ରହସ୍ୟ ବୁଝିପାରିଲ ତ ? ଦେବହୁତି ଉତ୍ତର ଦେଲେ—ହଁ ପ୍ରଭୋ ! ଆପଣଙ୍କ ଅସୀମ କୃପାବଳରୁ ମୋର ସମସ୍ତ ସଂଶୟ ଦୂରହେଲା । ପ୍ରକୃତି ପୁରୁଷର ଭେଦ ଓ ଆତ୍ମତତ୍ତ୍ୱର ଗୂଢ଼ରହସ୍ୟ ଆପଣଙ୍କ ଦୟାରୁ ବୁଝିପାରିଲି । ବର୍ତ୍ତମାନ ମୁଁ କଣ କରିବି ?

ଭଗବାନ୍ କହିଲେ— ଜ୍ଞାନ ଉଦୟ ହେବା ପରେ ଜୀବର ଆଉ କୌଣସି କର୍ତ୍ତବ୍ୟ ନ ଥାଏ । ଚତୁର୍ଥାବସ୍ଥାରେ ପହଞ୍ଚିବା ମାତ୍ରେ ଜୀବ ଚିରକାଳପାଇଁ ସଂସାରମୁକ୍ତ ହୋଇଯାଏ । ଯଦି ସପ୍ତମାବସ୍ଥା ବା ସପ୍ତମ ଭୂମିକାରେ ପହଞ୍ଚିବା ପୂର୍ବରୁ ଏହି ଶରୀରର ପତନ ଘଟେ, ତେବେ ଜ୍ଞାନ ଅର୍ଜନରେ କିଛି ଅଭାବ ରହିଯାଏ । ତାହାର ତତ୍କାଳ ମୁକ୍ତି ହୁଏ ନାହିଁ ଦିବ୍ୟ ଲୋକରେ ତାକୁ ଆଉ କିଛି କାଳ ଅଭ୍ୟାସ କରିବାକୁ ପଡ଼େ । ବ୍ରହ୍ମଲୋକରେ ସ୍ୱୟଂ ବ୍ରହ୍ମା ତା'ର ଜ୍ଞାନକୁ ପରିପୂର୍ଣ୍ଣ କରନ୍ତି ଏବଂ କଳ୍ପାନ୍ତ କାଳରେ ସେ ବ୍ରହ୍ମାଙ୍କ ସହିତ ମୁକ୍ତି ଲାଭକରେ । ଯେ କ୍ରମଶଃ ପଞ୍ଚମ,ଷଷ୍ଠ ଓ ସପ୍ତମ ଭୂମିକାକୁ ଏହି ଲୋକରେ ଲାଭ କରନ୍ତି,ସେମାନେ ଶୀଘ୍ର ମୁକ୍ତ ହୋଇଯାଆନ୍ତି । ସେମାନେ ପ୍ରକୃତି ମଣ୍ଡଳର ସମସ୍ତ ଆବରଣକୁ ଭେଦକରି 'ସତ୍ୟସ୍ୱରୂପ'ରେ ଲୀନ ହୁଅନ୍ତି । ସପ୍ତମ ଭୂମିକାରେ ଉପନୀତ ଆତ୍ମଜ୍ଞାନୀ ପୁରୁଷର ଦେହ ତିନି ଦିନ ସପ୍ତାହରୁ ଅଧିକ କାଳ ରହିପାରେ ନାହିଁ । କାରଣ ସେ ଶରୀରଧର୍ମରୁ ବହୁତ ଉପରକୁ ଯାଇସାରିଥାଏ । ତେଣୁ ସେ କିଛି କୌଣସି ଚେଷ୍ଟା କରିପାରେ ନାହିଁ । ମାନବ ଏଠାରେ ଯେଉଁ ସ୍ଥିତି ଲାଭ କରେ ପରଲୋକରେ ସେହି ସ୍ଥିତି ତାକୁ ମିଳିଥାଏ । ତେଣୁ ଯେ ଏଠାରେ ମୁକ୍ତ । ସେ ପ୍ରକୃତରେ ମୁକ୍ତି ଲାଭକରେ । ତେଣୁ ପଞ୍ଚମ ଭୂମିକାରେ ଉପନୀତ ହେବା ପୂର୍ବରୁ 'ତିତିକ୍ଷା'ର ଅଭ୍ୟାସ କରିବାକୁ ପଡ଼େ ।

ଦେବହୂତି 'ତିତିକ୍ଷା' କଣ ବୋଲି ପଚାରିବାରୁ କପିଳ ଉତ୍ତର ଦେଲେ —ମା, ସୁଖଦୁଃଖକୁ ପ୍ରତିରୋଧ କରିବାର ଉପାୟ ଚିନ୍ତା ନ କରି ଯେ ସହିପାରେ ତାହା ହିଁ ତିତିକ୍ଷା । ଶୀତ ଲାଗିଲେ ଆମେ ଶୀତବସ୍ତ୍ର ପରିଧାନ କରୁ, ନିଆଁ ଜାଳି ତା' ପାଖରେ ବସୁ । ଘରଭିତରେ ଘୋଡ଼ାଘାଡ଼ି ହୋଇ ରହୁଁ । ଏହାଦ୍ୱାରା ଆମେ ଶୀତରୁ ରକ୍ଷା ପାଇବାର ଯତ୍ନ କରୁଛୁ ବୋଲି ବୁଝାଯାଏ ; କିନ୍ତୁ ଏ ପ୍ରକାର ଚେଷ୍ଟାରୁ ନିବୃତ୍ତ ହେବାହିଁ ତିତିକ୍ଷା । ଭୋକ ଲାଗିଲେ ଖାଇବା ଚିନ୍ତା କରୁଁ । ଦେହରେ ମଶା, ମାଛି ବସିଲେ ସେମାନଙ୍କୁ ଘଉଡ଼େଇବା ପାଇଁ ସ୍ୱତଃ ହାତ ଉଠିଥାଏ ; କିନ୍ତୁ ଖାଦ୍ୟ ଚିନ୍ତା ନ କରିବା ଏବଂ ଶରୀର ରକ୍ଷାପାଇଁ ପ୍ରଯତ୍ନ ନ କରିବା ହିଁ ତିତିକ୍ଷା ।

କିନ୍ତୁ, ଶରୀର ରକ୍ଷା ହେବ କିପରି ? —ମାଙ୍କ ପ୍ରଶ୍ନର ଉତ୍ତର ଦେଇ ଭଗବାନ୍ କପିଳ କହିଲେ—ମା, ଯେ ପର୍ଯ୍ୟନ୍ତ ଶରୀର ରହିଛି, ସେ ପର୍ଯ୍ୟନ୍ତ ତାହା ରକ୍ଷା କରିବା ଉଚିତ । ଏହା ଶରୀର ସାଧନାର ଉପାଦାନ, ଏହାଦ୍ୱାରା ସଂସାର ସାଗରରୁ ପାରି ହେବାକୁ ପଡ଼ିବ—ଏହି ଧାରଣା ନେଇ ଶରୀର ରକ୍ଷା କରିବା ବାଞ୍ଛନୀୟ । ଧର୍ମଶାଳାରେ ରାତିଟିଏ କଟାଇବାପାଇଁ ଯେପରି ଆମେ ତାକୁ ସଫାସୁତରା ରଖୁ ଏବଂ ସେଠାରୁ ଗଲାପରେ ଆଉ ସେ କଥା ବିଚାରୁ ନାହିଁ, ସେହିପରି ଏ ଶରୀରକୁ ଭାବିବା ଉଚିତ । ତେଣୁ ଚତୁର୍ଥ, ପଞ୍ଚମ ଭୂମିକା ପର୍ଯ୍ୟନ୍ତ ଶରୀର ରକ୍ଷା ନିମିତ୍ତ କର୍ମ କରିବା ଉଚିତ । ଶରୀରଠାରୁ ଉପରକୁ ଗଲେ ଶରୀରରକ୍ଷା ବିଷୟରେ ଜ୍ଞାନୀ କେବେ ଚିନ୍ତା କରେ ନାହିଁ । ସାପ ଡାମ୍ଫୁଡ଼ିବ କାମୁଡ଼ୁ, ସିଂହ ଖାଇଯିବ ଖାଇଯାଉ, ସେକଥା ଜ୍ଞାନୀ ଭାବେ ନାହିଁ । କାରଣ ଶରୀର ପ୍ରତି ତା'ର କୌଣସି ମମତା ନ ଥାଏ । ତେଣୁ ଆପଣ ଏବେ ଉପେକ୍ଷାର ଅଭ୍ୟାସ କରନ୍ତୁ ।

ଜନନୀ ଦେବହୂତି କହିଲେ—ଆପଣଙ୍କ ଆଦେଶ ଅନୁସାରେ ମୁଁ ଯଥାଶକ୍ତି ଏହି ଦେହର ଅଭ୍ୟାସ ବଦଳାଇବାକୁ ଚେଷ୍ଟା କରିବି । ଆପଣ ତ ମୋ'ପାଖରେ ଅଛନ୍ତି । ଏହା ଶୁଣି କପିଳ କହିଲେ—ମା, କିଏ କାହା ପାଖରେ ରହେ ? ସମସ୍ତଙ୍କୁ ନିଜ ନିଜର ସାଧନା ଅନୁସାରେ ନିଜ ସ୍ଥାନବାଛିନେବାକୁ ପଡ଼େ । ଆପଣ ବର୍ତ୍ତମାନ ମୋତେ ଆଦେଶ ଦିଅନ୍ତୁ ।

ଦେବହୂତି ପଚାରିଲେ—କଣ ପାଇଁ । ଆପଣଙ୍କ ବାପାଙ୍କ ପରି ଆପଣ କଣ ମୋତେ ଏକା ଛାଡ଼ି ଚାଲିଯିବେ ? ଭଗବାନ୍ କପିଳ ମା'ଙ୍କୁ ବୁଝାଇବାକୁ ଯାଇ କହିଲେ—ମା, ସମସ୍ତଙ୍କୁ ଦିନେ ନା ଦିନେ ସବୁ କିଛି ଛାଡ଼ି ଚାଲି ଯିବାକୁ ପଡ଼ିବ । କାଳ ବାଧ୍ୟକରି ଆମକୁ ସମସ୍ତଙ୍କଠାରୁ ବିଚ୍ୟୁତ କରିବା ପୂର୍ବରୁ ଆମେ ନିଜେ ନିଜର ମମତା ତୁଟାଇ ଚାଲିଯିବା ଉଚିତ ହେବ । ତ୍ୟାଗର ଆଦର୍ଶ ମୋତେ ପ୍ରତିଷ୍ଠା କରିବାକୁ ପଡ଼ିବ । ମୁମୁକ୍ଷୁମାନଙ୍କୁ କିଛି ନା କିଛି ଉପଦେଶ ଦେବାକୁ ହେବ । ଜ୍ଞାନ ଲାଭ ପରେ ମଧ୍ୟ ଆପଣଙ୍କର ମୋ ପ୍ରତି କିଛି ମମତା ରହିଛି । ମୁଁ ଚାଲିଗଲେ ସେହି ମମତାର ବନ୍ଧନ ତୁଟିଯିବ । ତେଣୁ ମୋତେ ଆଦେଶ ଦିଅନ୍ତୁ । ଏହା କହି ଭଗବାନ୍ କପିଳ କମଣ୍ଡଳୁ ଧରି ଯିବାକୁ ବାହାରିଲେ ।

ମୈତ୍ରେୟ ମୁନି କହିଲେ—ହେ ବିଦୁର ! ଜ୍ଞାନୋଦୟ ହେବାପରେ ମଧ୍ୟ ମାତା ଦେବହୂତିଙ୍କ ମାତୃହୃଦୟ କପିଳଙ୍କୁ ଚାଲିଯାଉଥିବାର ଦେଖି କାନ୍ଦି ଉଠିଲା । ତାଙ୍କ ଦୁଇ ଆଖିରୁ ଅଶ୍ରୁଧାରା ବହି ଚାଲିଲା, କଣ୍ଠ ଅବରୁଦ୍ଧ ହୋଇଗଲା । ବାଛୁରୀକୁ ନେଇଯାଉଥିବାର ଦେଖି ଗାଈ ଯେପରି ଦୁଃଖିତ ହୁଏ, ମା ଦେବହୂତି ସେହିପରି

ଦୁଃଖିତା ହେଲେ । ପୁତ୍ରବିୟୋଗଂ ଦୁଃଖର ବନ୍ୟା ତତ୍ତ୍ୱଜ୍ଞାନରେ ବୁଡ଼ାଇଦେଲା । ମାୟା ମୋହ ରହିତ, ବିବେକ ଓ ବୈରାଗ୍ୟର ମୂର୍ତ୍ତି ପ୍ରତୀକ ସାକ୍ଷାତ୍ ଭଗବାନ କପିଳ ବ୍ରହ୍ମବାଦିନୀ ଜନନୀଙ୍କ ପାଦତଳେ ପ୍ରଣାମ କଲେ । ମା ମଧ୍ୟ ଗୁରୁଭାବରେ ତାଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କଲେ । ଏହିପରି ଉଭୟ ପରସ୍ପରଦ୍ୱାରା ଅଭିନନ୍ଦିତ ହୋଇ ପରସ୍ପରଠାରୁ ଦୂରେଇ ଗଲେ । ଭଗବାନ୍ କପିଳ ସରସ୍ୱତୀ ନଦୀ ତଟବର୍ତ୍ତୀ ସେହି ସିଦ୍ଧାଶ୍ରମରେ ମାଙ୍କୁ ଛାଡ଼ି ଭାରତର ପୂର୍ବର ଈଶାନ୍ୟ କୋଣ ଆଡ଼କୁ ଅଗ୍ରସର ହେଲେ ।

ଭଗବାନ୍ କପିଳ ସେଠାରୁ ଆସି ଗଙ୍ଗାନଦୀ କୂଳରେ ପହଞ୍ଚିଲେ । ଗଙ୍ଗା ଦେବୀଙ୍କ ଶୋଭା ଦେଖି ଦେଖି ତା'ର କୂଳେ କୂଳେ ଯାଇ ଗଙ୍ଗାସାଗର ନିକଟରେ ଉପସ୍ଥିତ ହେଲେ । ସେଠାରେ ଆକାଶଚାରୀ ସିଦ୍ଧ, ଗନ୍ଧର୍ବ, ଚାରଣ, ବିଦ୍ୟାଧର, ମୁନି, ଋଷି, ଦେବତା ଓ ଅପ୍ସରାଗଣ ସ୍ୱାଗତ ଜଣାଇ କପିଳଙ୍କ ସ୍ତୁତିଗାନ କଲେ । ସମୁଦ୍ରକୁ ଭଗବାନ୍ କହିଲେ—ମୋତେ ଟିକିଏ ସ୍ଥାନ ଦିଅ । ମୁଁ ଜଳ ମଧ୍ୟରେ ରହି ତପସ୍ୟା କରିବି, ସାଂଖ୍ୟାଚାର୍ଯ୍ୟ ଓ ସିଦ୍ଧମାନଙ୍କୁ ଉପଦେଶ ଦେବି ।

ସମୁଦ୍ର କହିଲେ—ପ୍ରଭୋ ! ମୁଁ ଟିକିଏ ଦୂରକୁ ଯାଇ ଆପଣଙ୍କପାଇଁ ଏଠାରେ ଟାପୁ ପ୍ରସ୍ତୁତ କରି ଦେଉଛି । ମର୍ତ୍ତ୍ୟ ଲୋକର ଅଧିବାସୀମାନେ ଆପଣଙ୍କୁ ଦର୍ଶନ କରିବାର ସୁଯୋଗ ଲାଭ କରିବେ । ଏହା ଶୁଣି କପିଳ କହିଲେ—ବର୍ଷରେ କେବଳ ମକର ସଂକ୍ରାନ୍ତି ଦିନ ତୁମେ ଏଠାରୁ ଦୂରକୁ ଚାଲିଯିବ । ସେହିଦିନ ଯେ ମୋତେ ଦର୍ଶନ କରିବ ସେ ଅନ୍ତିମ ପୁଣ୍ୟର ଅଧିକାରୀ ହେବ ।

## ତପସ୍ୟା

ସୁତ ସୁନି କେ କପିଲ ମାତୁ ତେଁ ଆଜ୍ଞା ଲୀହ୍ନୀ ।
ଗୃହ ତଜି ବନ କୁଁ ଗଓ୍ୱନ କରନ କୀ ଇଚ୍ଛା କୀହ୍ନୀ ॥
ଜ୍ଞାନ ଲାଭ ହ୍ୱ ଭୟୋ ଗଉ ଜନନୀ ବିୟୋଗ ଭୟୁ ।
ବଛରା ବିଛୁରତ ଗଉ ହୋହି ବ୍ୟାକୁଲ ଜେୟାଁ ଅତିଶୟୁ ॥
ସୂର ମୁନି ପୂଜିତ କପିଲ କରି ଗଙ୍ଗାସାଗର ତିଂଗ ଗୟେ ॥
ହରଷି ଉଦଧି ଆଲୟୁ ଦୟୋ ସୁଖାସୀନ ପ୍ରଭୁ
ତହଁ ଭୟେ ।

# ଦେବହୂତିଙ୍କ ବ୍ରହ୍ମପ୍ରାପ୍ତି

ଏବଂ ସା କପିଳୋକ୍ତେନ ମାର୍ଗେଣାଚିରତଃ ପରମ୍ ।
ଆତ୍ମାନଂ ବ୍ରହ୍ମନିର୍ବାଣଂ ଭଗବନ୍ତମବାପ ହ ॥
ତଦ୍‌ବୀରାସୀତ୍ ପୁଣ୍ୟତମଂ କ୍ଷେତ୍ରଂ ତ୍ରୈଲୋକ୍ୟ ବିଶ୍ରୁତମ୍ ।
ନାମ୍ନା ସିଦ୍ଧପଦଂ ଯତ୍ର ସା ସଂସିଦ୍ଧିମୁପେୟୁଷୀ ॥

(ଭାଗ-୩-୩୩-୩୦,୩୧)

## ରୂପ୍ ପଦ୍ୟ

କନ୍ୟା ନିଜ ଗୃହ ଗଲିଁ ପୁତ୍ର ପତିନେ ଘର ତ୍ୟାଗେ ॥
ମାତ ହୃଦୟ ବୈରାଗ୍ୟ ଜ୍ଞାନ ସ୍ନନ ଅତିଶୟ ଜାଗେ ॥
ବହୁ ବୈଭବସମ୍ପନ୍ନ ସର୍ବସୁଖମୟ ତଜି ନିଜ ଘର ।
ସତ୍ ଚିତ୍ ଆନନ୍ଦ ରୂପ ବ୍ରହ୍ମେ ନିରତ ନିରନ୍ତର ॥
ବସ୍ତ୍ରହୀନ ସବ୍ ଖୁଲେ କଚ ତପୋ ଯୋଗମୟ ଦିବ୍ୟତନୁ ।
ପରମାନନ୍ଦ ନିମଗ୍ନ ମନ ସିଦ୍ଧି ଭଣି ସାକାର ଜନୁ ॥

ମନୀଷୀମାନଙ୍କ ମଧ୍ୟରେ ନିତ୍ୟ, ମୁକ୍ତ, ବଦ୍ଧ ଓ ମୁମୁକ୍ଷୁଭାବେ ଚାରିଗୋଟି ଜୀବ-ଗୋଷ୍ଠୀ ଅଛନ୍ତି । ଯେଉଁ କାଳାବଧି ନାଳ ରଖି ସୃଷ୍ଟିକାର୍ଯ୍ୟରେ ସହାୟତା କରନ୍ତି ସେମାନେ ନିତ୍ୟ ଜୀବ ଭାବେ ଅଭିହିତ, ମନୁ, ପ୍ରଜାପତି, ଇନ୍ଦ୍ର ଆଦି ନିତ୍ୟଙ୍କର ଶ୍ରେଣୀର ଅନ୍ତର୍ଗତ । ଅନିତ୍ୟ, ନଶ୍ୱର ପଦାର୍ଥରେ ଯେଉଁମାନଙ୍କର ମମତା ନାହିଁ, ଏବଂ ନିଜର କର୍ତ୍ତୃତ୍ୱ ନାହିଁ ସେମାନେ ମୁକ୍ତଜୀବ । ନାରଦ, ଶୁକ, ସନକାଦି ମୁକ୍ତଙ୍କର ଭାବେ ପରିଚିତ, ଅଜ୍ଞାନ, ଅସତରେ ସଦ୍‌ଭାବନା, ଅସତ୍ ସହିତ କର୍ମ କରୁଥିବା ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷ, ଲତା ପ୍ରଭୃତିଙ୍କୁ ବଦ୍ଧଜୀବ କୁହାଯାଏ, ଏହି ଦୃଶ୍ୟମାନ ଜଗତର ବାହାରେ ଆଉ କଣ ଅଛି ବୋଲି ମନରେ ଯାହାର ଜିଜ୍ଞାସା

ସୃଷ୍ଟି ହୁଏ ସେ ମୁମୁକ୍ଷୁ ଜୀବଶ୍ରେଣୀରେ ଅନ୍ତର୍ଭୁକ୍ତ । ଅନ୍ୟଯୁଗରେ ନିତ୍ୟ ଓ ମୁକ୍ତ ପୁରୁଷଙ୍କ ଆବିର୍ଭାବ ମିଳୁଥିଲା । ଏବେ ବଦ୍ଧ ଓ ମୁମୁକ୍ଷୁ ଏହି ଦୁଇପ୍ରକାର ଜୀବ ଦେଖାଯାଉଛନ୍ତି, ପରମାତ୍ମା, ପରଲୋକ ସମ୍ବନ୍ଧରେ ଯାହାର ଅନୁରାଗ ନାହିଁ, ସ୍ୱାର୍ଥବନ୍ଧନରେ କର୍ମରେ ଆସକ୍ତ ରହି ସାଂସାରିକ ବିଷୟସୁଖ ପ୍ରାପ୍ତି ନିମିତ୍ତ ଯତ୍ନଶୀଳ ଅଛନ୍ତି, ସେମାନେ ବଦ୍ଧଜୀବ, ଖାଇବା ପିଇବା, ପିଲାଛୁଆ ସଂଖ୍ୟା ବଢ଼ାଇବା, ଶରୀର ଓ ପରିବାରର ପାଳନ ପୋଷଣ କରିବା ଏମାନଙ୍କର ନିତ୍ୟ ନୈମିତ୍ତିକ କାର୍ଯ୍ୟ । ଯେଉଁମାନଙ୍କ ମନରେ ସଂସାରର ପ୍ରତିଷ୍ଠାପ୍ରତି ଜିଜ୍ଞାସା ନାହିଁ, ସଂସାର ବନ୍ଧନରୁ ମୁକ୍ତହେବାର ଅଭିପ୍ରାୟ ନାହିଁ, ବିଷୟ ସୁଖକୁ ସର୍ବଶ୍ରେଷ୍ଠ ସୁଖ ବୋଲି ଭାବନା ଥାଏ, ସେମାନେ ମନୁଷ୍ୟ ବା ପଶୁପକ୍ଷୀ ଯେ କୌଣସି ଯୋନିରେ ଜନ୍ମ ହେଲେ ମଧ୍ୟ ସମସ୍ତେ ବଦ୍ଧଜୀବଶ୍ରେଣୀରେ ପରିଗଣିତ ହୁଅନ୍ତି ।

ଏହି ଅନିତ୍ୟ ସଂସାର ଯେଉଁମାନଙ୍କୁ ବନ୍ଧନ ଭଳି ପ୍ରତୀତ ହୁଏ ଏବଂ ସେଥିରୁ ମୁକ୍ତ ହେବାର ଇଚ୍ଛା ଜାତ ହୁଏ, ସେମାନଙ୍କୁ ମୁମୁକ୍ଷୁ କହନ୍ତି । ଶାସ୍ତ୍ରମାନଙ୍କର ଉପଦେଶ କେବଳ ସେହିମାନଙ୍କ ପାଇଁ ଉଦ୍ଦିଷ୍ଟ । ମୁକ୍ତ ସର୍ବଦା ମୁକ୍ତ ରହେ । ନିତ୍ୟ ମଧ୍ୟ ସାମର୍ଥ୍ୟବାନ ଥାଏ, ବଦ୍ଧକୁ ଉପଦେଶ ଦେବା ନିରର୍ଥକ, ଯେଉଁମାନେ ପୋଖରୀର ବେଙ୍କେ ପାଣିରେ ପଶି ପେଟେ ପାଣି ପିଇ ସାରିଛନ୍ତି, ସେମାନଙ୍କୁ ଗଙ୍ଗାଜଳ ଦେବା ବୃଥା । ସେ କେବେହେଲେ ଗଙ୍ଗାଜଳ ପିଇପାରିବେ ନାହିଁ । ଯେଉଁମାନଙ୍କର ଜ୍ଞାନପିପାସା ଅଛି,ସେମାନଙ୍କୁ ପରମାର୍ଥ ଉପଦେଶ ଦେବା ବାଞ୍ଛନୀୟ । ଜିଜ୍ଞାସୁ ପୁରୁଷର ଜ୍ଞାନ ଯେତିକି ଯେତିକି ବଢ଼ିଥାଏ ତା ଦୃଷ୍ଟିରେ ଏହି ଯଶବାନ୍ ଅନିତ୍ୟ ସଂସାର ସେତିକି ସେତିକି ନିରର୍ଥକ ପ୍ରତୀତ ହୁଏ । ସେ ଗୋଟିଏ ପରେ ଗୋଟିଏ ଜ୍ଞାନର ଭୂମିକା ବା ସ୍ତର ଅତିକ୍ରମ କରି ଜୀବନ୍ମୁକ୍ତ ହୁଏ; କିନ୍ତୁ ମମତା, ଅହଙ୍କାର, ଅନିତ୍ୟ ଶରୀର ପ୍ରତି ଅଧିକ ଅନୁରକ୍ତି, ମନରେ ନାନାପ୍ରକାର ସଂକଳ୍ପ ବିକଳ୍ପ କରିବା, ସ୍ୱପ୍ନରେ ସାଂସାରିକ ପଦାର୍ଥର ଚିନ୍ତା, ବୃଦ୍ଧଙ୍କ ଭଳି ଚେଷ୍ଟାହୀନ ହେବା, ଏ ସବୁ ଅଜ୍ଞାନତାର ଲକ୍ଷଣ, ଦୈବବଶତଃ ଭଗବତ୍ କୃପା ବଳରେ ଜୀବ ଏହି ଅଜ୍ଞାନତାରୁ ମୁକ୍ତହୋଇ ଆତ୍ମଜିଜ୍ଞାସା କଲେ ତାକୁ ଶାସ୍ତ୍ରଜ୍ଞାନର ଅଧିକାରୀ ଓ ମୁମୁକ୍ଷୁ କୁହାଯାଏ । ଜ୍ଞାନର ଅସଂଖ୍ୟ ଭୂମିକା ବା ସ୍ତର ରହିଛି; କିନ୍ତୁ ତତ୍ତ୍ୱଜ୍ଞମାନେ ମୁଖ୍ୟତଃ ସାତୋଟି ଭୂମିକାକୁ ସ୍ୱୀକାର କରନ୍ତି, ତନ୍ମଧ୍ୟରେ ଚାରୋଟି ସିଦ୍ଧରୂପା, ଓ ତିନୋଟି ସାଧକ ରୂପା ।

ଜ୍ଞାନରେ ଭୂମିକା ମଧ୍ୟରେ ପ୍ରଥମଟିକୁ ଶୁଭେଚ୍ଛା କୁହାଯାଏ । ଯେତେବେଳେ ସାଂସାରିକ ସୁଖଭୋଗରୁ ନିବୃତ୍ତ ହୋଇ ଜୀବର ହୃଦୟରେ ଏହି ଭାବନା ଜାଗ୍ରତ ହୁଏ ଯେ, ମୋ ଜୀବନ ବ୍ୟର୍ଥ ହୋଇଗଲା, ମୁଁ ପଶୁପକ୍ଷୀଙ୍କ ଭଳି ବୃଥା ବିଷୟ

ଭାବନାରେ ବୃତ୍ତି ଗଲା, ଶାସ୍ତ୍ରଚର୍ଚ୍ଚା କ ସତ୍ସଙ୍ଗ କଲା ନାହିଁ ସେତେବେଳେ ତାର ଭାଗ୍ୟ ଉଦୟ ହେଲା ବୋଲି ବୁଝିବାକୁ ହେବ, ଏହାହିଁ ଜ୍ଞାନର ପ୍ରଥମ ଭୂମିକା, ଏଭଳି ଇଚ୍ଛା ଜାଗ୍ରତ ହେବା ପରେ ପୁରୁଷ ଉନ୍ନତ ପଥରେ ଅଗ୍ରସର ହୋଇଥାଏ ।

ଦ୍ୱିତୀୟ ଭୂମିକାରେ 'ନାମ ବିଚାରଣା'। ଶୁଭେଚ୍ଛା ଜାତ ହେବା ପରେ ସାଧୁ ସଜ୍ଜନଙ୍କ ସଙ୍ଗଲାଭ, ଶାସ୍ତ୍ର ଶ୍ରବଣରେ ଅଭ୍ୟାସ ଓ ବିଷୟବାସନା ପ୍ରତି ବୈରାଗ୍ୟ ପୋଷଣ କରିବା ଅବସ୍ଥାକୁ ବିଚାରଣା କୁହାଯାଏ । ସତ୍ସଙ୍ଗ ଓ ସତ୍ ଅସତ୍ ବିଚାର କରିବା ମଧ୍ୟରେ ମନ ଧୀରେ ଧୀରେ ସୂକ୍ଷ୍ମ ଅବସ୍ଥାରେ ଉପନୀତ ହୁଏ । ଚିତ୍ତର ଏହି ସୂକ୍ଷ୍ମସ୍ଥିତିକୁ 'ତନୁମାନସା' କହନ୍ତି । ଏହାହିଁ ଜ୍ଞାନର ତୃତୀୟ ଭୂମିକା । ଏ ତିନୋଟି ଅଭ୍ୟାସ କାଳୀନ ହୋଇଥିବାରୁ 'ସାଧନରୂପା' ଭାବେ ଅଭିହିତ । ଚତୁର୍ଥ ଭୂମିକାର ନାମ 'ସତ୍ତ୍ୱାପତ୍ତି' । ଶୁଭେଚ୍ଛା, ବିଚାରଣା ଓ ତନୁମାନସ ଏହି ତିନୋଟି ଅବସ୍ଥାରେ ଜୀବର ଦୃଢ଼ତା ଆସିବା ପରେ ସେ ସଂସାରବିରାଗୀ ହୋଇଯାଏ ଏବଂ ଶ୍ରବଣ, ମନନ, ନିଦିଧ୍ୟାସନଦ୍ୱାରା ଆତ୍ମସ୍ଥିତି ଅନୁଭବ କରିବାକୁ ଲାଗେ । ସେତେବେଳେ ଆମର ସାଧନାବସ୍ଥା ସମାପ୍ତ ହେଲା ବୋଲି ବୁଝିବାକୁ ହେବ, ଆମେ ଯଥାର୍ଥ ବ୍ରହ୍ମଜ୍ଞାନର ଅଧିକାରୀ ହେବାକୁ ଯାଉଛୁ ।

ସାଧନାବସ୍ଥା ଅତିକ୍ରମ କରିବା ପରେ ସାଂସାରିକ ମାୟା କିଛି ବାଧା ଦିଏ ନାହିଁ । ଅଣିମା, ମହିମାଦି ଦିବ୍ୟ ବିଭୂତି ଅତି ନିକଟବର୍ତ୍ତୀ ହୁଏ । ଏ ସବୁ ବିଭୂତିରେ ଆସକ୍ତ ନ ହୋଇ ବ୍ରହ୍ମ ବିଷୟରେ ନିଜର ଲକ୍ଷ୍ୟ ରଖିବାର ନାମ 'ଅସଂସକ୍ତ' । ଏହାକୁ ଜ୍ଞାନର ପଞ୍ଚମ ଭୂମିକା କହନ୍ତି । ଅସଂସକ୍ତ ଅବସ୍ଥାରେ ଚିତ୍ତ ସର୍ବଦା ଆତ୍ମାନନ୍ଦରେ ନିମଗ୍ନ ରହେ । ଯୋଗ୍ୟ ଅଧିକାରୀ ଉପସ୍ଥିତ ହେଲେ, ତାକୁ ଆତ୍ମଜ୍ଞାନରେ ଉପଦେଶ ଦିଆଯାଇପାରେ । ଜ୍ଞାନର ଷଷ୍ଠ ଭୂମିକାରେ ସଂସାର ଆଉ ଦେଖାଯାଏ ନାହିଁ, ଶରୀର ଜ୍ଞାନ ରହେ ନାହିଁ । ଏ ଅବସ୍ଥାରେ ଲୋକ ଚାଲୁଛି ତ ଚାଲୁଛି । ବସିଛି ତ ବସିଛି, ଦେହରେ ବସ୍ତ୍ର ନାହିଁ ତ ନାହିଁ । କେହି ଜଣେ ଶରୀରର କୌଣସି ଅଂଶ କାଟି ଦେଲାଣି ତ ସେଥିପାଇଁ କୌଣସି ବ୍ୟଥା ନାହିଁ । କୌଣସି ପ୍ରକାର ସୁଖ ବା ଦୁଃଖର ଅନୁଭୂତି ନାହିଁ । ଏହାର ନାମ 'ପଦାର୍ଥାଭାବନୀ' ଭୂମିକା । ଏହି ଛଅଟି ଭୂମିକାରେ ପରାକାଷ୍ଠା ଅର୍ଜନ କରିବା ପରେ ସପ୍ତମ ଅର୍ଥାତ୍ 'ତୁରୀୟ' ଭୂମିରେ ବ୍ୟକ୍ତି ଉପନୀତ ହୁଏ । ଏହି ସାତୋଟି ଭୂମିକା ମଧ୍ୟରୁ ପ୍ରଥମ ତିନୋଟିରେ ଜାଗ୍ରତ ଜଗତ୍, ଚତୁର୍ଥରେ ବ୍ରହ୍ମଜ୍ଞାନୀ ଏବଂ ପରବର୍ତ୍ତୀ ତିନୋଟିରେ ଜୀବନ୍ମୁକ୍ତ ପୁରୁଷ ଅବସ୍ଥିତ ଥାଏ ।

ଜ୍ଞାନର ଶୁଭେଚ୍ଛା ଜାତ ହେବା ଭାଗ୍ୟର କଥା । ସାଧନାଦ୍ୱାରା ବ୍ରହ୍ମଜ୍ଞାନ ଲାଭକଲେ ଲୋକ ସମସ୍ତ ଦ୍ୱନ୍ଦ୍ୱରୁ ମୁକ୍ତ ହୋଇଯାଏ । ବ୍ରହ୍ମଜ୍ଞାନୀ ଜଳମଧ୍ୟସ୍ଥ ପଦ୍ମପତ୍ର ଭଳି ନିର୍ଲିପ୍ତ ଭାବରେ ସମସ୍ତ କାର୍ଯ୍ୟ କରିଯାଏ । ଆଚାର୍ଯ୍ୟ ଭାବେ ସେ ଉପଦେଶ ଦିଅନ୍ତି । ସେମାନେ ରାଜାଭାବେ ଶାସନ ଚଳାନ୍ତି, ତ୍ୟାଗୀଭାବେ ବଣରେ ବୁଲନ୍ତି, ସିପାହୀମାନେ ଯୁଦ୍ଧ କରନ୍ତି । ବେପାର ବଣିକ କରି ମଧ୍ୟ ବ୍ରହ୍ମଜ୍ଞାନୀ ତା'ର ଫଳାଫଳରେ ଆସକ୍ତ ରହେ ନାହିଁ । ରାଜର୍ଷି ଜନକ, ଭଗବାନ୍ ବେଦବ୍ୟାସ ନାରଦ ଆଦି ଏହି ଭୂମିକାରେ ରହି ଲୋକଙ୍କର କଲ୍ୟାଣ କରିଯାଇଛନ୍ତି ।

ପଞ୍ଚମ ଭୂମିକା ବା ଅସଂସକ୍ତିରେ ରହି ଜୀବନ୍ମୁକ୍ତ ପୁରୁଷ ଦୃଶ୍ୟଜଗତ୍ ସମ୍ବନ୍ଧଶୂନ୍ୟ ଓ ପରାପର ଜ୍ଞାନରହିତ ହୋଇଯାଏ । ଚତୁର୍ଥ ଭୂମିକାରେ ଥିବା ବ୍ରହ୍ମଜ୍ଞାନୀ ପୁରୁଷର ବ୍ୟବହାର ପଞ୍ଚମ ଭୂମିକାରେ ରହେନାହିଁ । ଜଡ଼ ଭରତ, ଭଗବାନ୍ ଦତ୍ତାତ୍ରେୟ ପ୍ରଭୃତି ଏହି ଭୂମିକାରେ ବିଚରଣ କରନ୍ତି । ଷଷ୍ଠ ଭୂମିକାରେ ବାହ୍ୟଜ୍ଞାନ ରହେ ନାହିଁ । ଋଷଭଦେବ ଆଦି ଅବଧୂତଗଣ ଏହି ଭୂମିକାର ପ୍ରଦର୍ଶକ, କିନ୍ତୁ ସପ୍ତମ ଭୂମିକାରେ ଶରୀରର ଆଉ କୌଣସି କ୍ରିୟା ନାହିଁ । ଏହାହିଁ ସର୍ବୋ-ତ୍କୃଷ୍ଟ ଅବସ୍ଥା । ଏ ଅବସ୍ଥାରେ ଶରୀର ଏକୋଇଶ ଦିନରୁ ଅଧିକ କାଳ ରହେ ନାହିଁ । ଭଗବତୀ ଦେବହୂତି କଠୋର ଭକ୍ତିଯୋଗଦ୍ୱାରା ଏହି ସପ୍ତମ ଭୂମିକାରେ ଉପନୀତ ହୋଇଛନ୍ତି ।

ଭଗବାନ୍ କପିଳ ବଣକୁ ଚାଲିଗିବାପରେ ଭଗବତୀ ଦେବହୂତି ସର୍ବସୁଖମୟ ସେହି ବିମାନ ଗୃହକୁ ଫେରିଆସିଲେ । ସମସ୍ତ ପ୍ରକାର ଗାର୍ହସ୍ଥ୍ୟ ସୁଖକୁ ଜଳାଞ୍ଜଳି ଦେଇ ସରସ୍ୱତୀରେ ତ୍ରିସନ୍ଧ୍ୟାସ୍ନାନ ଓ ଏକବସ୍ତ୍ରା ହୋଇ ସର୍ବଦା ଧ୍ୟାନମଗ୍ନ ରହିଲେ । ଭଗବାନ୍ କର୍ଦ୍ଦମଙ୍କ ତପୋବଳଦ୍ୱାରା ପ୍ରାପ୍ତ ସେହି ଦିବ୍ୟ ବିମାନ ଗୃହରେ ରହି ମଧ୍ୟ ଦେବହୂତି କୌଣସି ବସ୍ତୁ ଉପଭୋଗ କଲେ ନାହିଁ । ଦୁଗ୍ଧଫେନନିଭ ଶଯ୍ୟା ଶୋଭି ଗଜଦନ୍ତ ପଲଙ୍କ ଶୂନ୍ୟ ପଡ଼ି ରହିଲା । ସ୍ୱର୍ଣ୍ଣ, ରୌପ୍ୟ ନିର୍ମିତ ବିଭିନ୍ନ ଉପାଦାନ ଓ ବହୁମୂଲ୍ୟ ବସ୍ତ୍ର, ଆଭରଣ ପୂର୍ବପରି ଥିଲେ ମଧ୍ୟ ଦେବହୂତି ସେଆଡ଼କୁ ଚାହିଁଲେ ନାହିଁ । ବାରମ୍ବାର ପରମେଶ୍ୱର ପୁତ୍ରର ଉପଦେଶ ତାଙ୍କ ମନରେ ପଡ଼ିଯାଉଥିଲା ।

ଭଗବାନ୍ କପିଳଙ୍କ ପ୍ରଦର୍ଶିତ ଧ୍ୟାନମାର୍ଗରେ ଦେବହୂତି ଅଭ୍ୟାସ କରିବାକୁ ଲାଗିଲେ । ଧୀରେ ଧୀରେ ତାଙ୍କ ମନରୁ ସଂସାରର ଦୃଶ୍ୟ ଅଦୃଶ୍ୟ ହୋଇଗଲା । ନିରନ୍ତର ଧ୍ୟାନ ମଗ୍ନ ରହିବା ଫଳରେ ଜୀବଭାବ ମଧ୍ୟ ନିବୃତ୍ତ ହେଲା । ଶରୀର ଜ୍ଞାନ

ରହିଲା ନାହିଁ । ଖାଦ୍ୟ ପେୟର ଆବଶ୍ୟକତା ପଡ଼ିଲା ନାହିଁ । ଅଭୁକ୍ତ ଅବସ୍ଥାରେ ମଧ୍ୟ ଦେବହୂତି ପରମାନନ୍ଦଙ୍କ ପ୍ରଭାବରୁ ଦିବ୍ୟ ତେଜ ଧାରଣ କଲେ ।

ମହାତ୍ମା ମୈତ୍ରେୟ କହୁଛନ୍ତି—ବିଦୁର ! ମାତା ଦେବହୂତି ପୁତ୍ର ଭଗବାନ୍ କପିଳଙ୍କ ଉପଦେଶ ଅନୁସାରେ ଅଳ୍ପକାଳ ମଧ୍ୟରେ ସିଦ୍ଧିଲାଭ କଲେ । ଆତ୍ମ-ସ୍ୱରୂପ, **ନିତ୍ୟ,** ମୁକ୍ତ , ପରଂବ୍ରହ୍ମ-ପରମାତ୍ମାଙ୍କୁ ଲାଭ କରିଥିଲେ । ସେ ଯେଉଁସ୍ଥାନରେ ସିଦ୍ଧିଲାଭ କରିଥିଲେ ତାହା 'ସିଦ୍ଧିପଦ' ନାମରେ ପ୍ରସିଦ୍ଧ ହେଲା । ଏହାକୁ ଲୋକେ ମାତୃଗୟା ନାମରେ ନାମିତ କରିଛନ୍ତି ।

## ଛପ୍ପୟ

**ଛଅ ଭୂମିକା ପାର କରି ସପ୍ତମୀଂ ମହିଂ ନିଶିଦିନ ।**
**ରହେଁ କରେ ନହିଁ କଛୁ କାଜ ଭଗବତ ଚିନ୍ତନ ଦିନ ।**
**ୟୋଁ ମାତା ନେ 'ତୁରୀୟ' ଭୂମିକା ପ୍ରକଟ ଦିଖାଈ ।**
**ପ୍ରେମ ଯୋଗ ତେ ପରା ଭକ୍ତି କୀ ପଦବୀ ପାଈ ।**
**ମାତୃଗୟା ବୋ ସିଦ୍ଧପଦ ସିଦ୍ଧି ମାତୁ ପାଈ ଜହାଁ ।**
**ଦୈହିକ ମଲ ତେ ରହିତ ତନୁ ସରିତାବନି ବହରେ ତହାଁ ॥**

# ଦତ୍ତାତ୍ରେୟ ଭଗବାନଙ୍କ ଅବତାରର ପୃଷ୍ଠଭୂମି

ଅତ୍ରେର୍ଗୃହେ ସୁରଶ୍ରେଷ୍ଠାଃ ସ୍ଥିତ୍ୟୁତ୍ପତ୍ତ୍ୟନ୍ତହେତବଃ ।
କିଞ୍ଚିଚ୍ଚିକୀର୍ଷବୋ ଜାତା ଏତଦାଖ୍ୟାହି ମେ ଗୁରୋ ॥
(ଭାଗ-୪-୧-୧୬)

ଛପ୍‌ପୟ

ଦେବହୂତିକୀ କଥା ସୁନୀ ମନୁପୁତ୍ରୀ ମଁଝଲୀ ।
ଆକୂତି ରୁଚ ବରୀ ପ୍ରସୂତୀ ପୁତ୍ରୀ ପୁନ ପିଛଲୀ ॥
ଦକ୍ଷନାରି ବନୀ ଜନେ ପୁତ୍ର ପୁତ୍ରୀ ଅତିଶ୍ରେଷ୍ଠା ।
ଯଜ୍ଞ ପୁରୁଷ ଅବତାର ଜନନୀ ଆକୂତି ଜେଷ୍ଠା ॥
ଅନସୂୟା କର୍ଦ୍ଦମ ସୁତା ତୀନ ଦେବ ବଶ କରି ଲୟେ ।
ପୁତ୍ର ହୋହିଁ ପ୍ରକଟେଁ ଉଦର ତେଁ
ତୀନୋଂମିଲବରଦୟେ ॥

ଭଗବାନ୍ ଶ୍ରୀହରି ଅନେକ ଅନେକ ରୂପ ଧାରଣ କରି ଏହି ଜଗତ୍‌ରେ ବିହାର କରୁଛନ୍ତି । ସେ ହିଁ କର୍ତ୍ତା ଓ ସେ ହିଁ ଭୋକ୍ତା । କାର୍ଯ୍ୟ, କାରଣ, ଉତ୍ପତ୍ତି, ପାଳନ ଓ ବିନାଶର ମୂଳ କାରଣ । ଅଗ୍ନି, ବାୟୁ, ଜଳ ଭଳି ଏକ ପ୍ରଭୁରୂପ ଓ ଆକୃତି ଭେଦରେ ବହୁଧା ପ୍ରତିଭାତ ହୁଅନ୍ତି । ସେ ଯେତେବେଳେ ବର୍ତ୍ତମାନ, ସେତେବେଳେ ବନ୍ଧନ ବା ମୋକ୍ଷର ପ୍ରଶ୍ନ ଉଠେନାହିଁ । ଏ ସମସ୍ତ ତାଙ୍କର ଲୀଳା ଖେଳାର ଅନ୍ତର୍ଭୁକ୍ତ । ସମଗ୍ର ସୃଷ୍ଟି ତାଙ୍କର ଇଚ୍ଛାର ଫଳ ବୋଲି ପ୍ରତୀତ ହୁଏ । ଜୀବ ମଧ୍ୟରେ କର୍ମ ଓ ଭୋଗର ସେ ହିଁ ନିୟାମକ । ସେ ନିଜ ନାଭିକମଳରୁ ବ୍ରହ୍ମାଙ୍କୁ ଏବଂ ବ୍ରହ୍ମାଣ୍ଡରେ ସୃଷ୍ଟି କରାଇ ଆଜାଂଶ୍ୟାର ମୂଳ ସ୍ରଷ୍ଟା । ବ୍ରହ୍ମାଙ୍କ ଦ୍ୱାରା କାର୍ଯ୍ୟ ସାଧିତ ନ ହେଲେ ସେ ନିଜେ ଅବତାର ଗ୍ରହଣ କରନ୍ତି । ସେ ନିଜେ ବ୍ରହ୍ମା, ପ୍ରଜାପତି ଆଦି ରୂପରେ ସୃଷ୍ଟି ରଚନା କରନ୍ତି ଏବଂ ଅବତାର ରୂପରେ ପାଳନ ପୋଷଣ ଏବଂ କାଳ, ଯମ, ରୁଦ୍ର ରୂପରେ ସୃଷ୍ଟି ସଂହାର କରନ୍ତି ।

ବିଦୁର ପ୍ରଶ୍ନ କଲେ—ଭଗବାନ୍ ! ଆପଣଙ୍କଠାରୁ ଶୁଣିଛୁ ଯେ, ବ୍ରହ୍ମା ନିଜ ଅଙ୍ଗରୁ ମରୀଚ୍ୟାଦି ଦଶ ପ୍ରଜାପତି ଓ ଋଷିଗଣଙ୍କୁ ଜନ୍ମ ଦେଇଥିଲେ । ପୁଣି ସେ ଦୁଇ ଭାଗ ହୋଇ ସ୍ୱାୟଂଭୁବ ମନୁ ଓ ଆଦି ସ୍ତ୍ରୀ ଶତରୂପା ରୂପ ଗ୍ରହଣ କରିଥିଲେ । ତାଙ୍କର ପ୍ରିୟବ୍ରତ, ଉତ୍ତାନପାଦ ନାମରେ ଦୁଇ ପୁଅ ଓ ଆକୂତି, ଦେବହୂତି ଓ ପ୍ରସୂତି ନାମରେ ତିନୋଟି ଝିଅ ଜନ୍ମ ହୋଇଥିଲେ । ଆପଣ ପ୍ରଥମେ ବଡ଼ଝିଅ ଆକୂତିର କଥା ନ କହି ପ୍ରଥମେ ଦେବହୂତିଙ୍କ ପ୍ରସଙ୍ଗ ବର୍ଣ୍ଣନା କଲେ । ବର୍ତ୍ତମାନ, ଆପଣ ସେହି ତିନି କନ୍ୟାଙ୍କ ପୁତ୍ର, ପୌତ୍ରମାନଙ୍କ କଥା କହନ୍ତୁ । କାରଣ ସେହି ତିନିଜଣ ପ୍ରଜାପତିଙ୍କ ପତ୍ନୀ ହୋଇଥିଲେ । ସେହିମାନଙ୍କଦ୍ୱାରା ସୃଷ୍ଟି ସମୃଦ୍ଧ ହୋଇଥିଲା । ବଡ଼ ବଡ଼ ବ୍ରହ୍ମର୍ଷି, ରାଜର୍ଷି ଓ ଅବତାର ସେହି ତିନିଜଣଙ୍କ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ସେମାନେ ନିଜ ନିଜର ଭଗବଦ୍ ଭକ୍ତିଦ୍ୱାରା ତ୍ରୈଲୋକ୍ୟଙ୍କୁ ପବିତ୍ର କରିଥିଲେ ।

ମହାମୁନି ମୈତ୍ରେୟ କହିଲେ—ବିଦୁର ! ଭଗବାନ୍ ସ୍ୱାୟଂଭୁବ ମନୁଙ୍କ ବଂଶଧରମାନେ ସମଗ୍ର ପୃଥିବୀରେ ଧର୍ମର ପ୍ରଚାର ଓ ପ୍ରସାର କରିଥିଲେ । ସେହି ବଂଶରେ ଭଗବାନଙ୍କ ବହୁ ଅବତାର ସମ୍ଭବ ହୋଇଥିଲା । ମନୁଙ୍କ ପୁତ୍ର ପ୍ରିୟବ୍ରତ ଓ ଉତ୍ତାନପାଦଙ୍କ ଚରିତ ମୁଁ ପରେ କହିବି । ବର୍ତ୍ତମାନ କନ୍ୟାମାନଙ୍କ କଥା ଶୁଣନ୍ତୁ । ମନୁଙ୍କ ଜ୍ୟେଷ୍ଠା କନ୍ୟା ଆକୂତି ରୁଚି ନାମକ ପ୍ରଜାପତିଙ୍କୁ ବିବାହ କରିଥିଲେ ।

ବିଦୁର ପଚାରିଲେ—ପ୍ରଭୋ ପୁତ୍ରିକାଧର୍ମ କଣ ? ତାହାର ବିଧିବିଧାନ କହନ୍ତୁ । ବିଦୁରଙ୍କ ପ୍ରଶ୍ନର ଉତ୍ତର ଦେଇ ମୈତ୍ରେୟ କହିଲେ—କନ୍ୟାଦାନ ସମୟରେ ବରକୁ ପ୍ରତିଜ୍ଞା କରାଇ ନିଆଯାଏ ଯେ, ଏହି କନ୍ୟାର ଯେଉଁ ପୁତ୍ର ହେବ, ସେ କନ୍ୟା ପିତାର ପୁନଶ୍ଚରେ ପରିଚିତ ହେବ । ଏହାହିଁ ପୁତ୍ରିକା ଧର୍ମ । ନିଜର ପୁତ୍ର ଥାଉଁ ଥାଉଁ ମନୁ ଏପରି କରିବାର କାରଣ ହେଉଛି ଯେ, ସେତେବେଳେ ସୃଷ୍ଟି ସେପରି ବ୍ୟାପକ ହୋଇ ନ ଥିଲା । ସମସ୍ତେ ଚାହୁଁଥିଲେ ତାଙ୍କର ବହୁ ପୁତ୍ର ହୁଅନ୍ତୁ । ଯାହାର ବହୁ ସନ୍ତାନ ଥିଲେ, ସେ ସମାଜରେ ଆଦୃତ ଓ ଶ୍ରେଷ୍ଠସ୍ଥାନ ଲାଭ କରୁଥିଲେ । ବହୁ ପୁତ୍ରର ଜନକଭାବେ ସମ୍ମାନିତ ହେବା ନିମିତ୍ତ ମନୁ ଏହିଭଳି ପୁତ୍ରିକା ପୁତ୍ରର ବ୍ୟବସ୍ଥା କରିଥିଲେ । ଖୁବ୍ ସମ୍ଭବତଃ ସେ ଧ୍ୟାନବଳରେ ଜାଣିଥିଲେ ଯେ, ଆକୂତିର ଗର୍ଭରେ ଭଗବାନ ଅବତାର ଗ୍ରହଣ କରିବେ । ପ୍ରକୃତରେ ଭଗବାନ ବିଷ୍ଣୁ ଯଜ୍ଞ ରୂପରେ ଅବତୀର୍ଣ୍ଣ ହେଲେ । ବିଷ୍ଣୁ ଯେଉଁଠି ଲକ୍ଷ୍ମୀ ମଧ୍ୟ ସେଇଠି ରହନ୍ତି । ତେଣୁ ଦକ୍ଷିଣା ନାମରେ ଲକ୍ଷ୍ମୀଙ୍କ ଆବିର୍ଭାବ ଘଟିଥିଲା । ଏକ ମନ୍ୱନ୍ତର ପର୍ଯ୍ୟନ୍ତ ଯଜ୍ଞ ତ୍ରିଲୋକ ପାଳନ ଓ ଶାସନର ଆଦର୍ଶ ପ୍ରତିଷ୍ଠା କରିଥିଲେ ।

ବ୍ରହ୍ମାଙ୍କର ଗୋଟିଏ ଦିନରେ ଚଉଦ ଜଣ ମନୁ ବଦଳି ଯାଆନ୍ତି । ମନ୍ୱନ୍ତର କାଳରେ ଭଗବାନ୍ ନିଜର ଛଅଟି ରୂପ ରଖି ପ୍ରଜା ପାଳନ କରନ୍ତି । ମନୁ, ମନୁପୁତ୍ର, ଦେବଗଣ, ଇନ୍ଦ୍ର, ସପ୍ତର୍ଷି ଓ ଭଗବାନ୍‌ଙ୍କ ଏକ ଅଂଶାବତାରରୁ ଭଗବାନ୍‌ଙ୍କର ଛଅଟି ରୂପ ପରିକଳ୍ପିତ, ପ୍ରତ୍ୟେକ ମନ୍ୱନ୍ତରରେ ଏମାନେ ପରିବର୍ତ୍ତିତ ହୁଅନ୍ତି । ତାଙ୍କ ସ୍ଥାନରେ ଦ୍ୱିତୀୟ ଗୋଷ୍ଠୀ ଦାୟିତ୍ୱ ବହନ କରନ୍ତି । ଭଗବାନ୍ ଯଜ୍ଞ ସ୍ୱୟଂ ଇନ୍ଦ୍ର ହୋଇଗଲେ । ଭଗବତୀ ଦକ୍ଷିଣାଙ୍କ ଗର୍ଭରୁ ତୋଷ, ପ୍ରତ୍ୟୋଷ, ସନ୍ତୋଷ, ଭଦ୍ର, ଶାନ୍ତି, ଇଡ଼ସ୍ପତି, ଇଧ୍ମ, କବି, ବିଭୁ, ସ୍ୱହ୍ନ, ସୁଦେବ ଓ ରୋଚନ ନାମରେ ଦ୍ୱାଦଶ ପୁତ୍ର ଜନ୍ମ ଗ୍ରହଣ କଲେ । ପ୍ରଥମ ମନ୍ୱନ୍ତରରେ ଏମାନେ ଦେବଗଣ ଅନ୍ତର୍ଗତ ହେଲେ । ଭଗବାନ୍ ଯଜ୍ଞ ମରୀଚ, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ଭୃଗୁ ଆଦି ମହର୍ଷିଙ୍କୁ ସପ୍ତର୍ଷି ସ୍ଥାନ ଦେଲେ । ସ୍ୱାୟଂଭୁବ ମନୁ ଓ ତାଙ୍କର ପ୍ରିୟବ୍ରତ ଓ ଉତ୍ତାନପାଦଙ୍କୁ ନେଇ ଛଅ ରୂପରେ ଭଗବାନ୍ ସାରା ମନ୍ୱନ୍ତର କାଳ ତ୍ରୈଲୋକ୍ୟ ଶାସନ କରିଥିଲେ ।

ବିଦୁରଙ୍କ ସନ୍ଦେହ ଦୂରୀକରଣ ନିମିତ୍ତ ମୈତ୍ରେୟ କହିଲେ—ଭଗବାନ୍ ସ୍ୱୟଂ ଇନ୍ଦ୍ର ହେଲେ, ଅବତାର ମଧ୍ୟ ହେଲେ । ବ୍ରହ୍ମଜ୍ଞାନୀ ଇନ୍ଦ୍ର ପଦ ଲାଭ କରେ । କେବେ କେବେ ଜନ୍ମ ମୁମୁକ୍ଷୁ, ମୁମୁକ୍ଷୁ ବା ପୁଣ୍ୟପ୍ରଭାବରେ ବଦ୍ଧ ଜୀବ ମଧ୍ୟ ଇନ୍ଦ୍ର ହୋଇଥାନ୍ତି ଭଗବାନ୍ ଇଚ୍ଛାନୁସାରେ ମନୁ, ମନୁପୁତ୍ର, ଇନ୍ଦ୍ର, ଉପେନ୍ଦ୍ର, ପଶୁ, ପକ୍ଷୀ, ମତ୍ସ୍ୟ, କୂର୍ମ ସବୁ କିଛି ହୋଇପାରନ୍ତି । ଏହିପରି ସ୍ୱାୟଂଭୁବ ମନ୍ୱନ୍ତରରେ ମନୁଦେବଙ୍କ ପୁତ୍ରିକା ଧର୍ମଦ୍ୱାରା ଯଜ୍ଞ ଭଗବାନ୍ ଇନ୍ଦ୍ର ପଦ ଉପଭୋଗ କରିଥିଲେ । ସଂକ୍ଷେପରେ ଏହାହିଁ ଆକୂତି ଦେବୀଙ୍କ ବଂଶ କଥା । ଦେବହୂତିଙ୍କ କଥା କହିସାରିଛି । ସବୁଠାରୁ ସାନ ଝିଅ ପ୍ରସୂତିର ବିବାହ ଦକ୍ଷ ପ୍ରଜାପତିଙ୍କ ସହିତ ହୋଇଥିଲା । ତାଙ୍କର ଅନେକ ସନ୍ତାନ ହୋଇଥିଲେ, ସେମାନଙ୍କ କଥା ପରେ କହିବି ।

ବିଦୁର ପ୍ରଶ୍ନ କଲେ—ଭଗବାନ୍ ! ମହର୍ଷି କର୍ଦ୍ଦମଙ୍କ ନଅ କନ୍ୟା ମରୀଚ ଆଦି ମହର୍ଷିଙ୍କୁ ବିବାହ କରିଥିଲେ । ସେମାନଙ୍କର ସନ୍ତାନମାନଙ୍କ ମଧ୍ୟରେ ଯେ ବିଶିଷ୍ଟ ଭକ୍ତ ବା ଭଗବାନ୍‌ଙ୍କ ଅବତାର ଥିଲେ,ତାଙ୍କର କଥା ଶୁଣିବାକୁ ଇଚ୍ଛା ବଳୁଛି । ଦୟାକରି ବିସ୍ତୃତଭାବେ ତାହା ବର୍ଣ୍ଣନା କରନ୍ତୁ ।

ମୈତ୍ରେୟ କହିଲେ—କର୍ଦ୍ଦମଙ୍କ ଜ୍ୟେଷ୍ଠା କନ୍ୟା କଳାଙ୍କ ବିବାହ ମରୀଚଙ୍କ ସହ ହୋଇଥିଲା । ତାଙ୍କଠାରୁ କଶ୍ୟପ ଜନ୍ମ ହୋଇଥିଲେ । ତାଙ୍କର ଦିତି ଓ ଅଦିତି ନାମ୍ନୀ ପତ୍ନୀଙ୍କ ଗର୍ଭରୁ ଏତେ ସନ୍ତାନ ଜାତ ହେଲେ ଯେ, ସେମାନଙ୍କଦ୍ୱାରା ସମସ୍ତ ସଂସାର ପୂରିଯାଇଥିଲା । ମରୀଚଙ୍କ ଦ୍ୱିତୀୟ ପୁତ୍ର ପୂର୍ଣ୍ଣିମାଙ୍କଠାରୁ ବିରଜ,

ବିଶ୍ୱଜ ନାମରେ ଦୁଇ ପୁଅ ଓ ଦେବକୂଲ୍ୟା ନାମରେ ଝିଅଟିଏ ଜନ୍ମ ହେଲେ । ସେହି ଝିଅ ପରେ ଗଙ୍ଗାନାମ ଧାରଣ କରିଥିଲେ ।

ମହର୍ଷି କର୍ଦ୍ଦମଙ୍କ ଦ୍ୱିତୀୟା କନ୍ୟା ଅନସୂୟା ଭଗବାନ୍ ଅତ୍ରିଙ୍କୁ ବିବାହ କରିଥିଲେ । ପତିବ୍ରତା ଶିରୋମଣି ଅନସୂୟା ନିଜର ପାତିବ୍ରତ୍ୟ ବଳରେ ତିନି ଦେବତାଙ୍କୁ ପୁତ୍ରରୂପେ ଜନ୍ମ ଦେଇଥିଲେ । ବ୍ରହ୍ମା, ବିଷ୍ଣୁ ଓ ମହାଦେବ ତାଙ୍କ ପାତିବ୍ରତ୍ୟରେ ସନ୍ତୁଷ୍ଟ ହୋଇ ପୁତ୍ର ଭାବେ ଜନ୍ମ ହୋଇଥିଲେ । ବ୍ରହ୍ମା ଦୁର୍ବାସା ନାମରେ, ବିଷ୍ଣୁ ଦତ୍ତାତ୍ରେୟ ଭାବରେ ଓ ମହାଦେବ ଚନ୍ଦ୍ର ନାମରେ ପ୍ରସିଦ୍ଧିଲାଭ କରିଥିଲେ ।

ମହର୍ଷି ଶୌନକ ପ୍ରଶ୍ନକଲେ – ହେ ସୂତ ! ଭଗବତୀ ଅନସୂୟା କିପରି ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ପୁତ୍ର ଭାବେ ଲାଭ କଲେ ଏବଂ ଭଗବାନ୍ ଅତ୍ରି କେଉଁ ତପସ୍ୟାଦ୍ୱାରା ଏମାନଙ୍କୁ ପୁତ୍ରରୂପେ ପାଇଥିଲେ, ସେ ସମସ୍ତ କଥା ବିସ୍ତାରିତ ଭାବେ କହନ୍ତୁ ।

ମହର୍ଷି ସୂତ କହିଲେ—ହେ ମୁନିଗଣ ! ଭାଗବତ କଥା ମଧ୍ୟରେ ଆପଣଙ୍କ ପ୍ରଶ୍ନାବଳୀର ଉତ୍ତର ଅତି ସଂକ୍ଷେପରେ ଉଲ୍ଲେଖ କରୁଛି । ଭଗବତୀ ଅନସୂୟା କିପରି ପୂର୍ବକ୍ତୋ ତିନି ଦେବତାଙ୍କୁ ପାତିବ୍ରତ୍ୟ ଭାବରେ ବଶୀଭୂତ କରିପାରିଥିଲେ ସେ ସମସ୍ତ ପୁରାଣର ବର୍ଣ୍ଣନା ଅନୁସାରେ ମୁଁ ଆପଣମାନଙ୍କୁ କହୁଛି ।

## ଛପ୍ପୟ

ପତି ପ୍ରାଣା ଜଗ ମାହିଁ ସରିସ ଅନସୂୟା ନାରୀ ।
କୋ ହୈ ବଶ ଜିନ କିୟେ ଅଖିଲପତି ବିଧି, ତ୍ରିପୁରାରୀ ॥
ପୁରୁଷ ଯୋଗ ଜପ କରୈ ସିଦ୍ଧି ତାକୂଁ ନହିଁ ପାୱେ ।
ତାହି ପାଇ ପତି ପ୍ରିୟା ସହଜ ଜଗତୈ ତରି ଜାୱେ ॥
ତାକେ ଡରତେ ଦେବ ମୁନି ଇନ୍ଦ୍ର, ଚନ୍ଦ୍ର, ରବି
ସବ ଡରହିଁ ।
ପତିବ୍ରତା ତିହି କେ ଚରନ ବାର ବାର ବନ୍ଦନ କରହିଁ ॥

## ଅନସୂୟାଙ୍କ ପୁତ୍ରପ୍ରାପ୍ତି

ଷଷ୍ଠେ ଅତ୍ରେରପତ୍ୟତ୍ୱଂ ବୃତଃ ପ୍ରାପ୍ତୋଽନସୂୟୟା ।
ଅନ୍ୱୀକ୍ଷିକୀମଳର୍କାୟ ପ୍ରହ୍ଲାଦାଦିଭ୍ୟ ଉଚିବାନ୍ ॥

(ଭାଗବତ-୧-୩-୧୧)

### ଛପ୍‌ପୟ

ସରସ୍ୱତୀ ଶ୍ରୀରମା ଶ୍ରୀଶିବା ତୀନୋ ୟହ ମାନେଁ ।
ପତିବ୍ରତା ହମ ଶ୍ରେଷ୍ଠ ୟାହି ସବରୋ ଜଗ ଜାନେଁ ॥
ନାରଦ ସବକେ ଭରେ କାନ ଅନସୂୟା କୋ ସମ ?
ନିଜ ନିଜ ପତି ତେଂ କହେଁ ପାତିବ୍ରତ ଦେଖେ ବଲି ହମ୍ ॥
ବାଧି ହରି ହର ଭିକ୍ଷୁକ ବନେ, ଅନସୂୟା ଆଶ୍ରମ ଗୟେ ।
ପତିବ୍ରତା କୀ ପରୀକ୍ଷା, ହିତ ଭିକ୍ଷା ମାଁଗତ ଭୟେ ॥

ଭକ୍ତର ଯଶ ଜାଣିଁ ପ୍ରତିଷ୍ଠା ନିମିତ୍ତ ଭଗବାନ୍ ନାନା ପ୍ରକାର ଲୀଳା ରଚନା କରନ୍ତି । ଏପରି ଅଲୌକିକ ଲୀଳା କରନ୍ତି, ଯାହା ସ୍ମରଣମାତ୍ରେ ସାଧାରଣ ମାନବ ଆଶ୍ଚର୍ଯ୍ୟ ଚକିତ ହୋଇଯାଏ । ସାଧାରଣ ମନୀଷୀ ଭାବେ ଆମ୍ଭେମାନେ ସେହି ପରମ ପୁରୁଷ ଭଗବାନଙ୍କ ଅଚିନ୍ତ୍ୟ ଲୀଳାକୁ ତର୍କ ବଳରେ ତୁଳନା କରି ବସିଲେ ଆମର ପ୍ରୟାସ ନିଶ୍ଚୟ ବ୍ୟର୍ଥ ହେବ ଏବଂ ତତ୍ସହିତ ଆମର ଅନଧିକାର ପ୍ରଚେଷ୍ଟା ମଧ୍ୟ ପ୍ରମାଣିତ ହେବ ।

ସଂସାରରେ ସତୀ ଓ ସନ୍ଥ ଦୁଇଜଣ ସର୍ବଶ୍ରେଷ୍ଠଭାବେ ସ୍ୱୀକୃତ । ଏ ଦୁହେଁ ଦିବ୍ୟଧାମର ଅଧିକାରୀ । ଭଗବଦ୍‌ଭକ୍ତ ସାଧୁପୁରୁଷ ଅପେକ୍ଷା ପତିପ୍ରାଣା ସତୀ ପତ୍ନୀର ସ୍ଥାନ ବହୁତ ଉଚ୍ଚରେ । ବହୁକାଳ ପରେ ଭଗବାନ୍ ଭକ୍ତ ସହିତ ସାକ୍ଷାତ୍କାର କରନ୍ତି । ଭକ୍ତ ପ୍ରତି ଭଗବାନଙ୍କ ବାଣୀ ଅତ୍ୟନ୍ତ ସ୍ନେହମୟ ଓ ପ୍ରେମପୂର୍ଣ୍ଣ ହୋଇଥାଏ , କିନ୍ତୁ

ସତୀ ସ୍ତ୍ରୀକୁ ସର୍ବଦା ନିଜପତିର ଇଚ୍ଛାନୁସାରେ କାର୍ଯ୍ୟ କରିବାକୁ ପଡ଼େ । ସ୍ୱାମୀର ସମସ୍ତ ପ୍ରକାର କଠୋର ଭାବ, ଶାରୀରିକ ସତୀକୁ ସହିବାକୁ ହୁଏ । ପତିର ମନ ସହିତ ମନ ମିଳାଇ ଚାଲିବାକୁ ପଡ଼େ । ପତି ହିଁ ପରମେଶ୍ୱର—ଏହି ଭାବନା ଯେପରି ଉନ୍ନତ ତାହା ପ୍ରତିପାଳନ ନିମିତ୍ତ ସାଧନା ସେହିପରି କଠୋର । ଭାରତୀୟ ନାରୀଗଣ ସାଧାରଣତଃ ଏହି କଠୋର ସାଧନାରେ ଜୀବନ ଅତିବାହିତ କରନ୍ତି । ସତୀର ଇଚ୍ଛା ଆଗରେ ଦେବତାମାନଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ିଥାଏ । ଚନ୍ଦ୍ର, ସୂର୍ଯ୍ୟ ସତୀର ଇଚ୍ଛା ଅନୁସାରେ ଆଚରଣ କରୁଅଛନ୍ତି । ଅନ୍ୟ ଦେବତାଙ୍କ କଥା ପଚାରେ କିଏ ? ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ମଧ୍ୟ ସତୀ ଆଗରେ ନିଜ ନିଜକୁ ପରାଜିତ ମନେ କରନ୍ତି । ପତିବ୍ରତାର ଅଦ୍ଭୁତପୂର୍ବ ପ୍ରଭାବ ପ୍ରତିଷ୍ଠା ନିମିତ୍ତ ଭଗବାନ୍ ଏକ ବିଚିତ୍ର ଅଭିନୟ ରଚନା କରିଥିଲେ ।

ମହର୍ଷି ସୂତ କହୁଛନ୍ତି—ହେ ମୁନିଗଣ ! ଲକ୍ଷ୍ମୀ, ସତୀ ଓ ସାବିତ୍ରୀଙ୍କର ନିଜ ପାତିବ୍ରତ୍ୟ ବିଷୟରେ ଖୁବ୍ ଅଭିମାନ ଥିଲା । ଭଗବାନ୍ କାହାର ଅଭିମାନ ତ ସହି ପାରନ୍ତି ନାହିଁ । ନିଜ ଭକ୍ତର ହୃଦୟରେ ଅଭିମାନର ଅଙ୍କୁର ଜାତ ହେବାମାତ୍ରେ ଯଥାଶୀଘ୍ର ଭଗବାନ୍ ତାହା ନଷ୍ଟ କରିଦିଅନ୍ତି । ଏହା ହିଁ ତାଙ୍କ ଭକ୍ତବାତ୍ସଲ୍ୟର ଚରମ ନିଦର୍ଶନ । ଭଗବାନ୍ ଲକ୍ଷ୍ୟ କଲେ ଯେ, ଜଗଦ୍‌ବନ୍ଦନୀୟା ଏହି ଦେବୀମାନଙ୍କ ମନରେ ବିଶେଷ ଗର୍ବ ଜାତ ହୋଇଛି । ତେଣୁ ସେମାନଙ୍କ ଗର୍ବ ଦୂର କରିବା ନିମିତ୍ତ କଳିପ୍ରିୟ ନାରଦଙ୍କ ମନରେ ସେ ପ୍ରେରଣା ସୃଷ୍ଟି କଲେ । ନାରଦ ଭଗବାନଙ୍କ ଇଚ୍ଛା ଭଲଭାବେ ଜାଣନ୍ତି । ତାଙ୍କର ପ୍ରତିଦିନ କିଛି ନା କିଛି କୌତୁକ କରିବାର ଓ ଦେଖିବାର ଇଚ୍ଛା ଥାଏ । ଚୁପ୍‌ଚାପରେ ବସିରହିବାକୁ ତାଙ୍କୁ ଭଲ ଲାଗେ ନାହିଁ । ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର କଳି ଲଗାଇ ନାରଦ ଆନନ୍ଦିତ ହୁଅନ୍ତି । ତେଣୁ ପ୍ରଥମେ ସେ ଲକ୍ଷ୍ମୀଙ୍କ ପାଖରେ ଯାଇ ପହଞ୍ଚିଲେ ।

ରାମକୃଷ୍ଣ ଗୁଣଗାନ କରି, ନିଜ ବୀଣା ବଜାଇ ନାରଦଙ୍କୁ ଆସୁଥିବାର ଦେଖି ମହାଲକ୍ଷ୍ମୀଙ୍କ ମୁଖକମଳ ବିକସିତ ହୋଇଉଠିଲା । ଅତୀବ ପ୍ରସନ୍ନ ଚିତ୍ତରେ ସ୍ୱାଗତ ଜଣାଇ ଲକ୍ଷ୍ମୀ ନାରଦଙ୍କୁ କହିଲେ—ଆସନ୍ତୁ, ଆସନ୍ତୁ । ବହୁତ ଦିନ ହେଲା ଆପଣ ଆସି ନାହାନ୍ତି । କୁଆଡ଼େ କୁଆଡ଼େ ବୁଲୁଥିଲେ ? ଟିକିଏ ହସି ନାରଦ କହିଲେ—ମା, ଆମର ଆଉ ଠିକଣା କଣ ଅଛି ? ରହିବୁ ତ ରହିଲୁ, ନୋହିଲେ ଯୁଆଡ଼େ ମନହେଲା ସେଆଡ଼େ ଗଲୁ । ଓଃ ଆଉ ବୈଷ୍ଣବଙ୍କ ମୁହଁ ଯେଉଁ ଆଡ଼କୁ ଥାଏ, ସେମାନେ ସେଇ ଆଡ଼କୁ ଚାଲିଯାଆନ୍ତି ।

ଏହାଶୁଣି ଲକ୍ଷ୍ମୀ ଖୁବ୍ ଜୋର ରେ ହସି ହସି କହିଲେ—ନାରଦ ! ଆପଣ ଓଁଟମାନଙ୍କ ସହିତ ବୈଷ୍ଣବମାନଙ୍କୁ ଖୁବ୍ ଭଲଭାବେ ତୁଳନା କରିଛନ୍ତି । ଓଁଟ ଯେଭଳି ପତ୍ର ଖାଇ ନିମ୍ନ ଗଛକୁ ଲଣ୍ଡାକରେ ବୈଷ୍ଣବମାନେ ସେହିପରି ତୁଳସୀ ଗଛକୁ ସାଫ୍ କରିଦିଅନ୍ତି । ସହସ୍ର ସହସ୍ର ତୁଳସୀଦଳ ଶାଳଗ୍ରାମ ଭଗବାନଙ୍କ ଉପରେ ଚଢ଼ାନ୍ତି । ସେ ଯାହାହେଉ, ଏବେ କୁହନ୍ତୁ ଆପଣ ଏତେଦିନ ହେଲା କୁଆଡ଼େ ଥିଲେ ?

ନାରଦ ଉତ୍ତର ଦେଲେ—ମା, କଣ କହିବି, କହିବା କଥା ନୁହେଁ । ମୁଁ ଏମିତି ବୁଲି ବୁଲି ଚିତ୍ରକୂଟ ଆଡ଼େ ଚାଲିଯାଇଥିଲି । ସେଠାରେ ନଦୀତୀରରେ ଥିବା ମହର୍ଷି ଅତ୍ରିଙ୍କ ଆଶ୍ରମରେ ଯାଇ ପହଞ୍ଚିଲି । ସେଠାରେ ତାଙ୍କର ପତିବ୍ରତା ପତ୍ନୀ ଅନସୂୟାଙ୍କୁ ଦେଖି କୃତାର୍ଥ ହୋଇଗଲି । ଆଜି ସଂସାରରେ ତାଙ୍କ ପରି ପତିବ୍ରତା ନାରୀ ଆଉ କେହି ନାହିଁ । ସେ ନିଜ ତପସ୍ୟା ବଳରେ ଗଙ୍ଗାର ଏକ ଧାରା ସୃଷ୍ଟି କରିଛନ୍ତି । ସେହି ଧାରା ସର୍ବପାପ ବିନାଶିନୀ 'ମନ୍ଦାକିନୀ' ନାମରେ ପ୍ରସିଦ୍ଧି ଲାଭ କରିଛି । ସମଗ୍ର ସଂସାରରେ ଥିବା ସତୀ ସାଧ୍ୱୀ ପତିବ୍ରତା ମାନଙ୍କ ମଧ୍ୟରେ ଅନସୂୟା ବର୍ତ୍ତମାନ ସର୍ବମାନ୍ୟ ସ୍ଥାନ ଲାଭ କରିଛନ୍ତି । ଚତୁର୍ଦ୍ଦଶ ଭୁବନରେ ମୁଁ ବୁଲିଲି; କିନ୍ତୁ ତାଙ୍କ ଭଳି ପତିବ୍ରତା ଆଉ କାହାକୁ ଦେଖିଲି ନାହିଁ । ଏହା ଶୁଣି ଲକ୍ଷ୍ମୀଙ୍କୁ ବଡ଼ ଖରାପ ଲାଗିଲା । କାରଣ, ସେହି ଘରର ଲୋକ ହୋଇ ମଧ୍ୟ ନାରଦ ମୁହେଁ ମୁହେଁ କେଡ଼େ କଥା କହିଦେଲେ । ଏହାଦ୍ୱାରା ଲକ୍ଷ୍ମୀଙ୍କୁ ପ୍ରତ୍ୟକ୍ଷଭାବେ ଅପମାନିତ କରାଗଲା । ଲକ୍ଷ୍ମୀ ମନେ ମନେ ଭାବିଲେ—ନାରଦ ସମ୍ଭବତଃ ମୋତେ ଗୁଡ଼ କଥାଟା କହୁଛନ୍ତି । ତେଣୁ କଥାଟା ଖୋଲଖୋଲଭାବେ ଜାଣିବା ନିମିତ୍ତ ପଚାରିଲେ—ନାରଦ, ତୁମେ ଅନସୂୟାଙ୍କ ପାତିବ୍ରତ୍ୟର ସର୍ବଶେଷ ପ୍ରଶଂସା କଲ । ତାଙ୍କ ନାମ ପୂର୍ବରୁ ମୁଁ ଶୁଣିଛି ; କିନ୍ତୁ, ସେ କଣ ମୋଠାରୁ ବଳି ସତୀ ?

ନାରଦଙ୍କର ତ ଭିତର ଇଚ୍ଛା ଥିଲା ଲକ୍ଷ୍ମୀଙ୍କୁ ରଗାଇବା । ତେଣୁ ମନକଥା ମନରେ ରଖି ସେ କହିଲେ—ମା, କିଛି ଖରାପ ଯଦି ନ ଭାବିବେ ତେବେ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବି । ଲକ୍ଷ୍ମୀଙ୍କଠାରୁ ଅଭୟ ପାଇ ନାରଦ କହିଲେ—ସତ କହିବି ନା ମିଛ କହିବି ? ମା, ସତ କହିଲେ ଆପଣ ଦେବୀ ଅନସୂୟାଙ୍କ ପାଦ ତଳରେ ପଡ଼ିବେ ନାହିଁ । ଏହା ଶୁଣିବାମାତ୍ରେ ଲକ୍ଷ୍ମୀଙ୍କ ମୁହଁ ଫିକା ପଡ଼ିଗଲା । ସେ ସ୍ୱପ୍ନରେ ସୁଦ୍ଧା ନାରଦଙ୍କ ପାଖରୁ ସେଭଳି ଶୁଣିବେ ବୋଲି ଆଶା କରି ନ ଥିଲେ । ମନେ ମନେ ତାଙ୍କର ସତୀ ଅନସୂୟାଙ୍କ ପ୍ରତି ଈର୍ଷା ଜାତହେଲା । ସେ ଅନସୂୟାଙ୍କୁ ନିମ୍ନସ୍ତରର ବୋଲି ପ୍ରମାଣିତ କରିବା ପାଇଁ ମନରେ ସିଦ୍ଧାନ୍ତ ନେଲେ ପୁଣି ପ୍ରକାଶ୍ୟରେ କହିଲେ—ଆଚ୍ଛା ଠିକ୍ ଅଛି । ନାରଦ, ସମୟ ଆସିଲେ ଜଣାପଡ଼ିବ ଅନସୂୟା ମୋ ସଙ୍ଗେ ସମାନ କି ମୁଁ ତାଙ୍କ ସଙ୍ଗେ ସମାନ ସେ କଥା ଜଣାପଡ଼ିବ ।

କଳହ ମଞ୍ଜି ପୋତିବା କାମ ଥିଲା ନାରଦଙ୍କର । ଲକ୍ଷ୍ମୀଙ୍କ ଉତ୍ତର ଶୁଣି ସେ ମନେ ମନେ ବେଶ୍ ଖୁସି ହେଲେ । ଠିକ୍ ସମୟରେ ଉର୍ବରା ଭୂମିରେ ହଳ କରି ମଞ୍ଜି ବୁଣା ହୋଇଗଲା । ଏବେ ଖୁବ୍ ଶୀଘ୍ର ବୀଜ ଅଙ୍କୁରିତ, ପଲ୍ଲବିତ ଓ ଫଳବାନ୍ ହୋଇଯିବ । ଏହା ବିଚାରି ନାରଦ ଦ୍ରୁତଗତିରେ କୈଳାସ ଆଡ଼େ ପ୍ରସ୍ଥାନ କଲେ । ତେଣେ ଲକ୍ଷ୍ମୀ ମୁହଁ ଫୁଲେଇ ବସି ରହିଲେ । ଭଗବାନ୍ ଲକ୍ଷ୍ମୀଙ୍କୁ ଦେଖି ପଚାରିଲେ —ପ୍ରିୟେ ! କଣପାଇଁ ଆଜି ତୁମେ ମନ ଊଣା କରି ବସିଛ ? ଦୁଃଖର କାରଣ କଣ ମୋତେ କୁହ ।

ଲକ୍ଷ୍ମୀ କହିଲେ—ଦେଖ, ମୋ କଥା ଶୁଣିଥାଅ । ବହୁଦିନ ହେଲା ମୁଁ ଆପଣଙ୍କ ପାଦସେବା କରି ଆସୁଛି । ଆପଣ ମଧ୍ୟ ମୋ ପ୍ରତି ସଦୟ ହୋଇ ମୋତେ ଗଳାର ହାର କରିଆସିଛନ୍ତି । ଆଜି ପର୍ଯ୍ୟନ୍ତ ମୁଁ ଆପଣଙ୍କ କଥା ଅନୁସାରେ ଚାଲି ଆସୁଛି । ଦିନେ ହେଲେ ଆପଣଙ୍କୁ କିଛି ପ୍ରାର୍ଥନା କରିନାହିଁ । ଆଜି ଆପଣଙ୍କୁ ମୋର କଥାଟିଏ ରଖିବାକୁ ହେବ । ଭଗବାନଙ୍କ ସ୍ୱୀକୃତି ଲାଭ କରି ଲକ୍ଷ୍ମୀ ଜଣାଇଲେ— ମୁଁ ସେଭଳି କିଛି କହିବି ନାହିଁ । ମୁଁ ସିଂହାସନ ଶଶକଟିଏ ମାଗିଲେ କି ବନ୍ଧ୍ୟାର ପୁତ୍ର ହେଉ ବୋଲି ପ୍ରାର୍ଥନା କଲେ ତାହା ଆପଣ ଅବଶ୍ୟ ପୂରଣ କରିବେ ; କିନ୍ତୁ, ଆପଣ ପ୍ରଥମେ ପ୍ରତିଶ୍ରୁତି ଦେଲେ ମୁଁ ମୋ କଥା କହିବି । ତା'ପୂର୍ବରୁ କିଛି କହିବି ନାହିଁ । ଆଜି ମୋ ପ୍ରତି ଆପଣଙ୍କର ସ୍ନେହ କେତେଦୂର ଅଛି ତାହା ଦେଖିବି । ଅନେକ ଦିନ ହେଲା ମୋତେ ଭୁଲେଇ ଆସିଛନ୍ତି ।

ଭଗବାନ୍ କହିଲେ— ଆଚ୍ଛା ଠିକ୍ ଅଛି, ତୁମ କଥା କୁହ । ଲକ୍ଷ୍ମୀ ବାଧ କରି କହିଲେ —ଆପଣ ହଁ ବୋଲି କହିଲେ ଯାଇ ହେବ । ଭଗବାନ୍ ହସି ହସି କହିଲେ—ହଁ ହଁ, କହିବ ତ ଆଉ କେତେ ଥର କହିବି । ଗଙ୍ଗାଦେବୀ ମୋ ଅଙ୍ଗୁଷ୍ଠି ନଖରୁ ବାହାରିଛନ୍ତି । ମୁଁ ତାଙ୍କର ଶପଥ ନେଇ ହଁ ବୋଲି କହୁଛି ।

ଲକ୍ଷ୍ମୀ ଖୁସି ହୋଇଯାଇ କହିଲେ—ନା, ନା, ଆଉ ନୁହେଁ । ବହୁତ ହୋଇଗଲା । ଏଥର ମୁଁ ଆପଣଙ୍କ କଥାରେ ବିଶ୍ୱାସ କରୁଛି । ଆପଣ ଯେପରି ହେଉ ଅନସୂୟା ଦେବୀଙ୍କ ସତୀତ୍ୱକୁ କ୍ଷୀଣ କରିବେ ।

ଭଗବାନ୍ ଏହା ଶୁଣି ହସି ଦେଲେ । ମନେ ମନେ କହିବାକୁ ଲାଗିଲେ— ମୋର ଏତେ ସାମର୍ଥ୍ୟ ନାହିଁ ଯେ ଦେବୀ ଅନସୂୟାଙ୍କ ପାତିବ୍ରତ୍ୟର ପ୍ରଭାବକୁ ହ୍ରାସ କରିବି । ସେ ଜାଣିଗଲେ ଯେ, ଏସବୁ କାଣ୍ଡ କଳହା ନାରଦଙ୍କ ସୃଷ୍ଟି । ପ୍ରକାଶ୍ୟରେ

କହିଲେ—ବାସ୍ ଏହି କଥାପାଇଁ ମୁଁ ମୁଣ୍ଡେଇ ବସିଥିଲି । ମୁଁ ଏବେ ଯାଉଛି । ମୁଁ ଚେଷ୍ଟା କରିବି ଏବଂ ଯେ ପର୍ଯ୍ୟନ୍ତ ସଫଳ ନ ହୋଇଛି ସେ ପର୍ଯ୍ୟନ୍ତ ଫେରିବି ନାହିଁ ; କିନ୍ତୁ, ମଝିରେ ତୁମେ କୌଣସି ବ୍ୟାଘାତ ସୃଷ୍ଟି କରିବ ନାହିଁ । ଲକ୍ଷ୍ମୀ ଖୁସି ହୋଇଗଲେ । ଭଗବାନ୍ ଗରୁଡ଼ ଉଡାଇ ମହାମୁନି ଅତ୍ରିଙ୍କ ଆଶ୍ରମକୁ ଯାତ୍ରା କଲେ ।

ନାରଦ ଲକ୍ଷ୍ମୀଙ୍କ ଠାରୁ ବିଦାୟ ନେଇ କୈଳାସରେ ଯାଇ ପହଞ୍ଚିଲେ । ସତୀ ଏକୁଟିଆ ବସି ପୂଜା କରୁଥାନ୍ତି । ବୀଣା ବଜାଇ, ଗୀତ ଗାଇ, ନାଚି ନାଚି ଆସୁଥିବାର ନାରଦଙ୍କୁ ଦେଖି ସତୀ ପାର୍ବତୀ ସ୍ୱାଗତ ଜଣାଇଲେ । ଲଡୁଟିଏ ଖାଇ-ବାକୁ ଦେଲେ । ଲଡୁଟି ପାଟିରେ ପକାଇ ନାରଦ କହିଲେ—ଆଃ କି ମିଠା ? ଅମୃତରେ ତିଆରି ହୋଇଥିଲା ଭଳି ଲାଗୁଛି ; କିନ୍ତୁ ଭଗବତୀ ଅନସୂୟାଙ୍କ ଆଶ୍ରମରେ ଖାଇଥିବା ଲଡୁର ସ୍ୱାଦ ଯେପରି ଥିଲା ଏହା ଆଦୌ ସେପରି ନୁହେଁ ।

ସତୀ ପାର୍ବତୀ ମନେ ମନେ ଭାବିଲେ—ହାୟ, କେଉଁ କୃତଘ୍ନ ପାଲରେ ପଡ଼ିଲି । କେତେ ଆନନ୍ଦରେ ସୁଧାମୟ ମୋଦକ ଦେଲି, ଖାଇଦେଇ କହୁଛି କଣ ନା, ଅନସୂୟାଙ୍କ ଲଡୁ ଏହାଠାରୁ ଭଲ ଥିଲା । ଖୁବ ରାଗ ହେଲା । ସେ କହିଲେ—ନାରଦ ! କଣ ତୁମେ କହୁଛ । ଅନସୂୟା କିଏ ହେ, ଯାହାର ଲଡୁକୁ ଏତେ ପ୍ରଶଂସା କରୁଛ ।

ନାରଦ କହିଲେ—ମା, ସତୀ ସାଧ୍ୱୀ ଭଗବତୀ ଅନସୂୟା ଭଗବାନ୍ ଅତ୍ରିଙ୍କ ପ୍ରାଣପ୍ରିୟା ପତ୍ନୀ । ଆଜି ତାଙ୍କ ପରି ପତିବ୍ରତା ଆଉ କେହି ନାହିଁ ।

କ'ଣ ମୋ ଠାରୁ ସତୀ—ଏଭଳି ପ୍ରଶ୍ନ ଶୁଣି ନାରଦ ଉପେକ୍ଷା କରିବା ସ୍ୱରରେ କହିଲେ—ମା, ମୁଁ ତ ଠିକ୍ ଭାବେ କହିପାରିବି ନାହିଁ; କିନ୍ତୁ ଏତିକି ଅବଶ୍ୟ ଜାଣେ ଯେ, ତାଙ୍କ ପାତିବ୍ରତ୍ୟ ଆଗରେ ଆପଣଙ୍କ ପାତିବ୍ରତ୍ୟର ପ୍ରଭାବ ଫିକା ପଡ଼ିଯିବ । ଏହା ଶୁଣି ସତୀ ଦୌଡ଼ି ଦୌଡ଼ି ଶିବଙ୍କ ପାଖକୁ ଯାଇ ପଚାରିଲେ—ପ୍ରଭୋ ! ଆପଣ ତ କହୁଥିଲେ ମୁଁ ପତିବ୍ରତାମାନଙ୍କର ଶିରୋମଣି ବୋଲି ; କିନ୍ତୁ, ନାରଦ ଆସି କହୁଛନ୍ତି ଅତ୍ରିଙ୍କ ପତ୍ନୀ ଅନସୂୟା ମୋଠାରୁ ବଳି ପତିବ୍ରତା ।

ଏହାଶୁଣି ମହାଦେବ ହସି ହସି କହିଲେ—ନାରଦ କାହାନ୍ତି, ତାଙ୍କୁ ମୋ ପାଖକୁ ଡାକିଆଣ । ସତୀ ଫେରି ଆସି ଦେଖିଲେ ନାରଦ ନାହାନ୍ତି । ସେ ତ କେତେ ବେଳୁ ଚମ୍ପଟ୍ । ପାର୍ବତୀ ଶିବଙ୍କ ପାଖକୁ ଫେରିଯାଇ କହିଲେ—ମହାରାଜ ! ସେ ତ କୁଆଡ଼େ ଗଲେଣି ; କିନ୍ତୁ ଆପଣ କହନ୍ତୁ, ଏହା କଣ ସତ କଥା ?

ସ୍ତ୍ରୀଲୋକମାନଙ୍କ ମନରେ କେତେଦୂର ଅସୂୟା ଥାଏ, ତାହା ତ ପ୍ରଭୁ ଭୋଳାନାଥଙ୍କୁ ଜଣା ନାହିଁ । ସେ କହିଲେ – ଦେବି ! ନାରଦ ଠିକ୍ କହୁଥିଲେ । ତୁମେ ଭଗବତୀ ଅନସୂୟାଙ୍କ ସହିତ ସମାନ ହୋଇପାରିବ ନାହିଁ । ଏହା ଶୁଣି ପାର୍ବତୀ ଶିବଙ୍କ ପାଦପଦ୍ମକୁ ଜାବୁଡ଼ି ଧରି ହୁଡ଼ହାରି ସହିତ କହିଲେ—ମୁଁ ଏହି ଦୁଇପାଦକୁ ସେତେବେଳେ ଛାଡ଼ିବି ଯେତେବେଳେ ଅନସୂୟାଙ୍କ ପାତିବ୍ରତ୍ୟକୁ କ୍ଷୀଣ କରି ଆପଣ ମୋତେ ଏ ସଂସାରରେ ସର୍ବଶ୍ରେଷ୍ଠ ସତୀ ବୋଲି ସ୍ୱୀକୃତି ଦେବେ ।

ଭୋଳାନାଥ ଅଡୁଆରେ ପଡ଼ିଗଲେ । ନିଜକୁ ସମ୍ଭାଳି ନେଇ ମହାଦେବ ସତୀଙ୍କୁ ବୁଝାଇଲେ—ଦେବି ! ମୁଁ ନିଶ୍ଚୟ ଯତ୍ନ କରିବି ; କିନ୍ତୁ ମଝିରେ ତୁମେ କୌଣସି ପ୍ରକାର ଗୋଳମାଳ କରିବ ନାହିଁ । କାରଣ ସ୍ତ୍ରୀଲୋକମାନେ ଅଳ୍ପରେ ଯେପରି ରୁଷ୍ଟ ହୁଅନ୍ତି, ସେହିପରି ଅଳ୍ପରେ ମଧ୍ୟ ସନ୍ତୁଷ୍ଟ ହୁଅନ୍ତି ।

ସତୀ ପାର୍ବତୀ କହିଲେ—ମହାରାଜ ! କେବଳ ଆପଣଙ୍କୁ ମୋର ଡର । ଆପଣ ତ ଭୋଳାନାଥ । ପୁରୁଷମାନେ ସର୍ବଦା ଛଳ, ବଳ, କଳା, କୌଶଳ, ରାଗି, ରଗେଇ, ଭୁଲେଇ, ମିଛ ସତ କହି ସ୍ତ୍ରୀଲୋକମାନଙ୍କୁ ଠକନ୍ତି । ସେହିପରି ଆପଣ ମୋତେ ଏ ପର୍ଯ୍ୟନ୍ତ ଠକି ଆସିଛନ୍ତି । ଏବେ ଆଉ ସେହି ଠକବିଦ୍ୟା ବଳରେ ଅତ୍ରି ପତ୍ନୀ ଅନସୂୟାଙ୍କୁ ଠକାଇବେ ନାହିଁ ।

ମହାଦେବ ହସି ହସି ମନେ ମନେ ଚିନ୍ତାକଲେ—ଯେ ପର ପାଇଁ ଗାତ ଖୋଳେ, ସେ ନିଜେ ସେହି ଗାତରେ ପଡ଼େ । ପ୍ରକାଶ୍ୟରେ କହିଲେ—ଦେବି ! ମୁଁ ଏବେ ଯାଉଛି । ତୁମେ ମୋ ପାଦ ଛାଡ଼ି ଦିଅ । ସତୀ ଦେବୀ ଭଗବାନ୍ ବୃଷଧ୍ୱଜଙ୍କ ଚରଣ ଛାଡ଼ିଦେଲେ । ଯେ ସ୍ତ୍ରୀ କ୍ଷଣେ ହେଲେ ବି ପତିଙ୍କ ପାଦ ପରିତ୍ୟାଗ କରେ, ସେ ଶେଷରେ ଦୁଃଖ ଭୋଗିବ ହିଁ ଭୋଗିବ । ଶିବ ନିଜ ବାହନ ବୃଷଭକୁ ଡକାଇଲେ । ସେ ବମ୍ ବମ୍ ଶବ୍ଦ କରି ଆସି ପହଞ୍ଚିବା ମାତ୍ରେ ଶିବ ତା'ଉପରେ ଡେଉଁ ମାରି ବସି ପଡ଼ିଲେ । ପଛରେ ଆସୁଥିବା ଭୂତ, ପ୍ରେତ, ପିଶାଚଗଣଙ୍କୁ ଆସିବା ପାଇଁ ମନା କରିଦେଇ ଅତ୍ରିଙ୍କ ଆଶ୍ରମ ଅଭିମୁଖେ ଯାତ୍ରା କଲେ ।

ନାରଦ କୈଳାସରୁ ଫେରି ବ୍ରହ୍ମଲୋକରେ ପହଞ୍ଚିଗଲେ । ଜନନୀ ସାବିତ୍ରୀ ସସ୍ନେହରେ ନାରଦଙ୍କ ସତ୍କାର କଲେ । ସାବିତ୍ରୀ ପଚାରିଲେ—ବତ୍ସ ନାରଦ ! ତୁମେ ତ ଆମକୁ ପୂରାପୂରି ଭୁଲିଯାଇଛ । ବହୁଦିନ ପରେ ଆଜି ଆସିଛ । କଣ ଆଉ ନୂଆ ଖବର ଅଛି କୁହ ।

ନାରଦ କହିଲେ—ମା, ମର୍ତ୍ତ୍ୟଲୋକରେ ମୁଁ ଏକ ବଡ଼ ଅଦ୍ଭୁତ କଥା ଦେଖି ଆସିଛି । କଣ କହିବି ? ଅତ୍ରି ପତ୍ନୀ ଅନସୂୟାଙ୍କ ପାତିବ୍ରତ୍ୟର ଏପରି ପ୍ରଭାବ ଯେ, ମୁନି ଋଷିଗଣ ଆସି ତାଙ୍କର ସ୍ତୁତିଗାନ କରୁଛନ୍ତି । ସଂସାରରେ ତାଙ୍କପରି ପତିବ୍ରତା ଆଜି ଆଉ କେହି ଦେଖାଯାଉନାହାନ୍ତି । ମୁଁ ତାଙ୍କ ଆଶ୍ରମକୁ ଯାଇଥିଲି । ସେଠାରେ ବ୍ରହ୍ମଲୋକଠାରୁ ଅଧିକ ଶାନ୍ତି ପ୍ରତିଷ୍ଠିତ ଥିବାର ଦେଖିଲି । ପ୍ରକୃତ ପତିବ୍ରତାର ମହତ୍ତ୍ୱ ମୁଁ ସେଠାରେ ଅନୁଭବ କଲି ।

ଈର୍ଷାବଶତଃ ବ୍ରହ୍ମାଣୀ କହିଲେ—କଣ, ମୋଠାରୁ ମଧ୍ୟ ତାଙ୍କର ପ୍ରଭାବ ଅଧିକ ? ଏହା ଶୁଣି ନାରଦ କହିଲେ—ମା, ମୁଁ କପରି କହି ପାରିବି ? ନିଜ ମା'ତ ମା, ସବୁଠାରେ ନିଜ ମା ବଡ଼, କିନ୍ତୁ ମୁନି ଋଷିମାନେ କହୁଛନ୍ତି ଯେ, ଅନସୂୟାଙ୍କଠାରୁ ବଳି ଆଉ ପତିବ୍ରତା ଏ ତ୍ରିଭୁବନରେ ନାହାନ୍ତି । ବ୍ରହ୍ମାଣୀ ରାଗିଯାଇ କହିଲେ—ଯାଅ, ଶୀଘ୍ର ଯାଇ ନିଜ ପିତାଙ୍କୁ ଡାକିଆଣ । ଜନନୀଙ୍କ ଆଦେଶ ଅନୁସାରେ ନାରଦ ପିତାମହ ବ୍ରହ୍ମାଙ୍କ ସକାଶକୁ ଗଲେ । ସେତେବେଳେ ଦେବାସୁର ସଂଘର୍ଷ ସମ୍ବନ୍ଧରେ ବ୍ରହ୍ମା ମୁନି କଶ୍ୟପଙ୍କ ସହିତ ଆଲୋଚନା କରୁଥିଲେ । ଭଗବାନ୍ ବେଦପତିଙ୍କ ସ୍ତୁତି ଓ ବନ୍ଦନା ପରେ ନାରଦ ଦେବୀ ବ୍ରହ୍ମାଣୀଙ୍କ ସମ୍ବାଦ ଦେଲେ । ବ୍ରହ୍ମା ଭାବିଲେ ନିଶ୍ଚୟ କୌଣସି ଜରୁରି କାର୍ଯ୍ୟ ଅଛି । ସେଥିପାଇଁ ସେ ଉଠିପଡ଼ି ଭିତରକୁ ଚାଲିଗଲେ । ତାଙ୍କ ଆସିବାମାତ୍ରେ ବ୍ରାହ୍ମଣୀ ପ୍ରଶ୍ନ କଲେ—ଭଗବାନ୍ ! ଆଜିକାଲି ସଂସାରରେ ସର୍ବଶ୍ରେଷ୍ଠ ପତିବ୍ରତା କିଏ ।

ବ୍ରହ୍ମା ବିସ୍ମିତ ହୋଇ କହିଲେ—ଏଭଳି ଅପ୍ରାସଙ୍ଗିକ ପ୍ରଶ୍ନର ପ୍ରୟୋଜନ କଣ ? କିଛି କାନ୍ଦଭଳି ସ୍ୱରରେ ବ୍ରହ୍ମାଣୀ କହିଲେ—ଦରକାର କିଛି ନାହିଁ । ଆପଣ ପ୍ରଥମେ ମୋ' ପ୍ରଶ୍ନର ଉତ୍ତର ଦିଅନ୍ତୁ । ପ୍ରଭୋ ! ଆପଣ ଆଉ ମିଛ କଥା ଗୁଡ଼ାଏ କହି ମୋତେ ଭୁଲାଇବେ ନାହିଁ । ଯାହା ସତ ତାହା କୁହନ୍ତୁ । ମୁଁ ଶୁଣିଲି ଯେ ଏ ସଂସାରରେ ପତିବ୍ରତା ଅନସୂୟାଠାରୁ ବଳି ଆଉ କେହି ପତିବ୍ରତା ନାରୀ ନାହାନ୍ତି ।

ଏହା ଶୁଣି ବ୍ରହ୍ମା ଚିନ୍ତିତ ହୋଇ ପଡ଼ିଲେ । ମିଛରେ ମୃଦୁ ମୃଦୁ ହସି ଚିନ୍ତା କଲେ—ନିଶ୍ଚୟ ଏ କଥାର କିଛି ରହସ୍ୟ ଅଛି । ସ୍ତ୍ରୀମାନଙ୍କ ମଧ୍ୟରେ ସାଧାରଣତଃ ଅସୂୟା ଭାବ ଥାଏ; କିନ୍ତୁ ଅନସୂୟାଙ୍କର କାହାରି ପ୍ରତି ଅସୂୟା ନାହିଁ । ତେଣୁ ଏହାହିଁ ତାଙ୍କର ବିଶେଷତ୍ୱ । କଥା ତ ସତ, ତାଙ୍କ ସହିତ କିଏ ସମାନ ହେବ ? କିନ୍ତୁ କଥା ଏଡ଼େଇ ଦେବା ପାଇଁ ବ୍ରହ୍ମା କହିଲେ— ତୁମକୁ ଏ କଥା କିଏ କହିଲା ?

ବ୍ରହ୍ମାଣୀ ଶୁଣିଆଡ଼କୁ ଗୁହିଁଲେ । ନାରଦ ନାହାନ୍ତି । ମାତା ପିତା ଏକାନ୍ତରେ କଥାବାର୍ତ୍ତା ହେବାବେଳେ ସାବାଳକ ବା ଯୁବକ ପୁତ୍ର ସେଠାରେ ରହିବା ଉଚିତ ନୁହେଁ । ସେଥିପାଇଁ ନାରଦ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ନାରଦଙ୍କୁ ନ ଦେଖି ବ୍ରହ୍ମାଣୀ କହିଲେ—ମୋତେ ଯେ କହୁ, ଆପଣ କୁହନ୍ତୁ କଥାଟା ସତ କି ମିଛ ?

ବ୍ରହ୍ମା ନିଜ ଦାଢ଼ୀରେ ହାତ ବୁଲାଇ କହିଲେ – ମନେକର କଥାଟା ସତ, ତେବେ ସେ ବିଷୟରେ ତୁମେ ଚିନ୍ତିତ ହେବାର କାରଣ କଣ ? ଅନସୂୟା ତ ତୁମର ପୁତ୍ରବଧୂ । ବ୍ରହ୍ମାଣୀ ଟିକିଏ ରାଗିବା ସ୍ୱରରେ ପଚାରିଲେ—ମାନସିକ ପୁତ୍ର ସହିତ କି ସମ୍ପର୍କ ? ସେମାନେ ପୃଥକ୍ ପୃଥକ୍ ଅଙ୍ଗରୁ ପ୍ରକଟିତ ହୋଇଥିବାରୁ ପରସ୍ପର ମଧ୍ୟରେ ଭିନ୍ନତା ରହିଛି । ଦେଖନ୍ତୁ ! ଯେଉଁ ଉପାୟରେ ହେଉ ପଛେ ଆପଣ ଅନସୂୟାଙ୍କୁ ପାତିବ୍ରତ୍ୟ ଧର୍ମରୁ ବିଚ୍ୟୁତ କରନ୍ତୁ ।

ଭଗବାନ୍ ବ୍ରହ୍ମା ଧ୍ୟାନସ୍ଥ ହୋଇ ସବୁ କଥା ଜାଣି ପାରିଲେ । ଚଞ୍ଚଳତା-ବଶତଃ ନିଜର ମୁକୁଟ ସମ୍ଭାଳି ବ୍ରହ୍ମା କହିଲେ—ଠିକ୍ ଅଛୁ । ମୁଁ ଏବେ ଯାଉଛୁ । ଏହାକହି ହଂସ ଉପରେ ବସି ବ୍ରହ୍ମା ପ୍ରସ୍ଥାନ କଲେ ।

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ମନ୍ଦାକିନୀ ତୀରବର୍ତ୍ତୀ ମହାମୁନି ଅତ୍ରିଙ୍କ ଆଶ୍ରମରେ ପହଞ୍ଚିଲେ । ପରସ୍ପର ମଧ୍ୟରେ ନମସ୍କାର ଆଦାନ ପ୍ରଦାନ ପରେ ଦେବଗଣ ନିଜ ନିଜର ଆସିବା ଅଭିପ୍ରାୟ ପ୍ରକାଶ କଲେ । ଭଗବାନ୍ କହିଲେ—ଦେଖନ୍ତୁ ଆମ୍ଭେମାନେ ବେଶ ବଦଳେଇ ଭଗବତୀ ଅନସୂୟାଙ୍କ ପାତିବ୍ରତ୍ୟର ପରୀକ୍ଷା କରିବା । ଏହାପରେ ତିନିହେଁ ସାଧୁବେଶ ଧାରଣ କରି ଦେବୀ ଅନସୂୟାଙ୍କ ନିକଟରେ ଉପସ୍ଥିତ ହେଲେ । ସେତେବେଳେ ଅତ୍ରି ଆଶ୍ରମରେ ନଥିଲେ । ତିନିଜଣ ଅତିଥିଙ୍କୁ ଆସୁଥିବାର ଦେଖି ଅନସୂୟା ସ୍ୱାଗତ ଜଣାଇ ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଦେଇ କନ୍ଦମୂଳ ଓ ଫଳ ଆଣି ଭେଟି ଦେଲେ ; କିନ୍ତୁ ମୁନିଗଣ ଦେବୀଙ୍କ ଆତିଥ୍ୟକୁ ସ୍ୱୀକାର କଲେ ନାହିଁ । ଦେବୀ ଅନସୂୟା ବିସ୍ମିତଭାବେ ପଚାରିଲେ—ଭଗବାନ୍ ! ମୋର କି ଅପରାଧ ହେଲା, ଯାହା ଫଳରେ ଆପଣମାନେ ମୋ ପୂଜା ସ୍ୱୀକାର କରୁନାହାନ୍ତି ।

ମୁନିଗଣ କହିଲେ—ଆପଣ ଆମକୁ କଥା ଦେବେ ଯଦି, ତେବେ ଆମ୍ଭେମାନେ ଆପଣଙ୍କ ଆତିଥ୍ୟ ସ୍ୱୀକାର କରିବୁ । ଅନ୍ୟଥା ଆମ୍ଭେମାନେ ଫେରିଯିବୁ ।

ଦେବୀ କହିଲେ—ମୁନିଗଣ ! ପ୍ରାଣ ବିନିମୟରେ ଅତିଥି ସତ୍କାର କରାଯାଏ । କପୋତ ପକ୍ଷୀ ନିଜ ସ୍ତ୍ରୀକୁ ହତ୍ୟା କରିଥିବା ବ୍ୟାଧର ସତ୍କାର ପାଇଁ ଅଗ୍ନିକୁ ଡେଇଁ ପ୍ରାଣ ବିସର୍ଜନ କରିଥିଲା । ତେଣୁ କହନ୍ତୁ, ଆପଣମାନେ ଯେ ଭଳି ପ୍ରସନ୍ନ ହେବେ ସେଭଳି କାର୍ଯ୍ୟପାଇଁ ମୁଁ ପ୍ରସ୍ତୁତ ଅଛି ।

ମୁନିମାନେ ଏକସ୍ୱରରେ କହିଲେ—ଦେବି ! ତୁମେ ବିବସ୍ତ୍ରା ହୋଇ ଆମ୍ଭମାନଙ୍କର ଆତିଥ୍ୟ ସତ୍କାର କର ।

ଏହା ଶୁଣି ପତିବ୍ରତା ଅନସୂୟା ଟିକିଏ ଇତସ୍ତତଃ ହେଲେ । ଏମାନେ ମୁନି ନା କୌଣସି ଛଦ୍ମବେଶଧାରୀ କପଟୀ, ଯାହାଫଳରେ ଏଭଳି ଅନୁଚିତ ଓ ସଦାଚାରହୀନ ପ୍ରସ୍ତାବ ଉପସ୍ଥାପନ କରୁଛନ୍ତି । ଧ୍ୟାନ ବଳରେ ଅନସୂୟା ସମସ୍ତ ରହସ୍ୟ ହୃଦୟଙ୍ଗମ କଲେ । ଏହାପରେ ଦେବୀ କହିଲେ—ମୁଁ ବିବସ୍ତ୍ରା ହୋଇ ଆପଣମାନଙ୍କର ସତ୍କାର କରିବି । ଯଦି ମୁଁ ପ୍ରକୃତରେ ପତିବ୍ରତା ହୋଇଥିବି ଏବଂ ଭୁଲ୍‌ରେ ହେଉ ବା ସ୍ୱପ୍ନରେ ହେଉ ପରପୁରୁଷର କାମଭାବନା କରି ନ ଥିବି, ତେବେ ତୁମ୍ଭେମାନେ ଛମାସିଆ ପିଲା ହୋଇଯାଅ । ଏହା କହିବା ମାତ୍ରେ ତିନିକୁ ତିନିହେଁ ଛ'ମାସିଆ ଦୁଧପିଆ ପିଲା ପାଲଟିଗଲେ । ଦେବୀ ଅନସୂୟା ବିବସ୍ତ୍ରା ହୋଇ ସେମାନଙ୍କୁ ନିଜର ସ୍ତନ୍ୟ ପାନ କରାଇଲେ । ପରେ ସେମାନଙ୍କୁ ନେଇ ଶେଯରେ ଶୁଆଇଦେଲେ । ଏହି ସମୟରେ ଅତ୍ରି ମହାମୁନି ଆଶ୍ରମରେ ଆସି ପହଞ୍ଚିଲେ । ତିନୋଟି ସୁକୁମାର ପିଲାଙ୍କୁ ଦେଖି ବିସ୍ମିତ ହୋଇ ପଚାରିଲେ— ଦେବି ! ଦେବତା ସ୍ୱରୂପ, ପରମସୁନ୍ଦର, ମନୋହର, ଆକର୍ଷକ ଏହି ପିଲା ତିନୋଟି କାହାର ?

ଭଗବତୀ ଅନସୂୟା କହିଲେ— ଭଗବନ୍ ! ଏମାନେ ଆପଣଙ୍କର ପିଲା । କିନ୍ତୁ ଏଭଳି ଭାଗ୍ୟ ଆମର କାହିଁ ବୋଲି ଅତ୍ରି ପଚାରିବାରୁ ଦେବୀ ଉତ୍ତରଦେଲେ— ମହାରାଜ ! ଏମାନେ ଆପଣଙ୍କ ପିଲା । ଭଗବାନ୍ ସ୍ୱତଃ ଆମ ଉପରେ ଦୟା ପ୍ରଦର୍ଶନ କରିଛନ୍ତି । ମୁନି ସମସ୍ତ ରହସ୍ୟ ବୁଝିଗଲେ । ବର୍ତ୍ତମାନ ତିନି ଦେବତା ପିଲା ହୋଇ ବାଳ ସୁଲଭ କ୍ରୀଡ଼ା କରିବାକୁ ଲାଗିଲେ । ମା ଅନସୂୟା ସେମାନଙ୍କୁ ଖୁଆଇ, ପିଆଇ ଆଦର ଯତ୍ନରେ ପାଳନ ପୋଷଣ କଲେ ।

ଏଆଡ଼େ ତିନି ଦେବୀ ଦେଖିଲେ ଯେ ସେମାନଙ୍କ ପତିଦେବ ଆଉ ଫେରିଲେ ନାହିଁ । ଯାହାକୁ ପଚାରିଲେ କେହି କହି ପାରୁ ନାହାନ୍ତି ସେମାନେ କୁଆଡ଼େ ଗଲେ । କଣ କରାଯିବ ? ତିନିଜଣ ନିଜ ନିଜ ସ୍ୱାମୀପତିଙ୍କ ଅନ୍ୱେଷଣରେ ବାହାରି ଯାଇଛନ୍ତି । ଦୈବକ୍ରମେ ତିନି ଦେବୀ ଚିତ୍ରକୂଟରେ ମିଳିତ ହେଲେ । ପରସ୍ପର ନିଜ ନିଜ

ମଧ୍ୟରେ ଦୁଃଖର କାରଣ କୁହାକୁହି ହେଲେ । ଦେବୀ ଲକ୍ଷ୍ମୀ ସତୀଙ୍କୁ ପଚାରିଲେ— ତୁମେ କପରି ଜାଣିଲ ? ସତୀ କହିଲେ—ମୋତେ ନାରଦ ହିଁ ସବୁକଥା କହିଛନ୍ତି । ବ୍ରହ୍ମାଣୀ ହଠାତ୍ କହି ଉଠିଲେ — ସେଇ ତ ମୋର କାନ କାଟି ଦେଇଛି । ବର୍ତ୍ତମାନ ତିନିଜଣଙ୍କ କ୍ରୋଧ ନାରଦ ଉପରେ । ଲକ୍ଷ୍ମୀ ଦାନ୍ତ କାମୋଡ଼ି କହିଲେ— ଯଦି ସେ ଦୁଷ୍ଟ ମିଳିଯାନ୍ତା, ତେବେ ତା ଦୁଷ୍ଟାମିକୁ ଏକାଥରେ ଛଡ଼େଇ ଦିଅନ୍ତି । ଏମିତି ଶିକ୍ଷା ଦିଅନ୍ତି ଯେ, ପିଲାର ଦୁଧଖିଆ କଥା ମନେ ପଡ଼ିଯାଆନ୍ତା । ଏହିକଥା କହୁଥିବା ବେଳେ ଆଗରୁ 'ଜୟରାମକୃଷ୍ଣହରି' ଗାଇ ଗାଇ ନାରଦ ଆସୁଥିବାର ଦେଖାଗଲା ।

ବହୁଦୂରରୁ ନାରଦ ଉଚ୍ଚସ୍ୱରରେ କହିଲେ—ମା ମାନେ, ମୋର ପ୍ରଣାମ ନିଅନ୍ତୁ । ଲକ୍ଷ୍ମୀ ତ ମନେ ମନେ ରାଗିଯାଇଥିଲେ । ଅନ୍ୟ ଦୁହେଁ ମଧ୍ୟ କ୍ରୋଧର ଶେଷ ସୀମାରେ ପହଞ୍ଚି ଯାଇଥାନ୍ତି । ତଥାପି ନିଜ କ୍ରୋଧକୁ ମନେ ମନେ ଚାପି ରଖି ପ୍ରଥମେ ଲକ୍ଷ୍ମୀ କହିଲେ— ବାଃ, ନାରଦ ତ ଠିକ୍ ସମୟରେ ଆସିଯାଇଛନ୍ତି । ଦୂରରେ କାହିଁକି, ଆମ ପାଖକୁ ଆସନ୍ତୁ ! ତୁମର ବୀଣାଧ୍ୱନି ଖୁବ୍ ସୁନ୍ଦର । ଟିକିଏ ବୀଣାଟା ଦେଲ ଦେଖିବା । ସରସ୍ୱତୀ ମଧ୍ୟ ବୀଣା ଭଲ ବଜାନ୍ତି ।

ନାରଦ ସବୁକଥା ବୁଝିପାରୁଥିଲେ । ବିନୀତ ଭାବେ ସେ କହିଲେ—ମା, ମୁଁ ଆଜିକାଲି ଏକ ବ୍ରତ ଅନୁଷ୍ଠାନରେ ରହିଛି । କାହାରି ପାଖକୁ ଯାଇ କଥାବାର୍ତ୍ତା କରୁ ନାହିଁ । ବିଶେଷତଃ ସ୍ତ୍ରୀଲୋକମାନଙ୍କଠାରୁ ଦୂରରେ ରହୁଛି । କାହାରି ପାଦ ମଧ୍ୟ ଛୁଁ ନାହିଁ । ଆଉ ବୀଣା କଥା କହୁଛନ୍ତି, ସେଟା ତ ମୋର ପ୍ରାଣଠାରୁ ବଳି ଅଧିକ ପ୍ରିୟ । କାହାରିକୁ ମୋ ବୀଣା ଛୁଁଇବା ପାଇଁ ମଧ୍ୟ ଦିଏ ନାହିଁ । ସରସ୍ୱତୀ ନିଜ ବୀଣା ବଜାନ୍ତୁ । ଆମେ ଚାଲିଲୁ, 'ଜୟ ଜୟ ସୀତାରାମ'— ଏହା କହି ନାରଦ ସେଠାରୁ ଚାଲିଯିବାକୁ ଉଦ୍ୟତ ହେଲେ ।

ବର୍ତ୍ତମାନ ତିନି ଦେବୀ ବ୍ୟସ୍ତ ହୋଇ ଉଠିଲେ । ଅତି କଅଁଳିଆ ସ୍ୱରରେ ବ୍ରହ୍ମାଣୀ କହିଲେ— ନାରଦ, ନାରଦ, ତୁମକୁ ମୋ' ରାଣ । ତୁମ ବାପାଙ୍କ ରାଣ ରହିଲା, ତୁମେ ଫେରିଆସ । ଟିକିଏ ଶୁଣିଯାଅ । ତୁମେ ସବୁକଥା ଜାଣ । ତିନି ଦେବତା କୁଆଡ଼େ ଗଲେ ଦୟାକରି କହି ଯାଅ ।

ନାରଦ ଅଙ୍ଗୁଳି ସଙ୍କେତଦ୍ୱାରା ଜଣାଇଦେଲେ ଯେ, ଏଇ ଦେଖ ଭଗବତୀ ଅନସୂୟାଙ୍କ ଆଶ୍ରମ । ସେଠାରେ ଆପଣମାନଙ୍କ ପ୍ରଭୁ ଖେଳୁଛନ୍ତି ।

ଲକ୍ଷ୍ମୀ ହଠାତ୍ କହି ଉଠିଲେ— କି ଖେଳ ? ଏତେ ଦିନ ବିତିଗଲା, କି ଖେଳ ଚାଲିଛି । ବାବୁ, ତୁମେ ଟିକିଏ ପାଖକୁ ଆସ । ମୁଁ ତୁମ ବାଣୀର କିଛି କ୍ଷତି କରିବି ନାହିଁ । ପଟାପଟ ଆମକୁ କହିଯାଅ । ଆମ୍ଭେମାନେ ନିଜ ନିଜ ସ୍ୱାମୀଙ୍କୁ କିପରି ଫେରି ପାଇବୁ, ସେକଥା କହିଦେଇ ଦେଇଯାଅ ।

ନାରଦ କହିଲେ— ସେ ସବୁ କଥା ମୁଁ କିପରି କହିବି ? ମୁଁ ମା'ମାନଙ୍କ ସହିତ ମିଶିବା କଥା ଜାଣେ ।

ପାର୍ବତୀ କହିଲେ— ନାରଦ, ତୁମେ ତ ପିଲାଆରୁ ପଢ଼ି ଗଜା ହୋଇଛ । ତୁମେ ସବୁ ଜାଣିଛ । ଆମ୍ଭମାନେ ସେହି ଅତ୍ରିଙ୍କୁ ଯିବାପାଇଁ ଇଚ୍ଛା କରୁଛୁ । ଆମ୍ଭେମାନେ କିପରି ଯିବା ? ଭଗବତୀ ଅନସୂୟା ଅସନ୍ତୁଷ୍ଟ ହେବେ ନାହିଁ ତ ! ତାଙ୍କୁ ଆମର ବଡ଼ ଭୟ ।

ନାରଦ କହିଲେ— ତୁମ୍ଭେମାନେ ଭୁଲ୍‌ରେ ବି ସେଠାକୁ ଯାଅନାହିଁ । ଯଦି ଆଶ୍ରମଭିତରେ ପ୍ରବେଶ କରିବ, ତେବେ ଦେବୀ ଅନସୂୟା ସତୀତ୍ୱ ବଳରେ ତୁମ୍ଭମାନଙ୍କୁ ଭସ୍ମ କରିଦେବେ । ଏହା ଶୁଣି ଲକ୍ଷ୍ମୀ, ପାର୍ବତୀ ଓ ବ୍ରହ୍ମାଣୀ ତିନିହେଁ ଭୟଭୀତ ହୋଇ କହିଲେ – ନାରଦ, ଦେଖ ଏବେ ଆଉ ଅଧିକ ଥଟ୍ଟା କରନାହିଁ । ସବୁକଥା କୁହ, ଦେବତାମାନେ କୁଆଡ଼େ ଗଲେ ?

ନାରଦ ନିଜର ହସକୁ ଚାପି ରଖି କହିଲେ— ସେ ତିନିହେଁ କାଁ କାଁ କାନ୍ଦୁଛନ୍ତି । କେହି କିଛି କହିପାରୁ ନାହିଁ । ବାରଡ଼ି ଛୁଆ ଭଳି ଦୁଧ ପିଇ ପଡ଼ି ରହିଛନ୍ତି । ଦେବୀ ଅନସୂୟା ସେମାନଙ୍କୁ ଯେଉଁଠି ବସାଉଛନ୍ତି ସେଇଠି ସେମାନେ ବସୁଛନ୍ତି । ଶୁଆଇଦେଲେ ଶୋଉଛନ୍ତି । ଏବେ ସେମାନଙ୍କ ଆଶା ଛାଡ଼ିଦିଅ । ପନ୍ଦର କୋଡ଼ିଏ ବର୍ଷ ପରେ ସେମାନେ ବଡ଼ ହେବେ । ସେତେବେଳେ ମା ଅନସୂୟା ସେମାନଙ୍କୁ ବାହା କରେଇ ଦେବେ । ଏବେ ତୁମ୍ଭେମାନେ ଭସ୍ମ ବୋଳି ହୋଇ, ମାଳା ଧରି ରାମନାମ କର । ଅନ୍ୟ କୌଣସି ଉପାୟ ନାହିଁ । ଏବେ ସମଗ୍ର ସଂସାରରେ ଅନସୂୟାଙ୍କଭଳି ଦ୍ୱିତୀୟ ସତୀ ନାହାନ୍ତି ବୋଲି ଆପଣମାନେ ଜାଣି-ପାରିଲେ ତ ?

ମହାଲକ୍ଷ୍ମୀ କହିଲେ – ତୁମେ ହିଁ ଏ ସବୁ ବିଷ ମଞ୍ଜି ବୁଣିଛ । ଏବେ ତୁମେ ଜିତିଲ, ଆଉ ଆମ୍ଭେମାନେ ହାରିଲୁ । ବର୍ତ୍ତମାନ ଆମ୍ଭେମାନେ କିପରି ନିଜ ନିଜର ପ୍ରଭୁଙ୍କୁ ଫେରି ପାଇବୁ ତାହାର ଉପାୟ କୁହ । ଆମେ ଆମ କର୍ମର ଫଳ ଭୋଗ

କରିପାରନ୍ତି । କେବେହେଲେ କୌଣସି ଗୁଣୀଲୋକ ପ୍ରତି ଅସୂୟା ପ୍ରକାଶ କରିବା ଉଚିତ ନୁହେଁ, ଏକଥା ଏକାନ୍ତ ସତ୍ୟ । ଅନ୍ୟକୁ ଈର୍ଷା କରିବାଠାରୁ ବଳି ବଡ଼ ପାପ ଆଉ କିଛି ନାହିଁ ।

ନାରଦ କହିଲେ—ଏବେ ଆପଣମାନେ ପ୍ରକୃତ ସତ୍ୟ ହୃଦୟଙ୍ଗମ କଲେ । ପଶ୍ଚାତ୍ତାପଦ୍ୱାରା ସମସ୍ତ ପାପ ଧୋଇହୋଇଯାଏ । ସେ ସବୁ ଆପଣମାନେ ଅନୁଭବ କରିଛନ୍ତି । ଏବେ ଏକମାତ୍ର ଉପାୟ ହେଉଛି ସତୀ ଅନସୂୟାଙ୍କୁ ସନ୍ତୁଷ୍ଟ କରିବା । ଆପଣମାନେ ଆଉ ବିଳମ୍ବ ନ କରି ତାଙ୍କୁ ଶରଣ ପ୍ରାର୍ଥନା କରନ୍ତୁ, ସେଥିରେ ଆପଣଙ୍କର ମଙ୍ଗଳ ହେବ ।

ଦେବୀମାନେ ଆଶ୍ରମରେ ଉପସ୍ଥିତ ହେଲେ । ଆଶ୍ରମର କବାଟ ବନ୍ଦ ଥିଲା । କବାଟ ଖୋଲି ଭିତରକୁ ଯିବା ପାଇଁ କାହାରି ସାହସ ହେଲା ନାହିଁ । କାଳେ ସତୀ ଅସନ୍ତୁଷ୍ଟ ହେବେ । ସମ୍ଭବତଃ ଦେବୀ ଅନସୂୟା ମନ୍ଦାକିନୀକୁ ସ୍ନାନ ପାଇଁ ଯାଇଛନ୍ତି । ଆଶ୍ରମ କୁଟୀରର ପଛପାଖରେ ଏକ ବିରାଟ ବଟବୃକ୍ଷ ଥିଲା । ସେହି ଗଛରେ ଚଢ଼ି ଦେବୀମାନେ ଦେଖିଲେ ଯେ ତିନୋଟି କଅଁଳା ପିଲା ଝୁଲାରେ ଶୋଇ ଝୁଲୁଛନ୍ତି । ଭଗବାନ୍ ବିଷ୍ଣୁ କଡ଼େଇ ଯିବାରୁ ତାଙ୍କ ଦୃଷ୍ଟି ଲକ୍ଷ୍ମୀଙ୍କ ଉପରେ ପଡ଼ିଲା । ଲକ୍ଷ୍ମୀଙ୍କୁ ଦେଖି ବିଷ୍ଣୁ ଚିତ୍କାର କରି କାନ୍ଦିଲେ । ତିନି ଦେବତା ନିଜ ନିଜ ପତ୍ନୀଙ୍କୁ ଚିହ୍ନିଲେ । ଯିବେ କିପରି ? ସେମାନେ ତ ସତୀଙ୍କ ତପସ୍ୟା ପ୍ରଭାବରେ ବନ୍ଦୀ ହୋଇଛନ୍ତି । ତେଣୁ ସତୀଙ୍କ ନ ଜଣାଇ ଯାଇ ପାରିବେ ନାହିଁ । ଦେବୀମାନେ ମଧ୍ୟ ଅନସୂୟାଙ୍କ ଅଭିଶାପକୁ ଭୟ କରୁଥିଲେ । ତେଣୁ ସତୀଙ୍କ ଅନୁମତି ନ ନେଇ ଘରଭିତରକୁ ଯାଇ-ପାରିଲେ ନାହିଁ । ଏହି ସମୟରେ ଓଦା ଲୁଗା ପିନ୍ଧି ଅନସୂୟା,ନଦୀଆଡୁ ଫେରୁଥିବାର ଦେଖି ଦେବୀଗଣ ଆଶ୍ରମର ଦ୍ୱାରଦେଶରେ ଯାଇ ଠିଆହୋଇ ରହିଲେ । ଅନସୂୟାଙ୍କୁ ତିନହେଁ ଏକ ସମୟରେ କହି ଉଠିଲେ—ମା, ଆମ୍ଭେମାନେ ଭିତରକୁ ଯିବୁଁ ?

ମାତା ଅନସୂୟା ସେମାନଙ୍କୁ ଦେଖି କହିଲେ—ତୁମ୍ଭେମାନେ କିଏ ? ତିନି ଦେବୀ ଏକସ୍ୱରରେ କହିଲେ—ଆମ୍ଭେମାନେ ଆପଣଙ୍କ ପୁତ୍ରବଧୂ । ଅନସୂୟା ଉତ୍ତର ଦେଲେ—ଆରେ ବଧୂମାନେ କଣ ନିଜ ଘରକୁ ଯିବା ପାଇଁ କାହାକୁ ପଚାରନ୍ତି ? ଆସ, ଆସ, ଏହା ତ ତୁମ୍ଭମାନଙ୍କର ଘର । ଏହା ଶୁଣି ତିନି ଦେବୀ ଲଜ୍ଜିତା ହୋଇ ଧୀରେ ଧୀରେ ଘର ଭିତରକୁ ଗଲେ । ମା ଅନସୂୟାଙ୍କ ପାଦସ୍ପର୍ଶ କଲେ । ମା ଅନସୂୟା କହିଲେ—ଆରେ ତୁମ୍ଭେମାନେ ତ ଖୁବ୍ ଧଳାଘରର ଝିଅ

ଭଲ ମନେ ହେଉଛ । ସ୍ୱାମୀମାନଙ୍କର ତୁମ୍ଭେମାନେ ନିଶ୍ଚୟ ଆଦରଣୀ ହେବ ; କିନ୍ତୁ ମୋ' ପିଲାମାନେ ତ ଏବେ ଖୁବ୍ ସାନ ସାନ ହୋଇଛନ୍ତି । ବହୁମାନେ ଖୁବ୍ ବଡ଼ ବଡ଼ ।

ଏହି ସମୟରେ ମହାମୁନି ଅତ୍ରି ମଧ୍ୟ ଆସି ପହଞ୍ଚିଲେ । ତିନିବଧୂ ଆଡ଼ ହୋଇଗଲେ । ମୁନି ପଚାରିଲେ ଦେବି ଅନସୂୟେ ! ଏମାନେ କିଏ ? ସେମାନଙ୍କୁ ନିଜର ବହୁ ବୋଲି ଜାଣି ମୁନି କହିଲେ—ଦେବି ! ତୁମେତ ବଡ଼ କୌତୁକ ରଚନା କରୁଛ । ଏବେ ପୁଅମାନେ ହେଲେ । ସେମାନଙ୍କ ବୟସ ଛମାସରୁ ଅଧିକ ହୋଇନି । ଏଣେ କହୁଛ ପୁତ୍ରବଧୂମାନେ ଆସିଗଲେ । ହାତେ ପୁଅକୁ ପାଞ୍ଚ ହାତିଆ ବହୁ । ଏହା ତ ବଡ଼ ବିଚିତ୍ର ଲାଗୁଛି ।

ଅନସୂୟା ଦେବୀ କହିଲେ—ସେଥିରେ କଣ ଅଛି ? ବଡ଼ ବହୁ ଭାଗ୍ୟରେ ଥିଲେ ମିଳନ୍ତି । ପୁଅମାନେ ତ ଆମର ଦିନେ ବଡ଼ ହେବେ । ଏହା ଶୁଣି ମୁନି ହସି ଦେଲେ ଏବଂ ସବୁ ରହସ୍ୟ ବୁଝିପାରିଲେ ।

ବର୍ତ୍ତିମାନ ତିନି ଦେବୀ ସତୀ ଅନସୂୟାଙ୍କ ପାଦତଳେ ପଡ଼ି କହିଲେ— ଦେବି ! ଆମ୍ଭମାନଙ୍କୁ କ୍ଷମା କରିଦିଅନ୍ତୁ । ଆମ ଅପରାଧର ଫଳ ଭୋଗ କରିସାରିଛୁ । ଏବେ ଆମର ପତିଙ୍କୁ ଆପଣ ଫେରାଇ ଦିଅନ୍ତୁ ।

ଅନସୂୟା କହିଲେ—ମୁଁ କଣ ମନା କଲି । ସେମାନେ ଶୋଇଛନ୍ତି । ଯେ ଯାହାର ପତିକୁ କୋଳରେ ନେଇଯାଅ । ଦେବୀଗଣ ବିନୀତଭାବେ ଉତ୍ତର ଦେଲେ— ମା' ଆମ୍ଭମାନଙ୍କୁ ଆଉ ଅଧିକ ଲଜ୍ଜିତା କରନ୍ତୁ ନାହିଁ । ସଂସାରରେ ଆମକୁ ଲୋକହସା କରନ୍ତୁ ନାହିଁ । ସେମାନଙ୍କୁ ପୂର୍ବ ରୂପରେ ଫେରାଇ ଦିଅନ୍ତୁ ।

ଦେବୀମାନଙ୍କ ଦୁଃଖ ଦେଖି ମା'ଙ୍କ ହୃଦୟ ତରଳି ଗଲା । ସେ ହାତରେ ଜଳ ନେଇ ତିନି ପିଲାଙ୍କ ଉପରେ ଛିଞ୍ଚି ଦେଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ନିଜ ନିଜର ସ୍ୱରୂପ ଧାରଣ କରି ଠିଆ ହୋଇଗଲେ । ଦେବୀ ଅନସୂୟା ତିନିଜଣଙ୍କର ବନ୍ଦନା କଲେ । ମାଙ୍କ ପୂଜାରେ ପ୍ରସନ୍ନ ହୋଇ ଦେବଗଣ କହିଲେ—ପତିବ୍ରତେ ! ଆମ୍ଭେମାନେ ତୁମର ପାତିବ୍ରତ୍ୟରେ ବିଶେଷ ସନ୍ତୁଷ୍ଟ ହୋଇଛୁ । ତୁମେ ନିଜ ଇଚ୍ଛା ଅନୁସାରେ ବର ପ୍ରାର୍ଥନା କର ।

ଭଗବତୀ ଅନସୂୟା ପ୍ରଣାମ ଜଣାଇ ଭକ୍ତି ଗଦ୍‌ଗଦ କଣ୍ଠରେ କହିଲେ— ପ୍ରଭୋ ! ଯଦି ମୋ ପ୍ରତି ପ୍ରସନ୍ନ ହୋଇଛନ୍ତି,ତେବେ ମୋର ପୁତ୍ର ରୂପେ ଆପଣମାନେ ଜନ୍ମ ଗ୍ରହଣ କରନ୍ତୁ । ଦେବଗଣ 'ତଥାସ୍ତୁ' ବୋଲି କହିଲେ ।

ମହର୍ଷି ସୂତ କହୁଛନ୍ତି—ମୁନିଗଣ ! ଅନସୂୟାଙ୍କୁ ବର ପ୍ରଦାନ କରି ସମ୍ମୁଖରେ ଲଜ୍ଜିତା ହୋଇ ଠିଆ ହୋଇଥିବା ଦେବୀମାନଙ୍କୁ ବ୍ରହ୍ମା,ବିଷ୍ଣୁ,ମହେଶ୍ୱର ପ୍ରଶ୍ନ କଲେ—ଏବେ ଜାଣିଲ ତ, ଆଜକାଲି ସଂସାରରେ ସର୍ବଶ୍ରେଷ୍ଠ ସତୀ କିଏ ? ଦେବୀଗଣ ଏକସ୍ୱରରେ କହିଲେ—ଭଗବତୀ ପ୍ରାତଃସ୍ମରଣୀୟ ଅନସୂୟା ଦେବୀ ହିଁ ସର୍ବଶ୍ରେଷ୍ଠା ସତୀ । ତାଙ୍କଭଳି ସତୀ ଆଉ କେହି ନାହିଁ ।

ମହର୍ଷି ସୂତ କହୁଛନ୍ତି—ହେ ମୁନିଗଣ ! ପତିଙ୍କୁ ପରମେଶ୍ୱର ଭାବେ ସ୍ୱୀକାର କରି ଯେଉଁ ସ୍ତ୍ରୀ ନିଜର ସମସ୍ତ ଇଚ୍ଛାକୁ ପତିଙ୍କର ଇଚ୍ଛା ସହିତ ମିଶାଇ ଦିଏ, ସେ କଣ କରି ନପାରେ । ପତି ଯେଭଳି ହେଉ ପଛକେ ପତିବ୍ରତା ପତ୍ନୀ ନିଜର ଗୁଣ, ପ୍ରଭାବ ଓ ସାଧନା ବଳରେ ଓ ଏକନିଷ୍ଠତାଦ୍ୱାରା ଯାହା ଇଚ୍ଛା କରେ ତାହା କରିପାରେ । ବର୍ତ୍ତମାନ ଆପଣମାନଙ୍କୁ ଏକ କାହାଣୀ କହୁଛି ସେଥିରୁ ପତିବ୍ରତାର ପ୍ରଭାବ ସ୍ପଷ୍ଟଭାବେ ଜାଣିପାରିବେ । ପତିବ୍ରତାର ପ୍ରଭାବ ପାଖରେ କାହାର କୌଣସି କ୍ଷମତା ପ୍ରତିଷ୍ଠା ସମ୍ଭବ ନୁହେଁ । ପତିବ୍ରତା ଯେ କୌଣସି ଅସମ୍ଭବକୁ ସମ୍ଭବ କରିପାରେ ।

## ଛପ୍ପୟ

ଦେବୀ ଭିକ୍ଷା ଦେହୁଁ, କହେଁ—ହମ୍ ତବ୍ ଲେଂ ଭିକ୍ଷା ।<br>
ବସ୍ତ୍ରହୀନ ହୈ, ଦେହୁ ୟହୀ ହମ୍ ସବ୍ କୀ ଇଚ୍ଛା ॥<br>
ସତୀ ଧ୍ୟାନ ତେ ଜାନି କହୀ—ତୀନୋଂ ଶିଶୁ ହୋଵେଂ ।<br>
ପତିବ୍ରତା ପ୍ରନ ସତ୍ୟ ଭୟୋ, ବନି ବାଲକ ରୋଵେଂ ॥<br>
ଉମା, ରମା, ବାଣୀ ବିନୟ, କରୀ ଦେବ ଫିରତେଂ ଭୟେ ।<br>
ତୀନୌଁ ତବ୍ ସୁତ ହୋହିଁ ହମ୍, ହୈ ପ୍ରସନ୍ନ ସବ୍ ବର ଦୟେ ॥

# ପତିବ୍ରତାର ପ୍ରଭାବ

ଯା ପତିଂ ହରିଭାବେନ ଭଜେଚ୍ଛ୍ରୀରିବ ତତ୍ପରା ।
ହର୍ଯ୍ୟାତ୍ମନା ହରେର୍ଲୋକେ ପତ୍ୟା ଶ୍ରୀରିବ ମୋଦତେ ॥

(ଭାଗ-୭-୧୧-୨୯)

## ଛପ୍ପୟ

ପତିବ୍ରତା ଜଗ ମାହିଁ ଅଲୌକିକ ଚରିତ ଦିଖାଓୈଂ ।
ଜୀବିତ ମୃତପତି ସଙ୍ଗ ସତୀ ହ୍ୱୈ ସୁରପୁର ଜାଓୈଂ ॥
ପତି ପରମେଶ୍ୱର ମାନି ଅନଲ କୂଁ ଶୀତ ବନାଓୈଂ
ସୂର୍ଯ୍ୟ ଚନ୍ଦ୍ର ଗତି ରୋକି କାଲ ବିନୁ ପ୍ରଲୟ କରାଓୈଂ
ପତିପ୍ରାଣା ବେଶ୍ୟାସଦନ କୋଢ଼ୀ ପତି ଇଚ୍ଛା ସମୁଝି ।
ଜାତି ରହୀ ମୁନି ମଗ ମିଲେ, ପତି ପଗ ତିନ ତେଁ ଗୋ ଉରଝି ॥

ମନ ହେଉଛି ସର୍ବ ଶକ୍ତିମାନ୍ । ବ୍ରହ୍ମା ମନରୁ ଏ ଚରାଚର ବିଶ୍ୱ ରଚନା କରିଛନ୍ତି । ବିଷ୍ଣୁ ଓ ମହେଶ୍ୱର ମନରୁ ହିଁ ଏ ବିଶ୍ୱର ପାଳନ ଓ ସଂହାର କରନ୍ତି । ମନକୁ ଯେ ବଶୀଭୂତ କରିପାରିଛି, ସେ ସମଗ୍ର ଜଗତକୁ ବଶୀଭୂତ କରିଛି ବୋଲି ବୁଝିବାକୁ ହେବ । ସେହିପରି ଭଗବାନଙ୍କୁ ବଶ କରିଥିବା ଲୋକର ସ୍ଥାନ ସବୁଠାରୁ ଉଚ୍ଚରେ ; କିନ୍ତୁ ଯେ ମନର ବଶ୍ୟତା ସ୍ୱୀକାର କରେ, ସାଧାରଣ ତୃଣର ମଧ୍ୟ ସେ ଅଧୀନ ହୋଇଯାଏ । କ୍ଷୁଦ୍ରତମ ବିଷୟର ମଧ୍ୟ ସେ ଦାସ ପାଲଟି ଯାଏ । ମାନସିକ ଶକ୍ତିର ସୀମା ଅନନ୍ତ । ସେଭଳି ଶକ୍ତିଶାଳୀ ମନ ଆମ ପାଖରେ ଥିଲେ ବି ଆମେ ଦୁର୍ବଳ ଓ ଦୁଃଖୀ ହେଉଁ କାହିଁକି ? ତାର କାରଣ ହେଉଛି, ଆମେ ମନକୁ ବିଷୟ ଜଞ୍ଜାଳରେ ବୁଡ଼ାଇ ଦେଉଁ । ଅସଂଯତ ଭାବେ ମନକୁ ଏଆଡ଼େ ସେଆଡ଼େ କରିଥାଉଁ

ଆମେ ଆମ ମନକୁ ସଂଯତ କରୁନାହୁଁ, ଯେଉଁ ଗାଈ ଖୁଣ୍ଟରେ ବନ୍ଧା ଥାଏ ତା' ପାଖରୁ ଯଥା ସମୟରେ କ୍ଷୀର ମିଳେ, ସେହି କ୍ଷୀରରୁ ଦହି, ଲହୁଣୀ, ଘିଅ ହୁଏ । ଘିଅରେ ଯଜ୍ଞ କରାଯାଏ । ଦେବତାଏ ତୁଷ୍ଟ ହୁଅନ୍ତି । ବିଶ୍ୱର ମଙ୍ଗଳ ସାଧିତ ହୁଏ । ବାଛୁରୀ ବଡ଼ ହୁଅନ୍ତି । ଗୋସମ୍ପଦ ବୃଦ୍ଧି ପାଏ । ସେହି ସମ୍ପଦ ବଳରେ ସମସ୍ତେ ସୁଖୀ ହୁଅନ୍ତି; କିନ୍ତୁ ସେହି ଗାଈଙ୍କୁ ବନ୍ଧନ ମୁକ୍ତ କରିଦେଲେ ସେ ସ୍ୱାଧୀନ ଭାବେ ବୁଲେ । ଅନ୍ୟର ଫସଲ ନଷ୍ଟ କରେ । ଲୋକେ ଗାଳି ଦିଅନ୍ତି । ଅପଯଶ ବଢ଼େ । ଦୁଧ, ଦହି କଥା ଗୁଡ଼, କେବଳ ଦୁଃଖ ଓ ଅପମାନ ହିଁ ମିଳିଥାଏ । ଠିକ୍ ସେହିପରି ସଂଯତ ମନ ମାନବକୁ ବଳବାନ୍ କରେ । ମନସ୍ୱୀ ଯାହା ଚାହେଁ, ତାହା କରିପାରେ । ଶେଷରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ଉପନୀତ ହୁଏ । କ୍ଷିପ୍ତ ଚିତ୍ତବୃତ୍ତିର ନିରୋଧ କରିବା ହିଁ ଯୋଗ । ଯାହା ପ୍ରିୟ ଓ ମଙ୍ଗଳକର ସେଥିରେ ସର୍ବାନ୍ତଃକରଣରେ ମନ ଲଗାଇବାକୁ ଯୋଗ ସାଧନା କହନ୍ତି । ଭଗବତ୍ ପ୍ରତିମାରେ ହେଉ ବା ମନ୍ତ୍ରଜପ, ଧ୍ୟାନ, ପ୍ରାଣ ବା ଧର୍ମରେ ହେଉ କୌଣସିଠାରେ ମନକୁ ଲଗାଇବା ଉଚିତ । ବ୍ୟକ୍ତିବିଶେଷ ଇଚ୍ଛା ଅନୁସାରେ ଯୋଗ ସାଧନା କରିଥାଏ; କିନ୍ତୁ ପତିବ୍ରତା ନିଜକୁ ନିଜର ପ୍ରାଣନାଥ ପତିଙ୍କଠାରେ ସମର୍ପଣ କରି ଯୋଗୀମାନଙ୍କଠାରୁ ଅଧିକ ସାମର୍ଥ୍ୟ ଓ ସିଦ୍ଧି ଲାଭ କରିଥାଏ । ସେ ନିଜେ ମୁକ୍ତ ହେବା ସଙ୍ଗେ ସଙ୍ଗେ ପାପାତ୍ମା ପତିଙ୍କୁ ମଧ୍ୟ ଉଦ୍ଧାର କରିପାରେ । ମହର୍ଷି ସୂତ କହିଲେ—ମୁନିଗଣ ! ଆପଣମାନଙ୍କୁ ସର୍ବଶ୍ରେଷ୍ଠ ପତିବ୍ରତା ଶୈବ୍ୟାଙ୍କ ଚରିତ ସଂକ୍ଷେପରେ କହୁଛି, ଶୁଣନ୍ତୁ ।

ପ୍ରାଚୀନ କାଳରେ ଗଙ୍ଗାଯମୁନାର ମଧ୍ୟପ୍ରଦେଶରେ ଅହ୍ୱାର ନାମକ ଏକ ନଗର ଥିଲା । ସେଠାରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ବ୍ରାହ୍ମଣ ବିଚରା ପୂର୍ବ ଜନ୍ମର କୌଣସି ପାପ ହେତୁ କାମୁକ ଥିଲେ । ତାଙ୍କ ଦେହ କୁଷ୍ଠ ରୋଗାକ୍ରାନ୍ତ ହୋଇଥିଲା । ସାରା ଦେହରୁ ପୂଯରକ୍ତ ବହୁଥିଲା । ପ୍ରତିଦିନ ନୂଆ ନୂଆ ଘା ବାହାରୁଥିଲା ।

ଶୌନକ ପ୍ରଶ୍ନ କଲେ—ପ୍ରଭୋ ! କେଉଁ କାରଣରୁ ବ୍ରାହ୍ମଣଙ୍କୁ ଗଳିତ କୁଷ୍ଠ ହୋଇଥିଲା ? ଏଭଳି ପତିତ ଅବସ୍ଥାରେ ଆଉ ମଧ୍ୟ କାମୁକ ହେବାର କାରଣ କଣ ? ଏହି ପ୍ରଶ୍ନର ଉତ୍ତର ଦେବାକୁ ମହର୍ଷି ସୂତ କହିଲେ—ମହାନୁଭବ ! ପୂର୍ବଜନ୍ମର ସେହି ବ୍ରାହ୍ମଣ ବ୍ରହ୍ମହତ୍ୟା, ପରନିନ୍ଦା ଆଦି ଜଘନ୍ୟ ପାପ କାର୍ଯ୍ୟ କରିଥିଲା । ଅନ୍ୟକୁ ନିନ୍ଦା କରିବା ଭଳି ପାପ ଆଉ ନାହିଁ । ସେହି କାରଣରୁ ବ୍ରାହ୍ମଣ କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇଥିଲା । କିନ୍ତୁ ପୂର୍ବ ପୁଣ୍ୟଫଳରୁ ସେ ଏକ ପତିବ୍ରତା ପତିପ୍ରାଣା ପତ୍ନୀ ଲାଭ କରିଥିଲା । ସେହି ପତିବ୍ରତାଙ୍କ ନାମ ଶୈବ୍ୟା । ପତିଙ୍କୁ ସେ ପରମେଶ୍ୱର ଜ୍ଞାନରେ ଶ୍ରଦ୍ଧାର ସହିତ ସେବା କରୁଥିଲେ । ସବୁ ଦୃଷ୍ଟିରୁ ଶୈବ୍ୟା ପତିଙ୍କ ସନ୍ତୋଷ ବିଧାନ କରୁଥିଲେ ।

ପୂର୍ବ ଜନ୍ମରେ ସେହି ବ୍ରାହ୍ମଣର ଗୃହରେ ତିନି କନ୍ୟା ଥିଲେ । ରଜୋବତୀ ହେବା ପୂର୍ବରୁ ଦଶବର୍ଷ ବୟସରେ ସେମାନଙ୍କୁ ବ୍ରାହ୍ମଣ ସଜାତୀୟ ସୁଶୀଳ ଦେବଙ୍କ ବ୍ରାହ୍ମଣ କୁମାରଙ୍କୁ ଶ୍ରଦ୍ଧାର ସହିତ କନ୍ୟାଦାନ କରିଥିଲେ । ଗୃହସ୍ଥାଶ୍ରମରେ ଦୈନନ୍ଦିନ ନାନା ପ୍ରକାର ପାପ କାର୍ଯ୍ୟ, ଅଜ୍ଞାନରେ ହେଉ ବା ସଜ୍ଞାନରେ ହେଉ କରାଯାଇଥାଏ; କିନ୍ତୁ ଗୃହସ୍ଥର ସବୁଠାରୁ ଦୁଇଟି ପୁଣ୍ୟକର୍ମ ହେଉଛି ଅନ୍ନଦାନ ଓ କନ୍ୟାଦାନ । ଗୋ ଓ ଭୂମିଦାନକୁ ସର୍ବଶ୍ରେଷ୍ଠ ଦାନ କୁହାଯାଏ । ଅନ୍ନଦାନ ସେହି ଦୁଇ ଦାନଠାରୁ ଶ୍ରେୟସ୍କର । ପ୍ରାଣୀଦାନ ଓ କ୍ଷୁଧାର୍ତ୍ତଙ୍କୁ ଅନ୍ନଦାନ ଉଭୟ ସମାନ । ଦାନ ବିଷୟରେ ନାନାବିଧ ବିଧିବିଧାନ ରହିଛି । ଅପାତ୍ରରେ ଦାନ ଦେଲେତାହା ନିଷ୍ଫଳ ହୁଏ । ପୁଣ୍ୟ-ସ୍ଥାନରେ କେବେ କେବେ ଦାନ କାର୍ଯ୍ୟରେ ପାପ ମଧ୍ୟ ଘଟିଥାଏ, କିନ୍ତୁ ଅନ୍ନଦାନରେ ସେଭଳି ପାତ୍ରାପାତ୍ର ବିଚାର କରାଯାଏ ନାହିଁ । ଦ୍ୱାର ଦେଶରେ ଉପସ୍ଥିତ କ୍ଷୁଧାର୍ତ୍ତଙ୍କୁ ଅନ୍ନ ଦେବାଠାରୁ ବଡ଼ ପୁଣ୍ୟ କାର୍ଯ୍ୟ ନାହିଁ । କନ୍ୟାଦାନ ଅନ୍ନଦାନ ସହିତ ସମାନ । ଯୋଗ୍ୟ ପାତ୍ର ହାତରେ ଶ୍ରଦ୍ଧାର ସହିତ ବସ୍ତ୍ର ଆଭୂଷଣ ଭୂଷିତା କନ୍ୟା ଦାନକୁ ସର୍ବ-ଶ୍ରେଷ୍ଠ ଦାନ ବୋଲି କୁହାଯାଇଛି । କନ୍ୟାଦାନଦ୍ୱାରା ଗୃହସ୍ଥ ପରଜନ୍ମରେ ପାତିବ୍ରତ୍ୟ ପତ୍ନୀ ଲାଭ କରିଥାଏ । ସେ ବ୍ରାହ୍ମଣ ସେହି ପୁଣ୍ୟ ଅର୍ଜନ କରିଥିଲା । ତାହାରି ଫଳରେ ସେ ଏ ଜନ୍ମରେ ପତିବ୍ରତା ପତ୍ନୀ ଲାଭ କରିବା ସଙ୍ଗେ ସଙ୍ଗେ ସବୁକାଳ ପାଇଁ ଅଜର ଅମର ହୋଇ ରହିଲା ।

ସେହି କୁଷ୍ଠରୋଗୀ ବ୍ରାହ୍ମଣ ଯେତେବେଳେ ଯାହା ଇଚ୍ଛାକରେ ସତୀ ଶୈବ୍ୟା ତାହା ପୂରଣ କରନ୍ତି । ଶୈବ୍ୟାଙ୍କ ପାତିବ୍ରତ୍ୟର ସମ୍ବାଦ ଗୃହଆଡ଼େ ଖେଳିଗଲା । ପାପ ପ୍ରକାଶନରେ ପାପ ନଷ୍ଟ ହୁଏ । ପୁଣ୍ୟର ଗୋପନଦ୍ୱାରା ପୁଣ୍ୟ ପ୍ରସାରଲାଭ କରେ । ପୁଣ୍ୟକର୍ମ ବା ପାପକର୍ମ ଯେତେ ଗୋପନୀୟଭାବେ କଲେ ମଧ୍ୟ ତାହା ଦିନେ ନା ଦିନେ ପ୍ରଘଟ ହୁଏ । ଲୋକେ ଭାବନ୍ତି—ଆମେ ଏକାନ୍ତରେ କରୁଥିବା ପାପ ବା ପୁଣ୍ୟ କର୍ମକୁ କେହି ଦେଖୁ ନାହିଁ ; କିନ୍ତୁ ପରମାତ୍ମା ସମସ୍ତଙ୍କୁ ଦେଖୁଛନ୍ତି । ସୂର୍ଯ୍ୟ, ଚନ୍ଦ୍ର, ଜଳ, ବାୟୁ, ଆକାଶ, ଅନ୍ତରୀକ୍ଷ, ଦିନ, ରାତି, ସନ୍ଧ୍ୟା ଓ ଧର୍ମ ଏମାନେ ସବୁକଥା ଦେଖୁଛନ୍ତି ।

ଏ ସଂସାରରେ ଏକାନ୍ତ ସ୍ଥାନ କାହିଁ ? ଆମ ମୁଣ୍ଡରେ ଯେଉଁ ବିଚାରଆସୁଛି ତାହାର ମୂଳ ହେଉଛି ବାୟୁମଣ୍ଡଳ । ଆମେ ମନରେ ଯାହା ଭାବୁଛୁ ବା କରୁଛୁ, ସେ ସମସ୍ତ ବାୟୁଦ୍ୱାରା ପ୍ରଭାବିତ । ଶବ୍ଦ ହେଉଛି ନିତ୍ୟ । ଆମେ ଯେଉଁ ଶବ୍ଦ ବାଣୀ କହୁଛୁ ତାହା ନଷ୍ଟ ହୁଏ ନାହିଁ । ଯଦି ଶବ୍ଦ ନଷ୍ଟ ହୋଇଯାଉଥାନ୍ତା, ତେବେ ଦୂର ଶ୍ରବଣ-ଦ୍ୱାରା ଦୂରସ୍ଥ ବ୍ୟକ୍ତିର କଥା ଆମେ କିପରି ଶୁଣିପାରନ୍ତୁ ? ଥରେ ଜଣେ ରାଜାଙ୍କୁ ତାଙ୍କ ପୁତ୍ର ସହିତ କୌଣସି ଯବନ ରାଜା ବନ୍ଦୀ କରିଥିଲେ । ବନ୍ଦୀ ହୋଇଥିବା ରାଜା ଦାନ ପୁଣ୍ୟ କରିବା ନିମିତ୍ତ ଯବନ ରାଜାଙ୍କୁ ଆଦେଶ ମାଗିଲେ । ଉଦାରଚିତ୍ତବଶତଃ

ଯବନରାଜା ମଧ୍ୟ ଅନୁମତି ଦେଲେ । ବଡ଼ ବଡ଼ ଟୋକେଇରେ ଫଳ ମିଠାଇ ଆସି ଆସିଲା । ଦିନେ ସକାଳେ ରାଜକୁମାର ଏବଂ ରାଜା ଦୁଇଟି ବଡ଼ ଟୋକେଇରେ ବସି ବନ୍ଦିଶାଳାରୁ ପଳାୟନ କଲେ । ଯମୁନାକୂଳରେ ଘୋଡ଼ା ପ୍ରସ୍ତୁତ ଥିଲେ । ଦୁହେଁ ଘୋଡ଼ାରେ ବସି ପଳାଇ ଯାଉଥିଲେ । କିଛିଦୂର ଗିବା ପରେ ସୂର୍ଯ୍ୟୋଦୟ ହେଲା । ଗ୍ରାମର ସ୍ତ୍ରୀଲୋକମାନେ ନଦୀକୁ ଗାଧୋଇ ଗିବା ବାଟରେ କଥାବାର୍ତ୍ତା ହେଉଥିଲେ ଯେ, ରାଜକୁମାର ସହିତ ମହାରାଜା ଦୁଇଟି ବଡ଼ ଟୋକେଇରେ ବସି ବନ୍ଦୀଶାଳାରୁ ପଳାଇଯାଇଛନ୍ତି । ରାଜକୁମାର ଏହା ଶୁଣି ବାପାଙ୍କୁ ପଚାରିଲେ—ବାପା, ଏପର୍ଯ୍ୟନ୍ତ ଆମେ ବନ୍ଦୀଶାଳାରୁ ପଳାଇ ଆସିଥିବା ଖବର ରାଜକର୍ମଚାରୀମାନେ ଜାଣି ନ ଥିବେ । ପୁଣି ଏ ସ୍ତ୍ରୀଲୋକମାନେ ଏ ଖବର ଜାଣିଲେ କିମିତି ?

ପୁଅର କଥାରେ ରାଜା ହସି ହସି କହିଲେ-- ବାବୁ ! ଆମ୍ଭେମାନେ ଯେତେବେଳେ ପଳାଇ ଆସିବା କଥା ଚିନ୍ତାକଲୁ, ସେତେବେଳେ ଆମ ଭାବନା ବାୟୁମଣ୍ଡଳରେ ବ୍ୟାପ୍ତ ହୋଇଗଲା । ଆମେ ପଳାଇବା ପୂର୍ବରୁ ବା ହୃଦୟରେ ଆମର ଭାବନା ଚାରିଆଡ଼େ ଖେଳିଗଲା । କେଣୁ କୌଣସି ଭାବନା ବା ବିଚାର କେବେ ଲୁଚି ରହେ ନାହିଁ । ସେତେବେଳେ ସମ୍ବାଦପତ୍ର ନ ଥିଲା କି ସମ୍ବାଦଦାତା ନ ଥିଲେ । ତଥାପି ପତିବ୍ରତାର ଯଶ ଚାରିଆଡ଼େ ପ୍ରଚାର ହୋଇଗଲା ।

ଦିନେ ସେହି କୁଷ୍ଠରୋଗୀ ନିଜ ଘର ଆଗରେ ବସିଥିଲା । ସେହି ବାଟଦେଇ ନଗରର ସର୍ବଶ୍ରେଷ୍ଠ ବେଶ୍ୟା ସାଜପୋଷାକ ହୋଇ ଯାଉଥିଲା । ସେ ସେଠା ରାଜାଙ୍କ ରାଜବେଶ୍ୟା ଥିଲା । ସେ ଯେପରି ସୁନ୍ଦରୀ ସେହିପରି ଧନବତୀ ଥିଲା । ତା'ର ଅନେକ ଦାସ ଦାସୀ ଥିଲେ । ତାହାର ରୂପାଗ୍ନିରେ ଅସଂଖ୍ୟ ଧନ, ମାନ, ରାଜା, ମହାରାଜା ପତଙ୍ଗ ଭଳି ନିଜ ନିଜର ଧନ ଯୌବନ ଭସ୍ମସାତ୍ କରୁଥିଲେ । ଏକେ ସେ ବେଶ୍ୟା ଅତ୍ୟନ୍ତ ସୁନ୍ଦରୀ ଥିଲା, ଦ୍ୱିତୀୟରେ ରାଜଦରବାରରେ ନାଚି, ଗାଇ ଅଜସ୍ର ବସ୍ତ୍ର ଆଭୂଷଣ ଲାଭ କରୁଥିଲା । ସେହି ବସ୍ତ୍ର ଭୂଷଣରେ ଭୂଷିତା ହୋଇ କୁଷ୍ଠରୋଗୀର ଘର ଆଗ ରାସ୍ତାରେ ସେ ଯାଉଥିଲା । ତାକୁ ଦେଖି କୁଟିଆ ବ୍ରାହ୍ମଣର ମନ ଟଳିଗଲା । ହୃଦୟରେ ତା'ର କାମାବେଗ ଏପରି ବଢ଼ିଗଲା ଯେ, ସେ ଆଦୌ ଶାନ୍ତରେ ରହି ପାରିଲା ନାହିଁ । କାମପୀଡ଼ା କାରଣରୁ ସେ ଅତ୍ୟନ୍ତ ଉଦାସ ଓ ଦୁଃଖିତ ହୋଇ କେବଳ ଦୀର୍ଘଶ୍ୱାସ ଛାଡ଼ିବାରେ ଲାଗିଲା ଏବଂ ବାରମ୍ବାର ଏକଡ଼ ସେକଡ଼ ହୋଇ କଡ଼ ବଦଳାଉଥିଲା । ଆଜି ପତିଙ୍କୁ ଏଭଳି ଅବସ୍ଥାରେ ଦେଖି ପତିବ୍ରତାର ମନ ବ୍ୟାକୁଳ ହୋଇ ଉଠିଲା । ସେ ଅତି ମଧୁର ସ୍ୱରରେ ପତିଙ୍କୁ ସମ୍ବୋଧନ କରି କହିଲା—ପ୍ରାଣନାଥ ! ମନେ ହେଉଛି, ଆଜି ଆପଣ କୌଣସି ମାନସିକ ବ୍ୟଥାରେ ବ୍ୟଥିତ ଅଛନ୍ତି । ଯଦି ମୋ'ଠାରେ ଲୁଚାଇ ରଖିବାଭଳି ହୋଇ ନଥାଏ, ତେବେ ଖୋଲି-ଖୋଲି ମୋତେ କହନ୍ତୁ । ମୁଁ ମୋ ପ୍ରାଣ ବଳିଦାନ ମଧ୍ୟରେ ତାହାର ପ୍ରତିକାର ପାଇଁ

ଚେଷ୍ଟା କରିବ । ଆପଣଙ୍କ ଦୁଃଖର କାରଣ କ'ଣ ? ଏ ଦାସୀର ସେବାରେ କୌଣସି ତ୍ରୁଟି ରହିଗଲା କି ? ଅଜାଣାରେ ମୁଁ କୌଣସି ଅପରାଧ କରି ପକାଇଛି କି ?

ପତ୍ନୀର ବିନୀତ ନିବେଦନ ଶୁଣି ବ୍ରାହ୍ମଣ ଅତୀବ ଦୁଃଖର ସହିତ କହିଲେ— ଦେବି ! ତୁମେ ତ ପ୍ରାଣପଣେ ମୋର ସେବା କରୁଛ । ତୁମର ଆଉ କି ଅପରାଧ ହୋଇ ପାରିବ ? ତୁମେ କେବେହେଲେ ମୋ କାର୍ଯ୍ୟରେ ପ୍ରମାଦ ସୃଷ୍ଟି କରିନାହଁ । ତେଣୁ ମୋ ସେବାରେ କୌଣସି ପ୍ରକାର ତ୍ରୁଟି ହେବାର ସମ୍ଭାବନା ନାହିଁ । ଅବଶ୍ୟ ମୋ ମନ ଆଜି ବଡ଼ ଦୁଃଖିତ ଅଛି ; କିନ୍ତୁ ତାହା ମୋ ନିଜ ପାପର ଫଳ । ସେଥିରେ ତୁମର କୌଣସି ଦୋଷ ନାହିଁ । ଆଜି ଶରୀର ଯନ୍ତ୍ରଣା ଅପେକ୍ଷା ମାନସିକ ବ୍ୟଥା ମୋତେ ଖୁବ୍ ବ୍ୟଥିତ କରୁଛି ।

ସତୀ କହିଲେ—ଆପଣ ଦୟା କରି ସେହି ମାନସିକ ବ୍ୟଥାର କାରଣ ମୋତେ କୁହନ୍ତୁ । ମୁଁ ଯଥାଶକ୍ତି ତାହା ନିରାକରଣ ନିମିତ୍ତ ଯତ୍ନଶୀଳ ହେବି । ବ୍ରାହ୍ମଣ କହିଲେ—ଦେବି ! ସେ କଥା କହିବା ପାଇଁ ମୋତେ ଲଜ୍ଜା ଲାଗୁଛି ; କିନ୍ତୁ ତୁମକୁ ଯଦି ନ କହିବି, ତେବେ ମୋର ଜୀବନ ସମ୍ଭବତଃ ରହିବ ନାହିଁ । ମୋ ମନୋରଥ କେବେହେଲେ ପୂର୍ଣ୍ଣ ହୋଇପାରିବ ନାହିଁ । ତାହା ଅତ୍ୟନ୍ତ ଦୁଃସାଧ୍ୟ । ମୋର ପାପ ମନ ନଗରର ବାରାଙ୍ଗନାଠାରେ ଆସକ୍ତ ହୋଇଛି । ବହୁ ଚେଷ୍ଟାକଲେ ମଧ୍ୟ ମନ ସେକଥା ଭୁଲୁ ନାହିଁକି, ବୁଝୁନାହିଁ । ଏହାହିଁ ମୋ ଦୁଃଖର କାରଣ ।

ସତୀ ଦେବୀ କହିଲେ—ପ୍ରଭୋ ! ଏହା ଅତ୍ୟନ୍ତ କଠିନ କାର୍ଯ୍ୟ, ତାହା ମୁଁ ଜାଣେ । ତଥାପି ଆପଣଙ୍କ ମନୋରଥ ପୂରଣ ପାଇଁ ମୁଁ ଆପ୍ରାଣ ଯତ୍ନ କରିବି । ତେଣୁ ଆପଣ ନିଶ୍ଚିନ୍ତ ରହନ୍ତୁ । ଏହା କହି ସତୀ ସେହି ବେଶ୍ୟାକୁ ପ୍ରସନ୍ନ କରିବା ନିମିତ୍ତ ଉପାୟ ଚିନ୍ତା କଲେ । ଚିନ୍ତା କରୁଁ କରୁଁ ସେ ନିଜର କର୍ତ୍ତବ୍ୟ ସ୍ଥିର କରିନେଲେ ।

ସତୀ ପ୍ରତ୍ୟହ ପ୍ରାତଃକାଳରେ ମୁହଁଅନ୍ଧାରରୁ ଉଠି ଝାଡ଼ୁ ଓ ଗୋବର ନେଇ ସେହି ବେଶ୍ୟା ଘରକୁ ଯାଆନ୍ତି । ଘରର ଅଗଣା ଝାଡ଼ୁ କରି ଲିପାପୋଛା କରନ୍ତି । ନାନାପ୍ରକାର ଶୁଭ ଚିହ୍ନମାନ ଅଙ୍କନ କରି କେହି ଉଠିବା ପୂର୍ବରୁ ନିଜ ନିଜ ଘରକୁ ଫେରିଆସନ୍ତି । ବେଶ୍ୟା ସକାଳୁ ଉଠି, ତଳକୁ ଆସି ଏପ୍ରକାର ପରିଷ୍କାର ପରିଚ୍ଛନ୍ନତା ଦେଖି ଆଶ୍ଚର୍ଯ୍ୟ ହୋଇଯାଏ । ସେ ସମସ୍ତଙ୍କୁ ପଚାରେ ଏଭଳି ଯତ୍ନର ସହିତ ଲିପାପୋଛା କରୁଛି କିଏ ? କିନ୍ତୁ କେହି କିଛି କହି ନ ପାରିବାରୁ ବେଶ୍ୟା ଅଧିକ ଆଶ୍ଚର୍ଯ୍ୟ ହେଲା । ଏଭଳି ଭାବରେ ତିନଦିନ କଟିଗଲା । ଚତୁର୍ଥ ଦିନ ବେଶ୍ୟା ଲୁଚି ରହି ଅପେକ୍ଷା କଲା । ସତୀ ସେଠାକୁ ଯାଇ ସଫେଇ ଆରମ୍ଭ କରିବାମାତ୍ରେ ବେଶ୍ୟା ତା' ପାଖକୁ ଆସି ପାଦ ଧରି କହିଲା—ମା, ଆପଣ ସତ୍ୟ ସାଧ୍ୱୀ ନାରୀ । ଦେବତା ଆପଣଙ୍କ ପୂଜା କରୁଛନ୍ତି । ମୁଁ ଲୋକନିନ୍ଦିତା, ପତିତା ପଣ୍ୟସ୍ତ୍ରୀ ମାତ୍ର । ଆପଣ ଏହି କାର୍ଯ୍ୟ କରି ମୋ ଉପରେ ଅଧିକ ପାପଭାର ଲଦୁଛନ୍ତି ନାହିଁକି ? ଆପଣ

ମୋ'ଠାରୁ କ'ଣ ଚାହୁଁଛନ୍ତି ? ଆପଣଙ୍କର ଧନ ଯଦି ଆବଶ୍ୟକ, ତେବେ ମୋ ପାଖରେ ହଜାରେ ମହଣ ସୁନା ଅଛି, ଆପଣ ଯେତେ ଇଚ୍ଛା ନେଇ ଯାଆନ୍ତୁ । ମଣି, ମୁକ୍ତା, ହୀରା, ବୈଡ଼ୁର୍ଯ୍ୟ ଅସଂଖ୍ୟ ମୋ ଘରେ ପଡ଼ିରହିଛି, ଆପଣଙ୍କର ଯାହା ଦରକାର ତାହା ନିଅନ୍ତୁ । ଆପଣଙ୍କର କି ଉପକାର କରିପାରିବି, ତାହା ମୋତେ ଦୟାକରି କହନ୍ତୁ ।

ସତୀ ଶୈବ୍ୟା ସ୍ନେହଭରା ସ୍ୱରରେ କହିଲେ—ଭଉଣି ! ମୋର କୌଣସି ଧନ ସମ୍ପଦ ଆବଶ୍ୟକ ନାହିଁ, କିନ୍ତୁ, ଗୋଟିଏ କାମ ତୁମଦ୍ୱାରା କରେଇବା ପାଇଁ ମୁଁ ଇଚ୍ଛାକରୁଛି । କାର୍ଯ୍ୟଟି ଅତି କଠୋର । ତୁମେ ତାହା କରିପାରିବ ନାହିଁ ।

ଏହା ଶୁଣି ଅତୀବ ସ୍ନେହର ସହିତ ବେଶ୍ୟା କହିଲା—ମା, ମୁଁ ତ ପତିତା, ସେଥିରେ ସନ୍ଦେହ ନାହିଁ । କିନ୍ତୁ ମୁଁ ହୃଦୟହୀନ ନୁହେଁ । ବେଶ୍ୟାବୃତ୍ତି କରୁଥିଲେ ମଧ୍ୟ ମୁଁ ମୋ ହୃଦୟକୁ ବଳି ଦେଇ ନାହିଁ । ମୁଁ ପ୍ରତିଜ୍ଞା କରି କହୁଛି, ମୋ ପ୍ରାଣ ବିନିମୟରେ ମୁଁ ଆପଣଙ୍କ ପ୍ରିୟକାର୍ଯ୍ୟ କରିପାରିବି । ନିଶ୍ଚୟ କରିବି ଏବଂ କାଳବିଳମ୍ବ ନ କରି କରିବି । ଆପଣ ଯାହା କହିବେ ତାହା ବିନା ବିଚାରରେ ପାଳନ କରିବି । ଆପଣ ଆଦୌ ସନ୍ଦେହ ନ କରି ମୋତେ ବିଶ୍ୱାସ କରନ୍ତୁ ।

ସତୀ କହିଲେ—ଦେବି ! ଆପଣଙ୍କ ପ୍ରାଣରେ ମୋର ଆବଶ୍ୟକତା ନାହିଁ ; କିନ୍ତୁ ଆପଣଙ୍କଦ୍ୱାରା ମୋର କୁଷ୍ଠରୋଗଗ୍ରସ୍ତ ପତିଙ୍କ ମନୋରଥ ପୂର୍ଣ୍ଣ କରିବାକୁ ଚାହୁଁଛି । ତାଙ୍କ ସାରା ଦେହରେ ଗଳିତକୁଷ୍ଠ । ସେଥିରୁ ସର୍ବଦା ପୂଯରକ୍ତ ନିସୃତ ହେଉଛି ।

ଏହା ଶୁଣି ବେଶ୍ୟା ବିଚଳିତା ହୋଇପଡ଼ିଲା । ପୁଣି କିଛି ସମୟ ପରେ ଧୈର୍ଯ୍ୟ ଧାରଣ କରି କହିଲା—ଦେବି ! ଆପଣ ଜାଣନ୍ତି ଶରୀର ସମସ୍ତଙ୍କର ପ୍ରିୟ । ମୋ ଘରକୁ ରାଜା, ରାଜପୁତ୍ର, ଧନୀ, ମାନୀ ପୁରୁଷମାନେ ସର୍ବଦା ଆସନ୍ତି । ହେଉ, ଗୋଟିଏ ଦିନ ନିଶ୍ଚୟ ମୁଁ ଆପଣଙ୍କ ପତିଙ୍କୁ ଦେବି ।

ସତୀ ଆନନ୍ଦ ହୃଦୟରେ ଘରକୁ ଫେରି ଆସିଲେ । ସ୍ୱାମୀଙ୍କ ପାଖକୁ ଯାଇ କହିଲେ—ପ୍ରାଣନାଥ ! ଆପଣଙ୍କ ମନୋରଥ ପୂର୍ଣ୍ଣ ହେଲା । ଆଜି ଆପଣ ନିଜର ଅଭିଳାଷ ପୂର୍ଣ୍ଣ କରି ପାରିବେ । ପତିଙ୍କ ଅସାମର୍ଥ୍ୟ ଅବସ୍ଥା ଲକ୍ଷ୍ୟ କରି ସତୀ ପୁଣି କହିଲେ—ଆପଣ ସେଠାକୁ ଯିବା ବିଷୟରେ ଆଦୌ ଚିନ୍ତା କରନ୍ତୁ ନାହିଁ । ମୁଁ କାନ୍ଧରେ ବସାଇ ଆପଣଙ୍କୁ ବେଶ୍ୟା ଘର ପର୍ଯ୍ୟନ୍ତ ନେଇଯିବି ।

ଲଜ୍ଜାରେ ମୁଣ୍ଡ ତଳକୁ କରି ପତି କହିଲେ—ଦେବି, ତୁମେ ଧନ୍ୟା । ତୁମେ ମର୍ତ୍ତ୍ୟର ନୁହେଁ ବୈକୁଣ୍ଠବାସିନୀ ନାରୀ । ଅନ୍ୟ କୌଣସି ନାରୀ ଏହା କେବେ କରି ପାରିବେ ନାହିଁ ।

ସୂତ କହୁଛନ୍ତି—ହେ ମୁନିଗଣ ! କାମାତୁର ପୁରୁଷର ଲଜ୍ଜାଶୀଳ, ସଙ୍କୋଚ, ନିନ୍ଦା, ଅପବାଦର ଭୟ ନ ଥାଏ । ଋଷିରେ ସେହି କୁଷ୍ଠରୋଗୀ ପତ୍ନୀର କାନ୍ଧରେ ବସି ବେଶ୍ୟାଘର ଆଡ଼କୁ ଗଲେ । ଦୈବବଶତଃ ମାଣ୍ଡବ୍ୟ ମୁନି ବାଟ ମଝିରେ ଶୂଳୀ ଉପରେ ବସିଥାନ୍ତି । ହଠାତ୍ ତାଙ୍କର ସମାଧି ଭଗ୍ନ ହେଲା । ସେତେବେଳକୁ ଅଧ-ରାତି । ଅନ୍ଧାର ହୋଇଥିବାରୁ ସତୀ କିଛି ଦେଖିପାରୁ ନ ଥିଲେ । ଦୈବାତ୍ କୁଷ୍ଠ-ରୋଗୀର ପାଦ ମୁନିଙ୍କ ମୁଣ୍ଡରେ ବାଜିଗଲା । କୁଷ୍ଠର ଭୟଙ୍କର ଦୁର୍ଗନ୍ଧରେ ମୁନିଙ୍କ ନାକ ଫାଟିପଡ଼ନ୍ତେ ସେ କ୍ରୋଧରେ ଅଗ୍ନିର ହୋଇ ଅଭିଶାପ ଦେଲେ । ଯେଉଁ ଦୁଷ୍ଟର ପାଦ ମୋର ତପଃପୂତ ଶରୀରରେ ବାଜିଲା ସେ ଆଜିଠାରୁ ଦଶମ ଦିନ ସୂର୍ଯ୍ୟୋଦୟ ହେବା ସଙ୍ଗେ ସଙ୍ଗେ ମୃତ୍ୟୁବରଣ କରିବ ।

ଏହି ଅଭିଶାପ ଶୁଣିବାମାତ୍ରେ କୁଷ୍ଠରୋଗୀର କାମ ବାସନା ଦୂର ହୋଇ ଗଲା । ମୃତ୍ୟୁମୁଖରୁ କାମଭୋଗ କରି ଭଲ ଲାଗିବ ? ସେ ହଠାତ୍ ସ୍ତ୍ରୀକୁ କହିଲେ—ଦେବି ! ଶୀଘ୍ର ଘରକୁ ଫେରି ଚାଲ । ଏବେ ତ ମୁଁ ମରିବି ।

ସତୀ ଧୈର୍ଯ୍ୟର ସହିତ ଆଶ୍ୱାସନା ଦେଇ କହିଲେ—ପ୍ରାଣନାଥ ! ଆପଣ ଆଦୌ ଚିନ୍ତିତ ହୁଅନ୍ତୁ ନାହିଁ । ଋଷି ଏବେ ଯେଉଁ ଅଭିଶାପ ଦେଲେ ସେଥିରେ ଦଶଦିନ ପରେ ମୃତ୍ୟୁ ହେବ । ମୁଁ କହୁଛି, ଆଜିଠାରୁ ସୂର୍ଯ୍ୟ ଆଉ ଉଦୟ ହେବେ ନାହିଁ । ତେଣୁ ସୂର୍ଯ୍ୟ ଉଦୟ ନ ହେଲେ ମରିବା ପ୍ରଶ୍ନ ଉଠୁଛି କେଉଁଠୁ ? ଏହା କହି ନିଜର ସ୍ୱାମୀଙ୍କୁ ନେଇ ସତୀ ଘରକୁ ଫେରିଆସିଲେ । ସତିକି ସତ ସତୀଙ୍କ ବଚନ ଅନୁସାରେ ସୂର୍ଯ୍ୟ ଆଉ ଉଦୟ ହେଲେ ନାହିଁ । କେବଳ ରାତି, ଅସରନ୍ତି ରାତି । ଯାଗଯଜ୍ଞ, ସଂସାରର ଦୈନନ୍ଦିନ ଜୀବନଯାତ୍ରା ବନ୍ଦ ହୋଇଗଲା । ଚାରିଆଡ଼େ ହାହା-କାର ଖେଳିଗଲା । ଦେବଗଣ ବ୍ରହ୍ମାଙ୍କ ପାଖକୁ ଯାଇ ନିବେଦନ କଲେ । ବ୍ରହ୍ମା କହିଲେ—ଏ କଥା ମୋ ଶକ୍ତିର ବାହାରେ । ବିଷ୍ଣୁ ଓ ମହେଶ୍ୱର ମଧ୍ୟ ସତୀର କଥାକୁ ଅନ୍ୟଥା କରିପାରିବେ ନାହିଁ । କେବଳ ସେହି ସତୀହିଁ ତା' କଥାକୁ ଫେରାଇନେଇ ପାରେ ।

ଶେଷରେ ବ୍ରହ୍ମାଙ୍କ ସହିତ ଦେବଗଣ ସତୀଙ୍କ ଘରେ ଯାଇ ଉପସ୍ଥିତ ହେଲେ । ସତୀଙ୍କ ପୂଜା ଅଭ୍ୟର୍ଥନା ସ୍ୱୀକାର କରି ଦେବଗଣ କହିଲେ—ଦେବି ! ତିନି ଲୋକରେ ହାହାକାର ପଡ଼ିଯାଇଛି । ତୁମେ ସୂର୍ଯ୍ୟଙ୍କୁ ଉଦୟ ହେବା ପାଇଁ କୁହ ।

ସତୀ କହିଲେ—ସୂର୍ଯ୍ୟଙ୍କ ସହିତ ମୋର କୌଣସି ଶତ୍ରୁତା ନାହିଁ । ସୂର୍ଯ୍ୟ ଉଦୟ ହେଲେ ମୋ ପତି ମୃତ୍ୟୁବରଣ କରିବେ । ସେଥିପାଇଁ ସୂର୍ଯ୍ୟୋଦୟ ନ ହେଉ ବୋଲି ମୁଁ କହୁଛି ।

ପିତାମହ ବ୍ରହ୍ମା କହିଲେ—ଏକମାତ୍ର ପତି ତୁମର ମୃତ୍ୟୁବରଣ କଲେ ସମଗ୍ର ବ୍ରହ୍ମାଣ୍ଡର ମଙ୍ଗଳ ହେବ । ପରୋପକାର ପାଇଁ ଏତିକି ସ୍ୱାର୍ଥ ତ୍ୟାଗ କର, କ୍ଷୁଦ୍ରତା ପରିହାର କର । ଏଭଳି ଜିଦ୍ କରିବା ଠିକ୍ ନୁହେଁ ।

ସତୀ ଉତ୍ତର ଦେଲେ—ଭଗବନ୍ ! ପତି ହିଁ ସତୀର ସର୍ବସ୍ୱ । ପତିଙ୍କ ବିନିମୟରେ ପରୋପକାରକୁ ମୁଁ ବଡ଼ ମନେ କରୁନାହିଁ । ବିଧବା ହେବା ସତୀ ପକ୍ଷରେ ନିନ୍ଦାର କଥା । ମୁଁ କୌଣସି ପ୍ରକାରେ ଆପଣଙ୍କ କଥା ସ୍ୱୀକାର କରିପାରିବି ନାହିଁ ।

ବ୍ରହ୍ମା ଦେଖିଲେ ତାଙ୍କ କଥା ରହିବ ନାହିଁ । ସେ ଦେବତାମାନଙ୍କୁ ଆଦେଶ ଦେଲେ ସତୀ ଅନସୂୟାଙ୍କୁ ଯାଇ ପ୍ରାର୍ଥନା କରିବା । ସତୀ ଅନସୂୟା କହିଲେ ଭଗବତୀ ଶୈବ୍ୟା ତାଙ୍କ କଥା ରଖିବେ । ଦେବଗଣଙ୍କ ପ୍ରାର୍ଥନା ରକ୍ଷା କରି ଅନସୂୟା ଆସି ପହଞ୍ଚିଲେ । ସେ ସବୁପ୍ରକାରେ ସତୀ ଶୈବ୍ୟାଙ୍କୁ ବୁଝାଇ କହିଲେ—ଦେବି ! ତୁମେ ବିଧବା ହେବନାହିଁ, ମୁଁ ତୁମ ପତିଙ୍କୁ ଜୀବନ ଦାନ ଦେବି । ଦେବଗଣ ମଧ୍ୟ ଭଗବତୀ ଅନସୂୟାଙ୍କୁ ସମର୍ଥନ କଲେ । ଦେବକାର୍ଯ୍ୟ ପାଇଁ ଦେବୀ ଅନସୂୟା ଦଶ ରାତି ଏକରାତିରେ ପରିଣତ କଲେ । ରାତ୍ରି ଶେଷରେ ଯେତେବେଳେ ସୂର୍ଯ୍ୟୋଦୟ ହେଲେ ସେତେବେଳେ ମୁନିଙ୍କ ଅଭିଶାପ ଅନୁସାରେ କୁଷ୍ଠ ରୋଗୀର ଶରୀର ଭସ୍ମ ହୋଇଗଲା ; କିନ୍ତୁ ସେହି ଅଗ୍ନିରୁ ଶୁଦ୍ଧ ସୁବର୍ଣ୍ଣ କାନ୍ତି ଧାରଣ କରି ସତୀଙ୍କ ପତି ବାହାରି ଆସିଲେ । ସମସ୍ତେ ଆନନ୍ଦିତ ହେଲେ । ସତୀଙ୍କ ପ୍ରଭାବ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଭଗବତୀ ଅନସୂୟା ନିଜର ପାତିବ୍ରତ୍ୟ ପ୍ରଭାବରେ ତ୍ରିଲୋକର ସଙ୍କଟ ଦୂର କରିଥିଲେ । ସେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଯେପରି ନିଜର ପୁତ୍ର ରୂପେ ଲାଭ କରିଥିଲେ ସେହିପରି ଗଙ୍ଗାକୁ ମଧ୍ୟ ପ୍ରକଟ କରିଥିଲେ ।

ମହର୍ଷି ଶୌନକ ମହାମୁନି ସୂତଙ୍କୁ ପ୍ରଶ୍ନ କଲେ—ଭଗବତୀ ଅନସୂୟା କିପରି ଗଙ୍ଗାକୁ ପ୍ରକଟ କଲେ ତାହା କହନ୍ତୁ ।

## ଛପ୍ପୟ

କରୟୋ କୋପ ମୁନି ଶାପ ଦୟୋ ଜିହି କୀନ୍ହ ଅବଜ୍ଞା ।
ସୂର୍ଯ୍ୟୋଦୟ କେ ହୋତ ମରେ ମେରୀ ଅସ ଆଜ୍ଞା ॥
ସତୀ କହେ ରବି ଉଦୟ ହୋହିଁ ଗୋ ନାହୀଁ ଅବହି ।
ତୀନ ଦିବସ ତକ ରାତ୍ରି ଭଈ ଘବରାୟେ ସବହି ॥
ସୁର ଅନସୂୟା ଲେ ଗୟେ ସତୀ ସଖୀ ସନ୍ତୋଷ କରି ।
ପତି ଜିବାୟ ରବି ଉଦୟ କରି ଗଈ ସବନକୋ ଦୁଃଖ ହରି ॥

## ପୁତ୍ରଲାଭ ନିମିତ୍ତ ଅତ୍ରିଙ୍କ ତପସ୍ୟା

ଶରଣଂ ତଂ ପ୍ରପଦ୍ୟେଽହଂ ଯ ଏବ ଜଗଦୀଶ୍ୱରଃ ।
ପ୍ରଜା ମାତ୍ମସମାଂ ମହ୍ୟଂ ପ୍ରଯଚ୍ଛତ୍ୱିତି ଚିନ୍ତୟନ୍ ।

(ଭାଗ-୪-୧-୨୦)

### ଛପ୍ପୟ

ଅତ୍ରି କରେ ତପ ଉଗ୍ର, ବାୟୁ ଭକ୍ଷଣ କରି ବନମେଁ ।
ଜଗତ ଈଶ ନିଜ ସଦୃଶ ପୁତ୍ର ଦେ ମୋତେଂ ମନମେଂ ।
ସିର ତେ ନିକସୀ ଅଗ୍ନି ତପସ୍ୟା ତେଜ ଦେଖାବେ ।
ସାବ ଭାବ ମୁନି ଭୟେ ବିଶ୍ୱକୁଁ ଆଁଚ ଜରାବେ ।।
ସୁର ମୁନି ଲଖିକେଁ ଅନଳ କୀ, ତପତେଁ ସବ ବ୍ୟସ୍ତ ଭୟେ ।
ବର ଦେବେକୁଁ ବିଷ୍ଣୁ ଶିବ ବିଧି ତୀନୋ ମୁନି ଢିଗ ଗୟେ ।

ହଜାର ହଜାର ଜନ୍ମ ଧରି ପୁରୁଷ ଯୋଗ, ତପସ୍ୟା ଓ ସମାଧିଦ୍ୱାରା ସେହି ସର୍ବେଶ୍ୱର, ସର୍ବାଧାର, ଆନନ୍ଦକନ୍ଦ, ସଚ୍ଚିଦାନନ୍ଦ ପ୍ରଭୁଙ୍କ ଆରାଧନା କରିବା ପରେ କେହି କେହି ଭଗବଦ୍‌ଭକ୍ତି ଲାଭ କରନ୍ତି । ହେଲେ ପ୍ରଭୁଙ୍କ କୃପା ବିନା ତାହା ସମ୍ଭବ ନୁହେଁ । ପ୍ରଭୁ ଛଳ, କପଟ ରହିତ ବ୍ୟକ୍ତି ଉପରେ ସନ୍ତୁଷ୍ଟ ଥାଆନ୍ତି । ଭଗବାନ୍‌ଙ୍କ ଦର୍ଶନ ଲାଭ ଦୁର୍ଲଭ । ପୁଣି ତାଙ୍କ ସହିତ ସଖା, ପୁତ୍ର, ମିତ୍ର, ପତି ଆଦି ସମ୍ବନ୍ଧ ସ୍ଥାପନ କରିବା ଆହୁରି ଦୁରୂହ କାର୍ଯ୍ୟ । ଜନ୍ମ ଜନ୍ମାନ୍ତର ଧରି ଯେ ସୁକୃତ ଅର୍ଜନ କରିଛି, ତପସ୍ୟାଦ୍ୱାରା ଯାହାର ହୃଦୟ ପବିତ୍ର ହୋଇଛି, ତାହାର ଘରେ ଭଗବାନ୍ ଅବତାର ଗ୍ରହଣ କରନ୍ତି ।

ମାତା ଓ ପିତାଙ୍କ ସଂଯୋଗରୁ ପୁତ୍ରର ଜନ୍ମ । ଉଭୟ ପବିତ୍ର, ଦୟାଦାକ୍ଷିଣ୍ୟ ଗୁଣଯୁକ୍ତ, ଭଗବଦ୍‌ଭକ୍ତ, ବିଷୟାସକ୍ତିରହିତ, ନିର୍ମଳାନ୍ତଃକରଣ ହୋଇଥିଲେ ତାଙ୍କଠାରେ ଅଜନ୍ମା ଜନ୍ମ ଗ୍ରହଣ କରନ୍ତି, ନିର୍ଗୁଣ, ନିରାକାର ପ୍ରଭୁ ସେଠାରେ ସଗୁଣ ଓ ସାକାର ହୋଇ କ୍ରୀଡ଼ା କରନ୍ତି । ଅତ୍ରି ଓ ଅନସୂୟା ସେହିଭଳି ଭାଗ୍ୟଶାଳୀ ଦମ୍ପତି ଥିଲେ । ସେଥିପାଇଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତାଙ୍କର ପୁତ୍ରଭାବେ ଜନ୍ମ ଗ୍ରହଣ କରିଥିଲେ ।

ମୈତ୍ରେୟ ମୁନି ବିଦୁରଙ୍କୁ ପଚାରୁଛନ୍ତି—ହେ ବିଦୁର ! ଆପଣଙ୍କର ମନେ ଥିବ, ଯେତେବେଳେ ବ୍ରହ୍ମା ଭଗବାନ୍ କପିଳଙ୍କୁ ଦର୍ଶନ କରିବାପାଇଁ ମହାମୁନି କର୍ଦ୍ଦମଙ୍କ ଆଶ୍ରମକୁ ଆସିଥିଲେ, ସେତେବେଳେ ତାଙ୍କ ସହିତ ମରିଚ ଆଦି ନଅଜଣ-ଋଷି ମଧ୍ୟ ଆସିଥିଲେ । ବ୍ରହ୍ମା ବ୍ରହ୍ମଲୋକ ଫେରିଯିବା ପରେ ମୁନିଗଣ କର୍ଦ୍ଦମଙ୍କ ଆଶ୍ରମରେ ରହିଗଲେ । ତାଙ୍କର ନଅଟି କନ୍ୟାଙ୍କୁ ଏହି ନଅଜଣ ଋଷି ବିବାହ-କରିଥିଲେ । ମହାତପସ୍ୱୀ ଅତ୍ରି କର୍ଦ୍ଦମଙ୍କ କନ୍ୟା ଅନସୂୟାଙ୍କୁ ବିବାହ ହୋଇଥିଲେ ।

ମହାମୁନି ଅତ୍ରି ସର୍ବଗୁଣ ସମ୍ପନ୍ନା, ସୁଶୀଳା, ବିନୟବତୀ, ସତୀ, ସାଧ୍ୱୀ, ପତ୍ନୀ ଅନୁସୂୟାଙ୍କୁ ସାଙ୍ଗରେ ନେଇ ବ୍ରହ୍ମାଙ୍କ ପାଖକୁ ଗଲେ । ପତିପତ୍ନୀ ବ୍ରହ୍ମାଙ୍କୁ ପ୍ରଣାମ କଲେ । ପୁତ୍ର ଓ ପୁତ୍ରବଧୂଙ୍କୁ ଆଶୀର୍ବାଦ ଦେଇ ବ୍ରହ୍ମା କହିଲେ—ତୁମେ ଦୁହେଁ ସର୍ବଦା ଧର୍ମପରାୟଣ ହୁଅ । ଅନସୂୟା ସଂସାରର ସର୍ବଶ୍ରେଷ୍ଠ ସତୀ ହେବେ, ଶ୍ରୀହରି ତୁମରଗର୍ଭ ମୁକ୍ତିଦାତା ହେବେ, ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦରେ ତୁମ ଦୁହିଁଙ୍କର ଅହେତୁକ ରତି ରହୁ । ସଂସାରରେ ତୁମେ ଦୁହେଁ ଯଶସ୍ୱୀ ହୁଅ । ବ୍ରହ୍ମାଙ୍କ ଆଦେଶ ଅନୁସାରେ ପତ୍ନୀ ଅନୁସୂୟାଙ୍କୁ ନେଇ ଅତ୍ରି ତପସ୍ୟା କରିବା ପାଇଁ ଋକ୍ଷନାମକ ପର୍ବତକୁ ଗଲେ । ଦକ୍ଷିଣ ଦିଗରେ ଅବସ୍ଥିତ ଏହି ପର୍ବତ ଅତ୍ୟନ୍ତ ସୁନ୍ଦର । ଛଅ ଋତୁରେ ଫଳୁଥିବା ବୃକ୍ଷ ଲତାରେ ପର୍ବତଟି ମନୋହର ଦେଖାଯାଉଥିଲା । ସେଠାରେ ନିର୍ମଳଜଳା ନିର୍ବିନ୍ଧ୍ୟା ନାମକ ଗିରିନଦୀ କୁଳୁକୁଳୁ ନାଦରେ ପ୍ରବାହିତ ହେଉଥିଲା । ପକ୍ଷୀମାନଙ୍କ କଳ-ରବରେ ନଦୀର ଉଭୟ ତୀର ସର୍ବଦା ମୁଖରିତ ଥିଲା । ନଦୀର ଉଭୟପାର୍ଶ୍ୱରେ ଥିବା ପୁଷ୍ପିତ ପାଦପ ପୁଷ୍ପସୁଗନ୍ଧରେ ସମଗ୍ର ବନପ୍ରଦେଶକୁ ସୁବାସିତ କରୁଥିଲେ । ପଳାଶବୃକ୍ଷର ବୃନ୍ତଚ୍ୟୁତ ରକ୍ତକୁସୁମ ବନଭୂମି ଉପରେ ଆଲୁଅ ବିଛାଇ ହୋଇ ପଡ଼ିଥିଲା । ଅଶୋକ, ତାଳ, ତମାଳ, ଜମ୍ବୀର, ପନସ ପ୍ରଭୃତିରେ ଅରଣ୍ୟର ସର୍ବାଙ୍ଗ ଶ୍ରୀମଣ୍ଡିତ ହୋଇଥିଲା ।

ବନଭୂମିର ଅପୂର୍ବ ପ୍ରାକୃତିକ ସୁଷମା ଦେଖି ମହାମୁନି ଅତ୍ରି ଅତ୍ୟନ୍ତ ଆନ-ନ୍ଦିତ ହୋଇଯାଇଥିଲେ । ସେହିଠାରେ ସେ ତପସ୍ୟା କରିବା ପାଇଁ ସିଦ୍ଧାନ୍ତ କଲେ । ନଦୀତୀରରେ ଗୋଟିଏ ପାଦରେ ଠିଆ ହୋଇ ସେ ପ୍ରାଣାୟାମ ଅଭ୍ୟାସ କରିବାକୁ ଲାଗିଲେ । ପ୍ରଥମେ ବନର ଫଳମୂଳ ଖାଉଥିଲେ, ପରେ କିନ୍ତୁ, ସେ ସମସ୍ତ ତ୍ୟାଗ କଲେ, କେବଳ ଶୁଖିଲା ପତ୍ରଦ୍ୱାରା ଜୀବନ ଧାରଣ କରିବାକୁ ଲାଗିଲେ, ତାହା ତ୍ୟାଗ କରି କେବଳ ଜଳ, ଜଳପରେ ବାୟୁ ସେବନ ପୂର୍ବକ ମନକୁ ସଂଯତ ରଖିଲେ, ଶେଷରେ ବାୟୁ ଆହାର ଛାଡ଼ିଦେଲେ, ପ୍ରାଣବାୟୁକୁ ଅବରୁଦ୍ଧ ରଖି ସେହି ଗୋଟିଏ ପାଦରେ ଠିଆହୋଇ ମହାମୁନି ଅତ୍ରି ଶହେବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ । ମନ-ତାଙ୍କର ସମାହିତ ହୋଇଥିଲା, ସେ ସର୍ବତ୍ର ଶ୍ରୀହରିଙ୍କୁ ହିଁ ଦେଖିବାକୁ ଲାଗିଲେ, ତତ୍

ତାଙ୍କର ବିଶ୍ୱମସ୍ତ ପାଲଟି ଗଲା, ଏହା ଫଳରେ ସେ ସମସ୍ତଙ୍କର ପ୍ରାଣକୁ ଅବରୁଦ୍ଧ କରିବାରେ ସମର୍ଥ ହୋଇଥିଲେ । ମୁନିଙ୍କ ମସ୍ତକରୁ ତପସ୍ୟାର ଏକ ଅଦ୍‌ଭୁତ ଅଗ୍ନି ନିର୍ଗତ ହେଲା । ସେହି ଅଗ୍ନିରେ ତିନି ଲୋକର ପ୍ରାଣୀମାନେ ଜଳିବାକୁ ଲାଗିଲେ । ଦେବଗଣ ଭୀତତ୍ରସ୍ତ ହେଲେ; କିନ୍ତୁ କେହି ଏପ୍ରକାର ଅଗ୍ନିର ରହସ୍ୟ ଜାଣି ପାରିଲେ ନାହିଁ । ସମଗ୍ର ସଂସାରକୁ ପରିତପ୍ତ କରୁଥିବା ଏହି ଅଗ୍ନି କେଉଁଠୁ ଉତ୍ପନ୍ନ ହେଉଛି ତାହା ମଧ୍ୟ ବୁଝି ପାରିଲେ ନାହିଁ ।

ମୁନିବର ଅତ୍ରି କୌଣସି ଏକ ବିଶିଷ୍ଟ ଦେବତାଙ୍କର ରୂପ ଧ୍ୟାନ କରୁଥିଲେ ମଧ୍ୟ ତାଙ୍କର ପୂଜା ଆରାଧନା କରୁ ନ ଥିଲେ; କାରଣ, ଚରାଚର ବିଶ୍ୱର ଯେ ସ୍ୱାମୀ, ସେ ତାଙ୍କର ଶରଣ ପ୍ରାର୍ଥୀ ହୋଇଥିଲେ । ସେହି ବିଶ୍ୱାତ୍ମା ପ୍ରଭୁ ନିଜଭଳି ପୁତ୍ରଟିଏ ଦିଅନ୍ତୁ ବୋଲି ଅତ୍ରିଙ୍କ ଅଭିଳାଷ ଥିଲା । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ପ୍ରତ୍ୟେକ ଏ ଚରାଚର ବିଶ୍ୱର ପ୍ରଭୁ । ତିନିଜଣଙ୍କ ମଧ୍ୟରୁ କିଏ ଅତ୍ରିଙ୍କ ମନୋରଥ ପୂର୍ଣ୍ଣ କରିବ ? ତେଣୁ ତିନି ଦେବତା ଜାଣିଗଲେ ଯେ ଭଗବତୀ ଅନସୂୟାଙ୍କ ଇଚ୍ଛା ପୂରଣପାଇଁ ମୁନିଙ୍କ ମନରେ ପୁତ୍ରପ୍ରାପ୍ତି ନିମିତ୍ତ ସଂକଳ୍ପ ଜାତ ହୋଇଛି । ସେଥିପାଇଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତିନିଜଣ ନିଜ ନିଜ ବାହନରେ ବସି ମହାମୁନି ଅତ୍ରିଙ୍କ ନିକଟକୁ ଆସିଥିଲେ ।

ଶ୍ୱେତହଂସ ବାହନରେ ବ୍ରହ୍ମା ବସିଥାନ୍ତି । ତାଙ୍କର ଚାରିମୁଖ ଚାରି ଦିଗକୁ ଦେଖୁଥାଏ । ମସ୍ତକରେ ମଣିମୟ ମୁକୁଟ ଶୋଭା ପାଉଥାଏ । ବୃଷଭ ବାହନରେ ଭୋଳାନାଥ ଶିବ ବିରାଜମାନ ଥାଆନ୍ତି । ଭସ୍ମବିଲେପିତ ସମଗ୍ର ଶରୀର ସର୍ପବଳୟରେ ଶୋଭିତ ହେଉଥାଏ । ମସ୍ତକରେ ଭଗବତୀ ଗଙ୍ଗା ଓ ଚନ୍ଦ୍ର, ଗଳାରେ ମୁଣ୍ଡମାଳ ମହାଯୋଗୀ ନୀଳକଣ୍ଠଙ୍କ ଶୋଭାକୁ ଦ୍ୱିଗୁଣିତ କରୁଥାଏ । ଭଗବାନ୍ ବିଷ୍ଣୁ ଗରୁଡ଼ ବାହନରେ ଉପବିଷ୍ଟ ଥାଆନ୍ତି । ବାୟୁଭଳି ଗତିଶୀଳ ଗରୁଡ଼ ଉପରେ ବସି ଆସିବା-ବେଳେ ପୀତାମ୍ବରଙ୍କ ପୀତ ଉତ୍ତରୀୟ ପବନରେ ଉଡ଼ୁଥାଏ । କୁଞ୍ଚିତ ଘନକୃଷ୍ଣ କେଶ-ରାଶି ବିକ୍ଷିପ୍ତ ହୋଇଯାଉଥାଏ । ବିଦ୍ରୁମଲୋଳ କପୋଳ, ନବଦଳ ସଦୃଶ ଅରୁଣ ଅଧର, ବନମାଳା ଭୂଷିତ ବକ୍ଷ, କଙ୍କଣଶୋଭିତ ହସ୍ତ ମୋହନ ମୂର୍ତ୍ତିଧାରୀ ଭଗବାନ୍ ବିଷ୍ଣୁ ଆସୁଥାଆନ୍ତି । ତାଙ୍କ ପଛରେ ଶହ ଶହ ଅପ୍‌ସରା, ମୁନି, ଗନ୍ଧର୍ବ, ସିଦ୍ଧ, ଉରଗ, ବିଦ୍ୟାଧର, କିନ୍ନର ଆଦି ତିନି ଦେବତାଙ୍କର ଯଶୋଗାନ କରି ଅନୁସରଣ କରୁଥାଆନ୍ତି ।

ଅଲୌକିକ ଆଭାରେ ସମଗ୍ର ଆକାଶକୁ ଆଲୋକିତ କରି ଦେବଗଣ ଅତ୍ରି-ମୁନିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ମୁନିଙ୍କ ହୃଦୟରେ ଅପୂର୍ବ ପ୍ରକାଶ ଜାତ

ହେଲା । ସେହି ପ୍ରକାଶରେ ମୁନିଙ୍କ ନିମୀଳିତ ଚକ୍ଷୁଦ୍ୱୟ ଖୋଲିଗଲା । ସମ୍ମୁଖରେ ବିଶ୍ବର ପ୍ରଭୁ ତିନି ଦେବତାଙ୍କୁ ନିଜ ନିଜ ବାହନରେ ବସି ରହିଥିବା ଦେଖି ମୁନି ଆଶ୍ଚର୍ଯ୍ୟଚକିତ ହୋଇଗଲେ । ସମ୍ଭ୍ରମରେ ଅର୍ଷି ସାଷ୍ଟାଙ୍ଗ ପ୍ରଣିପାତ କରି କିଛି ସମୟ ବାହ୍ୟଜ୍ଞାନ ଶୂନ୍ୟ ହୋଇ ଦଣ୍ଡାୟମାନ ହେଲେ । ନିମୀଳିତ ନୟନ ଓ ଗଦ୍‌ଗଦ୍ କଣ୍ଠରେ ସେ ତିନି ଦେବତାଙ୍କ ସ୍ତୁତିଗାନ କଲେ ।

ମହର୍ଷି ସୂତ କହୁଛନ୍ତି—କେତେକ ଭକ୍ତ ମାଧୁର୍ଯ୍ୟର ଓ ଆଉ କେତେକ ଐଶ୍ବର୍ଯ୍ୟର ଉପାସକ ଥାଆନ୍ତି । ମାଧୁର୍ଯ୍ୟ ଭାବନାରେ ଭକ୍ତ ଭଗବାନଙ୍କ ସହିତ ବନ୍ଧୁ, ସଖା, ପତି, ପୁତ୍ର ଆଦି ସମ୍ବନ୍ଧ ସ୍ଥାପନ କରିଥାଏ ; କିନ୍ତୁ ଐଶ୍ବର୍ଯ୍ୟରେ କେବଳ ପ୍ରଭାବର ପ୍ରାଧାନ୍ୟ ଥାଏ । ତେଣୁ ଅର୍ଷି ମହାମୁନି ଚକ୍ଷୁ ନିମୀଳିତ ରଖି ଦେବଗଣଙ୍କୁ ସ୍ତୁତି କରିଥିଲେ । ସେ ପ୍ରଭାବର ଉପାସକ ଥିଲେ ମଧ୍ୟ ହୃଦୟ ତାଙ୍କର ମାଧୁର୍ଯ୍ୟ ରସରେ ପୂର୍ଣ୍ଣ ହୋଇଥିଲା ।

## ଛପ୍‌ପୟ

ଦେଖେ ତୀନୋ ଦେବ ତେଜ ତେଁ ଦଶ ପ୍ରକାସେଂ ।
ହଂସ, ଗରୁଡ଼, ବୃଷ ଚଢ଼ି ସୂର୍ଯ୍ୟ ଶଶି ସମ ଶୁଭ ଭାସେଂ ॥
ଯଶ ଗାଵେଁ ଗନ୍ଧର୍ବ ଅପ୍‌ସରା ନାଚେଁ ଆଗେ ।
କରି ଦର୍ଶନ ମନ ମୋଦ ଭୟୋ ମୁନିକେ ଦୁଃଖ ଭାଗେ ॥
ଅବିରଳ ଜଳ ନୟନନି ବହେଁ ପରେ ଭୂକୁଟି
ସମ ଅବନି ପେଁ ।
ହେଁ ଅଧୀନ ମମତା ଭରୀ ଡାରୀ ଦୃଷ୍ଟି ସବନି ପେଁ ॥

## ତ୍ରିନାଥଙ୍କ ବରଦାନ

ଅଥା ସ୍ମଦଂଶଭୂତାସ୍ତେ ଆତ୍ମଜା ଲୋକବିଶ୍ରୁତାଃ ।
ଭବିତାରୋଽଙ୍ଗ ଭଦ୍ରଂତେ ବିସ୍ରପ୍ସ୍ୟନ୍ତି ଚ ତେ ଯଶଃ॥
ଏବଂ କାମବରଂ ଦତ୍ତ୍ୱା ପ୍ରତିଜଗ୍ମୁଃ ସୁରେଶ୍ୱରାଃ ।
ସଭାଜିତାସ୍ତୟୋଃ ସମ୍ୟଗ୍ଦମ୍ପତ୍ୟୋର୍ମିଷତୋ ସ୍ତତଃ ॥

(ଭାଗ-୪-୧-୩୧-୩୨)

### ଛପ୍ପୟ

ତକା ଚୌଧ ଚହ୍ନି, ଗଇ ଚନ୍ଦ୍ର ଚିତ ଚରଣ ଲଗାୟୋ ।
ହାଥ ଯୋରି ଥିର ନାଇ ବିଷ୍ଣୁ,ବିଧିହର ଗୁନଗାୟୋ ॥
ୟହ୍ମା ଜଗତକେ ତୋ ଈଶ ପୁନ୍ଏ ତ ଏକ ପ୍ରକାରେ ।
କିନ୍ତୁ କୃପା ତକେ ତ୍ରିଭୂ ଦର୍ଶା କରି ତୀନ ପଧାରେ ॥
ସୁନି ମୁନି ବ୍ରତ ବୋଲେ ସଭୀ, ତୀନୋ ହୀ ଜଗଦୀଶ ହମ୍ ।
ଇଚ୍ଛା ବର ମାଁଗୋ ଅନଘ ଅବତୁମକୋ ସବଇ ସୁଗମ ॥

ଆମେ ଯେତିକି ଫଳ ଆଶା ରଖି କୌଣସି କାର୍ଯ୍ୟ କରୁଁ ସେଥିରୁ ଯଦି ଅଧିକ ଫଳ ମିଳଇ, ତେବେ ଆମର ଆନନ୍ଦର ସୀମା ରହେ ନାହିଁ । ଯେଉଁଠି କୌଣସି ଆଶା ନ ରଖି ଆମେ ମାଟି ଖୋଳୁଥାଉଁ, ସେଠାରୁ ଯଦି ଅପାର ସମ୍ପତ୍ତି ମିଳିଯାଏ, ତେବେ ହର୍ଷ, ବିସ୍ମୟ, ଉଲ୍ଲାସ, ସମ୍ଭ୍ରମ ସବୁ କିଛି ଏକ ସମୟରେ ଜାତ ହୁଏ ।

ମହାମୁନି ଅତ୍ରି ପୁତ୍ରପ୍ରାପ୍ତି ନିମିତ୍ତ ଭଗବାନଙ୍କୁ ଧ୍ୟାନ କରୁଥିଲେ । ତାଙ୍କ ମନରେ ଏହି ସଂକଳ୍ପ ଥିଲା, ଯେ ଏହି ଜଗତର ସ୍ୱାମୀ, ସେ ଦୟାକରି ତାଙ୍କରି ସଦୃଶ ପୁତ୍ର ଦାନ କରନ୍ତୁ ; କିନ୍ତୁ ଏ ଜଗତର ସ୍ୱାମୀ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ତ୍ରିନାଥ । ଯଦି କୌଣସି ଜଣଙ୍କର ରୂପ, ନାମ ସ୍ମରଣ ପୂର୍ବକ ଆରାଧନା କରିଥାନ୍ତେ ତେବେ ସେ କ୍ଷେତ୍ରରେ ସେହି ଜଣଙ୍କ ବରଦାନ ପାଇଁ ଉପସ୍ଥିତ ହୋଇ-ଥାନ୍ତେ ; କିନ୍ତୁ ଏକ ଗୋଳମାଳିଆ ଅବସ୍ଥା ସୃଷ୍ଟି କରି ମୁନି ବେଶ୍ ଲଭବାନ୍

ହେଲେ । ବିନାଥ ପ୍ରଭୁ ତାଙ୍କୁ ବର ଦେବାପାଇଁ ଉପସ୍ଥିତ ହୋଇଛନ୍ତି । ସେହି ବିନାଥ ପ୍ରଥମେ ଭଗବତୀ ଅନସୂୟାଙ୍କ ପୁତ୍ରଭାବେ ଜନ୍ମ ହେବା ନିମିତ୍ତ ବର ପ୍ରଦାନ କରିସାରିଥିଲେ । ସତୀଙ୍କ ପୁତ୍ର ଅତ୍ରି ମୁନିଙ୍କ ବୀର୍ଯ୍ୟରୁ ଜାତ ହେବେ । ତେଣୁ ବିନାଥ ପ୍ରଭୁ ଚିନ୍ତା କଲେ, ପୁତ୍ର ତ ହେବାକୁ ପଡ଼ିବ, ତେବେ ଅତ୍ରିଙ୍କ ଅଭିଳାଷ ପୂର୍ତ୍ତି ହେଉ । ଏହା ଭାବି ବିନାଥ ଗୋସାଇଁ ଏକ ସମୟରେ ମୁନିଙ୍କୁ ଦର୍ଶନ କରିଥିଲେ ।

ଅତ୍ରି ମୁନି ସେମାନଙ୍କର ପାଦ ବନ୍ଦନା କରି ପ୍ରାର୍ଥନା ଭଙ୍ଗିରେ ବିନୀତ-ଭାବେ କହିଲେ—ପ୍ରଭୋ ! ଆପଣଙ୍କ ବସ୍ତ୍ର, ଆୟୁଧ, ବାହନ ଓ ଚିହ୍ନରୁ ଆପଣ-ମାନଙ୍କୁ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ବୋଲି ଜାଣୁଛି । ଆପଣମାନେ ନିଜ ନିଜର ମାୟା-ଦ୍ୱାରା ପୃଥକ୍ ପୃଥକ୍ ଗୁଣକୁ ଅଙ୍ଗୀକାର କରି ଜଗତର ଉତ୍ପତ୍ତି, ସ୍ଥିତି ଓ ସଂହାର ନିମିତ୍ତ ତିନିରୂପ ଧାରଣ କରିଛନ୍ତି । ଆପଣ ତିନିଜଣ ମୋତେ କୃପା କରି ଦର୍ଶନ ଦେଇଛନ୍ତି । ଏଣୁ ଶ୍ରଦ୍ଧାର ସହିତ ଆପଣମାନଙ୍କୁ ମୁଁ ବନ୍ଦନା କରୁଛି ।

ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର-ବିନାଥ ପ୍ରଭୁ କହିଲେ— ମୁନିବର, ଆମ୍ଭେମାନେ ତୁମ ତପସ୍ୟାରେ ସନ୍ତୁଷ୍ଟ ହୋଇ ବର ପ୍ରଦାନ ନିମିତ୍ତ ଆସିଛୁ । ତୁମେ ଇଚ୍ଛା ଅନୁସାରେ ବର ପ୍ରାର୍ଥନା କର ।

ମହାମୁନି ଅତ୍ରି କହିଲେ—ହେ ପରମପୂଜନୀୟ ଦେବଗଣ ! ମୁଁ ସନ୍ତାନ ନିମିତ୍ତ ଏକ ପରମେଶ୍ୱରଙ୍କୁ ଚିନ୍ତା କରିଥିଲି । ଆପଣ ତିନିଜଣ କିପରି ମୋ ପ୍ରତି କୃପା କଲେ ? ଯାହାହେଉ ଆପଣମାନେ ମୋତେ ଅଶେଷ ଦୟା ପ୍ରଦର୍ଶନ କରିଛନ୍ତି । ମୋର ବିନୀତ ନିବେଦନ ଆପଣମାନେ ମୋର ପୁତ୍ରଭାବେ ଜନ୍ମ ଗ୍ରହଣ କରନ୍ତୁ ।

ମୈତ୍ରେୟ କହୁଛନ୍ତି—ବିଦୁର ! ବେଳେ ବେଳେ ଭଗବାନ୍ ଏପରି ଭୋଳା ପାଲଟି ଯାଆନ୍ତି ଯେ ଭକ୍ତର ଅଭିଳାଷ ପୂର୍ତ୍ତି ନିମିତ୍ତ କିଛି କହିପାରନ୍ତି ନାହିଁ । ପାପୀ ଅଜାମିଳ ପୁତ୍ରର ନାମ ଉଚ୍ଚାରଣ କରିଥିଲା । ଭଗବାନ୍ ତାକୁ ନିଜର ନାମ ରୂପେ ଗ୍ରହଣ କରି ନେଇଥିଲେ । ଶିବଙ୍କର ମଧ୍ୟ ସେହି ଅବସ୍ଥା । ଚୋରଟିଏ ଥିଲା । ସେ ଶିବଙ୍କ ଘଣ୍ଟାଚୋରି କରିବାକୁ ଯାଇ ତାଙ୍କ ଉପରେ ଚଢ଼ି ଘଣ୍ଟା ଆଣିଲା । ଭୋଳାନାଥ ଭାବିଲେ—କିଏ ମୋ ଉପରେ ଫୁଲ ଦେଉଛି ତ କିଏ ବେଲପତ୍ର ଚଢ଼ାଉଛି । କିନ୍ତୁ, ଦେଖ ଏ ଲୋକଟା ମୋର କେଡ଼େ ଭକ୍ତ ଯେ ନିଜକୁ ମୋ ଉପରେ ଚଢ଼େଇ ଦେଲା ।" ଏଭଳି ପାଗଳାମିର କଣ ଶେଷ ଅଛି ? ଯଦି ଚତୁରତା କଥା ଭାବିବେ ତେବେ ବିଚାର କରନ୍ତୁ, ଭଗବାନ୍ କେତେ କୌଶଳରେ ହିରଣ୍ୟକଶିପୁକୁ ବଧ କଲେ । ଭସ୍ମାସୁରକୁ କିପରି ପଛି ଚଢ଼େଇ ଭସ୍ମ କରିଦେଲେ । ଦ୍ରୋଣାଚାର୍ଯ୍ୟଙ୍କୁ

କପର ଏଣୁ ତେଣୁ କହୁ ମଗ୍ନରଲେ । ସେଥିପାଇଁ କହନ୍ତି—ହେ ଦୟାନିଧି ! ତୁମର ଗତ ବଚନ । ଅତ୍ରି ମୁନଙ୍କ ବିନୟ ଦେଖି ତ୍ରିନାଥ କହିଲେ—ମୁନିବର ! ତୁମେ ସତ୍ୟସଂକଳ୍ପ ଭକ୍ତ, ତୁମର ପତ୍ନୀ ପତିବ୍ରତା, ତୁମର ସଂକଳ୍ପ ଅନ୍ୟଥା ହେବ ନାହିଁ । ତେଣୁ ଆମ୍ଭେ ତିନିଜଣ ନିଜ ନିଜର ଅଂଶ ନେଇ ତୁମର ପୁତ୍ରଭାବେ ଜନ୍ମ ହେବୁ ଏବଂ ତୁମର ଯଶ ବିସ୍ତାର କରିବା ସଙ୍ଗେ ସଙ୍ଗେ ଜୀବଜଗତର କଲ୍ୟାଣ ସାଧନ କରିବୁ ।

ମୈତ୍ରେୟ କହୁଛନ୍ତି—ବିଦୁର ! ଭଗବାନ୍ ମହାମୁନି ଅତ୍ରିଙ୍କୁ କହିଥିଲେ—ଆଚ୍ଛା ଦତ୍ତ ଅର୍ଥାତ୍ ଆମ୍ଭେମାନେ ତୁମକୁ ପୁତ୍ରଦାନ କଲୁ । ତେଣୁ ଶ୍ରୀହରିଙ୍କ ଅଂଶରେ ଯେ ଜନ୍ମ ହେବ ସେ 'ଦତ୍ତ' ହେଲେ । ଅତ୍ରି ପୁତ୍ର ହେବାରୁ 'ଆତ୍ରେୟ' ନାମ ରହିବା ମଧ୍ୟ ଯୁକ୍ତିଯୁକ୍ତ । ଶିବ ଏ ସବୁ ଶୁଣି ଟିକିଏ ରାଗିଗଲେ । ତେଣୁ ତାଙ୍କ ଅଂଶରୁ ମହାକ୍ରୋଧୀ ଦୁର୍ବାସା ଜନ୍ମ ହୋଇଥିଲେ । ବ୍ରହ୍ମାଙ୍କ ଧ୍ୟାନ ସେତେବେଳେ ଶିବଙ୍କ ମସ୍ତକରେ ଥିବା ଚନ୍ଦ୍ର ଉପରେ ଥିଲା । ତେଣୁ ତାଙ୍କ ଅଂଶ ନେଇ ଜନ୍ମହେଲେ ଚନ୍ଦ୍ର । ସେ ଯେପରି ସୁନ୍ଦର ଓ ରସିକ, ସେହିପରି ସୁଖଦାୟକ ହେଲେ । ତ୍ରିନାଥ ବରଦାନ କରିସାରିବା ପରେ ଅନସୂୟାଙ୍କ ସହିତ ଅତ୍ରିମୁନି ପାଦ୍ୟ,ଅର୍ଘ୍ୟ,ଆଚମନୀୟ, ଫଳମୂଳାଦି ଉପହାରଦ୍ୱାରା ତ୍ରିଦେବରେ ତ୍ରିନାଥଙ୍କର ପୂଜା କରିଥିଲେ । ସେମାନଙ୍କ ପୂଜା ସ୍ୱୀକାର କରି ତ୍ରିନାଥ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ପତି ପତ୍ନୀ ଠିଆ-ହୋଇ ଦେବତାଙ୍କୁ ଦେଖୁଥିଲେ । ସେମାନେ ଚାଲିଯିବା ପରେ ଦୁହେଁ ଭକ୍ତିଭାବରେ ସେହି ଦିଗକୁ ପ୍ରଣାମ କରି ଆଶ୍ରମକୁ ଫେରିଆସିଲେ । ଯଥା ସମୟରେ ତାଙ୍କର ଦତ୍ତାତ୍ରେୟ, ଦୁର୍ବାସା ଓ ଚନ୍ଦ୍ରମା ତିନି ପୁଅ ଜନ୍ମହେଲେ ।

ଏହାପରେ ଶୌନକ ମହର୍ଷି ସୂତଙ୍କୁ ପଚାରିଲେ—ପ୍ରଭୋ ! ଆମ୍ଭେମାନେ ଶୁଣିଥିଲୁ ଚନ୍ଦ୍ର ସମୁଦ୍ରମନ୍ଥନରୁ ବାହାରିଥିଲେ ବୋଲି । ସମସ୍ତେ ଚନ୍ଦ୍ରକୁ ସମୁଦ୍ର ପୁତ୍ର ବୋଲି କହନ୍ତି । ଆଜି ପର୍ଯ୍ୟନ୍ତ ଆମ୍ଭେମାନେ ତାହାହିଁ ପ୍ରତ୍ୟକ୍ଷ କରୁଛୁ । ପୂର୍ଣ୍ଣିମାଦିନ ଚନ୍ଦ୍ରକୁ ଷୋଳକଳାରେ ପୂର୍ଣ୍ଣହୋଇଥିବାର ଦେଖି ପିତା ସାଗରର ହୃଦୟ ଆନନ୍ଦରେ ଫୁଲିଉଠେ । ସମୁଦ୍ର ସ୍ପନ୍ଦନ ବଢେ । ଉତ୍ତାଳ ତରଙ୍ଗରେ ସମୁଦ୍ରର ହୃଦୟ ସ୍ଫୀତ ହୋଇଯାଏ । ସାଗରରୁ ଜନ୍ମହୋଇଥିବାରୁ ଲକ୍ଷ୍ମୀ ଚନ୍ଦ୍ରଙ୍କ ଭଉଣୀ ଭାବେ ପରିଚିତ ହୋଇଛନ୍ତି ; କିନ୍ତୁ ଆପଣ କହୁଛନ୍ତି ଚନ୍ଦ୍ର ଅନସୂୟାଙ୍କ ଗର୍ଭରୁ ଜାତ ହେଲେ । ଏହାର ପ୍ରକୃତ ମର୍ମ କଣ ବୁଝାଇ ଦିଅନ୍ତୁ ।

ଶୌନକଙ୍କ ପ୍ରଶ୍ନ ଶୁଣି ହସିହସି ସୂତ କହିଲେ—ମହାରାଜ ! ଆପଣ ବେଳେ ବେଳେ ଏପରି ପ୍ରଶ୍ନ ପଚାରନ୍ତି ଯେ, ମୋର ମଧ୍ୟ ଭ୍ରମ ଜାତ ହୋଇଯାଏ । ଚନ୍ଦ୍ରମା ଭଗବାନ୍‌ଙ୍କ ମନରୁ ଜାତ ହୋଇଛନ୍ତି । ତେଣୁ ସେ ସତ୍ୟ । ମୁଁ ପୂର୍ବରୁ କହିଛି ଯେ

ଅନେକ ନିତ୍ୟ ଜୀବ ଅଛନ୍ତି ଏବଂ ସେମାନେ ସମୟେ ସମୟେ ସ୍ୱେଚ୍ଛାରେ ଅବତାର ଧାରଣପୂର୍ବକ ସଂସାରର କାର୍ଯ୍ୟ ପରିଚାଳନା କରନ୍ତି, ଉଦାହରଣ ସ୍ୱରୂପ ସପ୍ତର୍ଷି ହେଉଛନ୍ତି ନିତ୍ୟ ; କିନ୍ତୁ ସପ୍ତର୍ଷି ଅନ୍ତର୍ଗତ ବିଶ୍ୱାମିତ୍ର ମୁନି ରାଜର୍ଷି ଗାଧିଙ୍କ ପୁତ୍ର ଭାବେ ପରିଚିତ । ସେ ଏକ ରୂପରେ ସପ୍ତର୍ଷିମଣ୍ଡଳରେ ଓ ଅନ୍ୟରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ, ମର୍ତ୍ତ୍ୟଧାମରେ କାର୍ଯ୍ୟ ସମାପ୍ତି ପରେ ପୁଣି ସେ ନିଜ ଲୋକରେ ପୂର୍ବବତ୍ ଅବସ୍ଥାନ କରିଥିଲେ । ସମୁଦ୍ର ମନ୍ଥନ ପୂର୍ବରୁ ଚନ୍ଦ୍ର ଥିଲେ । ସମୁଦ୍ର ମନ୍ଥନ କାଳରେ ଶ୍ରୀସମ୍ପନ୍ନ ଓ ଅମୃତମୟ ହୋଇ ନୂତନ ରୂପ ଗ୍ରହଣ କଲେ । ଅମୃତମୟ କିରଣଦ୍ୱାରା ବୃକ୍ଷ, ଲତା, ଔଷଧ ଓ ବ୍ରାହ୍ମଣଙ୍କୁ ଚନ୍ଦ୍ର ସିକ୍ତ କରିବାକୁ ଲାଗିଲେ । କାଳାନ୍ତରେ ସେହି ଚନ୍ଦ୍ର ଅତ୍ରିଙ୍କଠାରେ ବ୍ରହ୍ମାଙ୍କ ଅଂଶଭାବେ ଅବତୀର୍ଣ୍ଣ ହେଲେ । ପୁତ୍ରଭାବେ ଜନ୍ମହେବାଦ୍ୱାରା ଚନ୍ଦ୍ରଙ୍କର କୌଣସି କାର୍ଯ୍ୟ ବାଧା ପାଇ ନଥିଲା କି ସେ ବିକୃତ ହୋଇ ନଥିଲେ । ଯେତେ ଜୀବ ଅଛନ୍ତି, ସେ ନିତ୍ୟ, ବଦ୍ଧ, ମୁମୁକ୍ଷୁ ବା ମୁକ୍ତ ଯାହା ହୁଅନ୍ତୁ ପଛକେ ଭଗବାନ୍‌ଙ୍କ ଆଦେଶରୂପକ ରଜ୍ଜୁରେ ବନ୍ଧା ଥାଆନ୍ତି । ସେହି ପରମେଶ୍ୱରଙ୍କ ଇଚ୍ଛା ବିନା କେହି କିଛି କରିପାରନ୍ତି ନାହିଁ ।

ଶୌନକ କହିଲେ—ତେବେ ତ ସମସ୍ତେ ବଦ୍ଧ ବୋଲି ଜଣାଉଛନ୍ତି । ପୁଣି ନିତ୍ୟ, ମୁକ୍ତ ଓ ବଦ୍ଧ ମଧ୍ୟରେ ପାର୍ଥକ୍ୟ କଣ ରହିଲା ? ଏହା ଶୁଣି ଉତ୍ତର ଦେବାକୁ ଯାଇ ମହର୍ଷି ସୂତ କହିଲେ —ମୁନିବର ବାସ୍ତବରେ ସମସ୍ତେ ବଦ୍ଧଜୀବ । ଉପଚାର-ଦ୍ୱାରା ସେମାନଙ୍କର ଭେଦ କଳ୍ପନା କରାଯାଇଛି । ଅନ୍ୟ ସହିତ ତୁଳନା କ୍ଷେତ୍ରରେ ଏହି ଭେଦଭାବନା ଦୃଷ୍ଟିପଡ଼େ । ସମସ୍ତଙ୍କ ହୃଦୟରେ ସେହି ଶ୍ୟାମସୁନ୍ଦର ଅଛନ୍ତି । ସେ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରାଉଛନ୍ତି, ତାଙ୍କର ନିର୍ଦ୍ଦେଶ ଅନୁସାରେ ଜୀବ ବିବଶ ହୋଇ କାର୍ଯ୍ୟ କରି ଚାଲିଛି ; ମୁଁ ବର୍ତ୍ତମାନ ଯଥାକ୍ରମେ ଭଗବାନ୍ ଦତ୍ତାତ୍ରେୟ, ଦୁର୍ବାସା ଓ ଚନ୍ଦ୍ରଙ୍କ ଚରିତ ବର୍ଣ୍ଣନା କରୁଛି । ଆପଣମାନେ ଏକାନ୍ତ ଚିତ୍ତରେ ତାହା ଶ୍ରବଣ କରନ୍ତୁ ।

ଛନ୍ଦ୍‌ପଦ୍ୟ

ବୋଲେ ମୁନିବର ଅତ୍ରି ନାଥ,ः ମାଗି ସକୁଚାଉଁ ।
ତୁମ ସମ ସୁନ୍ଦର ସୁଘଡ଼ ସନ୍ତାନେ ସୁତ ହୋଇଁ ପାଉଁ ॥
ହସି କେ ବୋଲେ ଦେବ—ହମାରେ ସମ ହମ୍ ତୀନ୍ହୋଁ ।
ଜନ୍ମ ରହିତ ହମ୍ ତଉ ଉଗ୍ରତପ ତୁମନେ କୀନ୍ହୋଁ ॥
ଜାଓ ହମଇଁ ହୋହିଁ ଗେ ତନୟ ତୁମ୍ହାରେ ତପୋଧନ ।
ସୁନି ମୁନି ଅତି ହରଷିତ ଭୟେ, ଗହେ ଚରନ ହ୍ୱୈ
ମୁଦିତ ମନ ॥

# ଭଗବାନ୍ ଦତ୍ତାତ୍ରେୟଙ୍କ ଅବତାର

ସୋମୋଽଭୂଦ୍ ବ୍ରହ୍ମଣୋଽଂଶେନ ଦତ୍ତୋ ବିଷ୍ଣୋସ୍ତୁ
ଯୋଗବିଦ୍ ।
ଦୁର୍ବାସାଃ ଶଙ୍କରସ୍ୟାଂଶୋ ନିବୋଧାଙ୍ଗିରସଃ ପ୍ରଜା ॥

(ଭାଗ-୪-୧-୩୩

## ଛପ୍ପୟ

ଦୁରଲଭ ବରଦାନ ଭୟେ ଅନ୍ତର୍ହିତ ଦେବା ।
ଆୟେ ଆଶ୍ରମ ଅତ୍ରି କରେଂ ଶ୍ରୀହରି କୀ ସେବା ॥
କାଲ ପାଇ ବିଧି ଚନ୍ଦ୍ର ନାମତେଂ ପ୍ରକଟେ ଆଇ ।
ଶିବ ଦୁର୍ବାସା ଭୟେ, ଶାପ କୀ ଛଟା ଦିଖାଈ ॥
ଯୋଗେଶ୍ୱର ଶ୍ରୀହରି ଭୟେ, ଦତ୍ତାତ୍ରେୟ ମହାନ୍ ମୁନି ।
ତରେଁ ଜଗତ୍ କେ ଜୀବ ସବ୍ ଜିନ୍‌କୋ ସୁନ୍ଦର
ସୁୟଶ ମୁନି ।

—

ଭଗବାନଙ୍କର ଅନନ୍ତ ଅବତାର । ତା'ର ଗଣନା ସମ୍ଭବ ନୁହେଁ, ଅସଂଖ୍ୟ ଯୋନିରେ ଜନ୍ମ ଗ୍ରହଣ କରି ଭଗବାନ୍ ଅନନ୍ତ ଲୀଳାରଚନା କରନ୍ତି । ତାଙ୍କର ସମସ୍ତ ଲୀଳା ଅନୁକରଣୀୟ ନୁହେଁ, କେତେକ ଲୀଳା କେବଳ ଲୀଳା ପାଇଁ ଉଦ୍ଦିଷ୍ଟ, କେତେକ ଲୀଳା ଉପଦେଶପ୍ରଦ, ଯେଉଁ ଲୀଳା ଉପଦେଶପ୍ରଦ, ସଦାଚାରପୂର୍ଣ୍ଣ, ବେଦ ସମ୍ମତ ସେ ସବୁର ଆଚରଣ ଓ ଅନୁକରଣ କରିବା ବାଞ୍ଛନୀୟ; କିନ୍ତୁ ଯେଉଁ ଲୀଳା କେବଳ ଲୀଳା ପାଇଁ ଉଦ୍ଦିଷ୍ଟ, ସେ ସମସ୍ତ ଶ୍ରଦ୍ଧାର ସହିତ ଶ୍ରବଣ କରିବା ଉଚିତ । ତାହା ଶ୍ରବଣ ମାତ୍ରେ ପୁଣ୍ୟ ଅର୍ଜ୍ଜନ ହୋଇଥାଏ, ଈଶ୍ୱରଙ୍କ ବଚନସତ୍ୟ ଓ ଆଚରଣ ଅନୁକରଣୀୟ । କେତେକ କ୍ଷେତ୍ରରେ, ସବୁ ନୁହେଁ, ସମ୍ଭବ ମଧ୍ୟ ନୁହେଁ । ଶିବଙ୍କ ବିଷ-ପାନ, ଶ୍ରୀକୃଷ୍ଣଙ୍କ ଗୋବର୍ଦ୍ଧନ ପର୍ବତ ଧାରଣ, ରାସକ୍ରୀଡ଼ାରେ ଲୀଳାଦି ଅନୁକରଣ କରିବା ଉଚିତ ନୁହେଁ । ଏହାଦ୍ୱାରା ପତନ ଅନିବାର୍ଯ୍ୟ । କେବେ କେବେ ସାମର୍ଥବାନ୍ ପୁରୁଷ ଅବତାର ଭାବେ ବେଦ ବିରୁଦ୍ଧ ଆଚରଣ କରିଥାନ୍ତି । ତାହା ଦେଖି ଭ୍ରମରେ ପଡ଼ିବା

ଆଦୌ ଠିକ୍ ନୁହେଁ । ସେ ଯେପରି କରିଥିଲେ ଆମ୍ଭେମାନେ ସେହିପରି ଆଚରଣ କରିବା ବୋଲି ଭାବିବା ଭ୍ରମାତ୍ମକ । କାରଣ ଆମ୍ଭେମାନେ ଭାବିବା ଉଚିତ ଯେ ପ୍ରଭୁ ସମର୍ଥ ପୁରୁଷ ଭାବେ ସେ ସବୁ ଲୀଳା କରିଛନ୍ତି ; କିନ୍ତୁ ଆମ୍ଭେମାନେ ସେଭଳି ସମର୍ଥ ପୁରୁଷ ହୋଇନାହୁଁ । ପୁନଶ୍ଚ ଭଗବାନ୍ ସେହି ଅବତାରରେ ମାୟା ରଚନାଦ୍ୱାରା ଆମ୍ଭମାନଙ୍କୁ ପରୀକ୍ଷା କରିବା ନିମିତ୍ତ ସେହି ଲୀଳା କରିଥିଲେ । ତେଣୁ ସେ ଲୀଳାର ନିନ୍ଦା ବା ଅନୁକରଣ କରିବା ଅନୁଚିତ । ଯଦି ମୋହବଶତଃ ଆମ୍ଭେମାନେ ଭଗବଲ୍ଲୀଳାର ବିରୁଦ୍ଧାଚରଣ କରିବା, ତେବେ ଆମର ଅଧଃପତନ ଅବଶ୍ୟମ୍ଭାବୀ ।

ମହାପୁରୁଷମାନେ ଏ ପ୍ରସଙ୍ଗରେ ଶିଷ୍ୟମାନଙ୍କୁ ଅନେକ ପ୍ରକାର ଶିକ୍ଷା ପ୍ରଦାନ କରିଛନ୍ତି, ଥରେ ଜଣେ ମହାପୁରୁଷ ଭିକ୍ଷା କରିବାକୁ ଯାଇଥିଲେ । ତାଙ୍କ ସହିତ ଜଣେ ଶିଷ୍ୟ ମଧ୍ୟ ଥିଲେ, ଶିଷ୍ୟଙ୍କୁ ପରୀକ୍ଷା କରିବାପାଇଁ ଗୁରୁ ଜଣଙ୍କୁ ମାଂସ ମାଗିଲେ, ମାଂସବାଲା ମାଂସଦେଲା, ଆଉ ମହାପୁରୁଷ ତାକୁ ବି ଖାଇଦେଲେ । ଶିଷ୍ୟ ଭାବିଲେ ଗୁରୁ ମହାରାଜ ଯଦି ମାଂସ ଖାଉଛନ୍ତି, ତେବେ ଆମ୍ଭେମାନେ ନ ଖାଇବା କାହିଁକି । ଆମେ ବି ଖାଇବା, ଶିଷ୍ୟ ମଧ୍ୟ ଜିହ୍ୱାଲାଳସାବଶତଃ ମାଂସଭକ୍ଷଣ କଲେ । କିଛି ଦୂର ଯିବା ପରେ ଜଣେ କାଚ ତରଳାଉଥିଲା, କାଚ ଗୁଣ୍ଡଗୁଡ଼ିକ ପାତ୍ରରେ ରଖିଥିଲା । ମହାପୁରୁଷ କାଚଗୁଣ୍ଡ ମାଗିଲେ, କାଚବାଲା କମଣ୍ଡଳୁରେ କାଚ ଭରିଦେଲା, ମହାପୁରୁଷ ସେ ସମସ୍ତ ଖାଇଦେଲେ । ବର୍ତ୍ତମାନ ଶିଷ୍ୟ ଭୟଭୀତ ହୋଇ ପଡ଼ିଲେ । ମହାତ୍ମା କହିଲେ ବାବୁ ! ଏ କାଚ ମଧ୍ୟ ସେବନ କର । ତୁମେ ମୋତେ ଯଦି ଅନୁକରଣ କରିବ ତେବେ ସବୁ କ୍ଷେତ୍ରରେ ଅନୁକରଣ କର ।

ଉପନିଷଦରେ ଋଷିଗଣ କହିଛନ୍ତି—ଯାହା ଆମର ଉତ୍ତମ ଚରିତ ଅଛି ତାହା ଅନୁକରଣ କର । ନିଷିଦ୍ଧ କର୍ମ ପରିତ୍ୟାଗ କର । ସେହିଭଳି ଆଉ ଜଣେ ମହାତ୍ମା ରାସ୍ତାରେ ଚାଲିଯାଉଥିଲେ । ବାଟରେ ତାଙ୍କୁ କେବଳ ମାଛ ମିଳିଲା, ଗୁରୁ ଓ ଶିଷ୍ୟ କ୍ଷୁଧାର୍ତ୍ତ ଥିଲେ । ଗୁରୁ ଯେମିତି ମାଛ ନେଇ ଖାଇଲେ ଶିଷ୍ୟ ବି ମାଛ ଖାଇବାରେ ଲାଗିଲେ । ସେଠାରୁ ଯିବା ପରେ ଗୁରୁ ଶିଷ୍ୟଙ୍କୁ ବହୁତ ଗାଳିଦେଲେ, ଗୁରୁ କହିଲେ —ତୁମେ ଏପରି କାମ କାହିଁକି କରିଲ ? ଶିଷ୍ୟ ଉତ୍ତର ଦେଲେ ମହାରାଜ ! ଆପଣ ଯାହାକଲେ ମୁଁ ତାହାହିଁ କରିଛି, ଗୁରୁ କହିଲେ—ଠିକ୍ ଅଛି, ବର୍ତ୍ତମାନ ମୁଁ ଯେପରି ବମନ କରୁଛି । ଗୁରୁ ବମନ କରିବାମାତ୍ରେ ଜୀବନ୍ତ ମାଛଗୁଡ଼ିକ ବାହାରି ଆସିଲେ । ତାହା ସହିତ କଞ୍ଚାତୁଳସୀ ପତ୍ର ମଧ୍ୟ ବାହାରି ପଡ଼ିଲା; କିନ୍ତୁ ଶିଷ୍ୟ ଯେତେବେଳେ ବମନ କଲେ ସେତେବେଳେ ସେ ସ୍ଥାନ ଭୟଙ୍କର ଦୁର୍ଗନ୍ଧରେ ପୂରିଗଲା । ତାପରେ ଶିଷ୍ୟ ଗୁରୁଙ୍କ ପାଦତଳେ ପଡ଼ି କହିଲା—ପ୍ରଭୋ ! ମୁଁ ଆପଣଙ୍କୁ ନ ପଚାରି ଥରେ ହେଲେ ଆଉ ଏପରି ଆଚରଣ କରିବ ନାହିଁ ।

କେହି କେହି ମହାପୁରୁଷ ଦେଖିଲା ଭଳି ବିରୁଦ୍ଧ ଆଚରଣ ମଧ୍ୟ କରିଥାନ୍ତି । ଭଗବାନ୍ ଦତ୍ତାତ୍ରେୟ ଥିଲେ ସେହିଭଳି ଜଣେ ମହାପୁରୁଷ ।

ମହର୍ଷି ସୂତ କହୁଛନ୍ତି—ହେ ମୁନିଗଣ ! ମହାମୁନି ଅତ୍ରି ଓ ଭଗବତୀ ଅନସୂୟାଙ୍କଠାରେ ତିନି ଦେବତା ଅବତାର ଗ୍ରହଣ କଲେ । ବ୍ରହ୍ମାଙ୍କ ଅଂଶରୁ ଜାତ ଚନ୍ଦ୍ରମା ଲୋକପାଳ ଭାବେ ପରିଚିତ ହେଲେ । ତାଙ୍କ ଭଳି ସୁନ୍ଦର ସଂସାରରେ ଦ୍ୱିତୀୟ କେହି ନ ଥିଲେ । ସେ ରାଜସୂୟ, ବିଶ୍ୱଜିତ ଆଦି ବଡ଼ ବଡ଼ ଯଜ୍ଞ କରି ସମସ୍ତଙ୍କୁ ନିଜର ବଶୀଭୂତ କରିପାରିଥିଲେ । ସେ ପ୍ରଜାପତି ଭାବେ ଚନ୍ଦ୍ରବଂଶର ପ୍ରତିଷ୍ଠା କରିଥିଲେ ।

ଶିବଙ୍କ ଅଂଶରେ ପରମ କ୍ରୋଧୀ ଦୁର୍ବାସା ଜନ୍ମ ହୋଇଥିଲେ । ସେ ଅବି-ବାହିତ ଥିଲେ । ଜନ୍ମହେବାମାତ୍ରେ ସେ ଉନ୍ମତ୍ତ ବ୍ରତ ଧାରଣ କରିଥିଲେ । ପାଗଳଭଳି ଏଆଡ଼େ ସେଆଡ଼େ ବୁଲୁଥିଲେ । ସାମାନ୍ୟ ଅପରାଧରେ ସେ ଅଭିଶାପ ବର୍ଷଣ କରୁଥିଲେ । କାହାକୁ କାହାକୁ ବର ମଧ୍ୟ ଦେଉଥିଲେ; କିନ୍ତୁ ସେ ସଂଖ୍ୟା ଖୁବ୍ କମ୍ । ଅଭିଶାପ ଦେବା ବିଷୟରେ ସେ ଥିଲେ ଜଗତ୍ ବିଖ୍ୟାତ । ଆଜି ବି କୌଣସି କ୍ରୋଧୀ ସାଧୁକୁ ଦେଖିଲେ ଲୋକେ 'ଦୁର୍ବାସା'ବୋଲି କହନ୍ତି । ଦୁର୍ବାଶାଙ୍କ ଅଭିଶାପ-ବିଷୟରେ ଅନେକ କଥା ଅଛି । ସେ ସବୁ ପ୍ରସଙ୍ଗକ୍ରମେ ବର୍ଣ୍ଣିତ ହେବ । ସେ ଅଭିଶାପ ଦ୍ୱାରା ଜୀବର ମଙ୍ଗଳ ସାଧନ କରୁଥିଲେ । ଈଶ୍ୱରଙ୍କ ଅଭିଶାପ ମଧ୍ୟ ବରଦାନ ତୁଲ୍ୟ କାର୍ଯ୍ୟ କରେ । ତେଣୁ ଦୁର୍ବାସାଙ୍କ ଅଭିଶାପ ମଧ୍ୟ କଲ୍ୟାଣ ସାଧନ କରୁଥିଲା; କାରଣ ଶିବଙ୍କ କାର୍ଯ୍ୟ କେବେ ଅଶିବ ବା ଅମଙ୍ଗଳକର ହୁଏ ନାହିଁ ।

ସାକ୍ଷାତ୍ ବିଷ୍ଣୁଙ୍କ ଅଂଶରୁ ଭଗବାନ୍ ଦତ୍ତାତ୍ରେୟ ଜନ୍ମ ହୋଇଥିଲେ । ଜନ୍ମ କାଳରେ ଦେବଗଣ ଦୁନ୍ଦୁଭି ବାଦ୍ୟ ଓ ପୁଷ୍ପବୃଷ୍ଟି ଦ୍ୱାରା ଦତ୍ତାତ୍ରେୟଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ । ତାଙ୍କର ଅପୂର୍ବ ରୂପ ଲାବଣ୍ୟରେ ଲୋକେ ମୁଗ୍ଧ ହୋଇ ଯାଉଥିଲେ । ଜନ୍ମଠାରୁ ସେ ଅବଧୂତ ବେଶ ଧାରଣ କରିଥିଲେ । ସେ ଗାର୍ହସ୍ଥ୍ୟ ଧର୍ମ ପ୍ରତି ଅନାସକ୍ତ ହୋଇ ମନ ଇଚ୍ଛା ଇତସ୍ତତଃ ଭ୍ରମଣ କରୁଥିଲେ । ହଜାର ହଜାର ସ୍ତ୍ରୀ ପୁରୁଷ ତାଙ୍କୁ ଅନୁସରଣ କରୁଥିଲେ । ଥରେ କୌଣସି ଏକ ସରୋବର ଜଳରେ ସେ ସମାଧିମଗ୍ନ ହେଲେ । ବହୁ ଋଷିକୁମାର ଆସି ତାଙ୍କ ପାଖରେ ବାସ କଲେ । ସେ ସେହି ଋଷିକୁମାରମାନଙ୍କୁ କହିଲେ – ମୁଁ ଜଣେ ଅବଧୂତ । ମୋ ପାଖରେ ଆପଣ ମାନଙ୍କର ରହିବା ଅନୁଚିତ । କାରଣ ମୋର ଆଚରଣ ଅଲୌକିକ ତେଣୁ ଆପଣମାନେ କୌଣସି ଶ୍ରୋତ୍ରିୟ ବ୍ରାହ୍ମଣ ଗୁରୁଙ୍କ ପାଖକୁ ଯାଆନ୍ତୁ । ବହୁ ବୁଝାବୁଝି କରିବା ପରେ ମଧ୍ୟ ଯେତେବେଳେ ସେହି ଋଷିକୁମାରମାନେ ତାଙ୍କୁ ପରିତ୍ୟାଗ କରି ଗଲେନାହିଁ, ସେତେବେଳେ ଦତ୍ତାତ୍ରେୟ ମାୟା ରଚନା କଲେ ।

ଭଗବାନ୍ ଦତ୍ତାତ୍ରେୟ ଋଷିକୁମାରମାନଙ୍କୁ ପାଖରେ ରଖିବା ପାଇଁ ଚାହୁଁ ନ ଥିଲେ । ଦିନେ ସମସ୍ତେ ଉପସ୍ଥିତ ଥିବାବେଳେ ଜଣେ ସୁନ୍ଦରୀ ରମଣୀ ସେହି ସରୋବର ଜଳ ମଧ୍ୟରୁ ବାହାରି ଆସିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ନିଷ୍ପଲକ ନୟନରେ ସେହି ଅନିନ୍ଦ୍ୟ ସୁନ୍ଦରୀଙ୍କୁ ଚାହିଁ ରହିଥାନ୍ତି ; କିନ୍ତୁ ଦେବୀ କାହାରି ଆଡ଼କୁ ଚାହୁଁ ନ ଥାନ୍ତି । ସେ ସିଧାସଳଖ ଯାଇ ଭଗବାନ୍ ଦତ୍ତାତ୍ରେୟଙ୍କ ପାଖରେ ବସି ପଡ଼ିଲେ । ସେ ସାକ୍ଷାତ୍ ଲକ୍ଷ୍ମୀଙ୍କ ଅଂଶ ସ୍ୱରୂପ ଥିଲେ । ଭଗବାନ୍ ନିଜର ଯୋଗମାୟା ବଳରେ ତାଙ୍କୁ ସୃଷ୍ଟି କରିଥିଲେ । ସେ ଭାବିଲେ ଯେ ଋଷିକୁମାରଗଣ ଏବେ ମୋତେ ଗୃହସ୍ଥ ଭାବି ସେ ସ୍ଥାନ ଛାଡ଼ି ପଳାଇ ଯିବେ ; କିନ୍ତୁ ଋଷିକୁମାରଗଣ ପ୍ରକୃତରେ ସେଠାରୁ ଗଲେ ନାହିଁ । ଏହାପରେ ଭଗବାନ୍ ଅଖାଦ୍ୟବସ୍ତୁ ଖାଇଲେ, ଅପେୟ ପାନ କଲେ । ଏହା ଦେଖି ଋଷିକୁମାରମାନଙ୍କ ମନ ବଦଳିଗଲା । ସେମାନେ ଭାବିଲେ—ଏ ସାଧୁ ବର୍ତ୍ତମାନ ସଦାଚାରହୀନ ହେଲେ । ଏହାଙ୍କ ପାଖରେ ରହି କରିବା କଣ ? ଏହା ଚିନ୍ତା କରି ସମସ୍ତେ ସେ ସ୍ଥାନ ଛାଡ଼ି ଚାଲିଗଲେ । ଭଗବାନ୍ ତାହା ହିଁ ଚାହୁଁଥିଲେ । ସେମାନେ ଚାଲିଯିବା ପରେ ସେ ଶାନ୍ତିରେ ତପସ୍ୟାରତ ହେଲେ ।

ଭଗବାନ୍ ଦତ୍ତାତ୍ରେୟଙ୍କୁ ପ୍ରସନ୍ନ କରିବା ଅତ୍ୟନ୍ତ କଠିନ କାର୍ଯ୍ୟ । ତାଙ୍କର ଆଚରଣ ଅଲୌକିକ । ତାଙ୍କ ପ୍ରଭାବ ବିଷୟରେ ଅନଭିଜ୍ଞ ବ୍ୟକ୍ତି ପ୍ରଥମେ ସନ୍ଦେହରେ ପଡ଼ି ହତଚକିତ ହୋଇଯିବେ । ସେ ତାଙ୍କ ଭକ୍ତଙ୍କୁ ଅତି କଠୋରଭାବେ ପରୀକ୍ଷା କରନ୍ତି । ତାଙ୍କ ପରୀକ୍ଷାରେ ଖୁବ୍ କମ୍ ଭକ୍ତ ଉତ୍ତୀର୍ଣ୍ଣ ଅନ୍ତି ; କିନ୍ତୁ ଯେ ଉତ୍ତୀର୍ଣ୍ଣ ହୁଏ, ସେ ଏ ସଂସାରର ସମସ୍ତ ଐଶ୍ୱର୍ଯ୍ୟ ଭୋଗ କରିବା ସଙ୍ଗେ ସଙ୍ଗେ ପରିଶେଷରେ ମୋକ୍ଷଲାଭ କରେ ।

ଶୌନକ ମହର୍ଷି ସୂତଙ୍କୁ ପଚାରିଲେ—ଭଗବାନ୍ ! ଅଳ୍ପଜ୍ଞ ଜୀବମାନଙ୍କୁ ଭଗବାନ୍ ଦତ୍ତାତ୍ରେୟ ଏପରି କଠୋରଭାବେ ପରୀକ୍ଷା କରନ୍ତି କାହିଁକି ? ଆଉ ଲୋକ ବିରୁଦ୍ଧ ଆଚରଣ କରୁଥିଲେ କାହିଁକି ? ପ୍ରଶ୍ନର ଉତ୍ତର ଦେବାକୁ ସୂତ କହିଲେ— ମହାଭାଗ ! ଭଗବାନଙ୍କୁ ସବୁ ପ୍ରକାର ଶିକ୍ଷା ଦେବାକୁ ପଡ଼େ । ଏଭଳି ଏକ ସ୍ଥିତି ଆସେ, ଯେତେବେଳେ ଲୋକ, ବେଦ କିଛି ରହେ ନାହିଁ । ବିଧି ଓ ନିଷେଧ ଉଭୟର ଯେଉଁଠି ସମାପ୍ତି ଘଟେ, ସେ ଅବସ୍ଥାର ନାମ ଅବଧୂତ ଅବସ୍ଥା । ଅବଧୂତ ଆଚରଣ କରୁଥିବା ସାଧକ ଏ ସଂସାରରେ ବିରଳ । ଏହି ଅବସ୍ଥା ସାଧନାଦ୍ୱାରା କେବେହେଲେ ସମ୍ଭବ ନୁହେଁ । ଭଗବଦ୍ ଦୟାରୁ ଅନେକ ଜନ୍ମର ସୁକୃତ ଫଳରେ ଏ ଅବସ୍ଥା ସହଜ ଆସିଥାଏ । ଭଗବାନ୍ ଦତ୍ତାତ୍ରେୟ ସେହି ଅବଧୂତ ଅବସ୍ଥାର ଦର୍ଶନ ପ୍ରଦାନ କରିଥିଲେ । ବହୁ ସଂସାରବିରାଗୀଙ୍କୁ ବରଦାନଦ୍ୱାରା ସେହି ଅବସ୍ଥାରେ ସେ ଉପନୀତ

କରାଇଛନ୍ତି । ବ୍ରହ୍ମର୍ଷିଙ୍କୁ ଉପଦେଶ ଦେଇ ଭଗବାନ୍ ଦତ୍ତାତ୍ରେୟ ସେମାନଙ୍କର ମନୋରଥ ପୂର୍ଣ୍ଣ କରିଛନ୍ତି । ସେମାନେ ଏହି ସଂସାରରେ ଯଶସ୍ୱୀ ରାଜା ଭାବେ ପ୍ରସିଦ୍ଧି ଲାଭ କରି ଶେଷରେ ଦତ୍ତାତ୍ରେୟଙ୍କ କରୁଣାରୁ ମୁକ୍ତିଲାଭ କରିଛନ୍ତି । ଭଗବାନ୍ ଭକ୍ତି ଓ ମୁକ୍ତି ଉଭୟ ଦାନ କରିଥାନ୍ତି ।

ଶୌନକ ପଚାରିଲେ—ଭଗବାନ୍ ଦତ୍ତାତ୍ରେୟଙ୍କବର ପ୍ରଦାନ ଦ୍ୱାରା କିଏ କିଏ ସିଦ୍ଧିଲାଭ କରିଛନ୍ତି ତାହା ଶୁଣାଇ ଆମର ଉତ୍କଣ୍ଠା ଦୂର କରନ୍ତୁ । ଏହି ଶୁଣି ମହର୍ଷି ସୂତ କହିଲେ—ଭଗବାନ୍ ଦତ୍ତାତ୍ରେୟ ଅସଂଖ୍ୟ ଜୀବଙ୍କୁ ଉଦ୍ଧାର କରିଛନ୍ତି । ତନ୍ମଧ୍ୟରୁ ଦୁଇ ଚାରୋଟି ମୁଖ୍ୟ ପ୍ରସଙ୍ଗ ସଂକ୍ଷେପରେ କହୁଛି । ଆପଣମାନେ ପ୍ରକୃତିସ୍ଥ ହୋଇ ଭଗବାନ୍‌ଙ୍କ ଚରିତ ଶ୍ରବଣ କରନ୍ତୁ ।

## ଛପ୍ପୟ

ଦତ୍ତଦେବ ବପୁ ପରମ ସୁଘଡ଼ ସୁନ୍ଦର ସୁଠି ସୋହତ ।
ଜନୁ ସୌନ୍ଦର୍ଯ୍ୟ ଶରୀର ଧରେଁ ଦୂମେ ଜଗ ମୋହତ ॥
ଏକ ବାର୍ ଜୋ ଲଖୈ ସଙ୍ଗ ସୋ ଫିର୍ ନହିଂ ଛୋଡ଼ତ ।
ମାତୁ ପିତା ଘର କୁଟୁମ୍ବ ସବନ ତେ ମୁଖ କୁଁ ମୋଡ଼ତ ॥
ଖାୟଁ ଅଖାଦ୍ୟ ପଦାରଥନ, ମାୟା ରଚ କୌତୁକ କରହିଁ ।
ଜାନି ଅଘୋରୀ ଶୁଚ ରହିତ ରଷି କୁମାର ସଙ୍ଗତେ
ଭଗହିଁ ॥

### ସ ମା ପ୍ତ

ସଦାନନ୍ଦ ପ୍ରିଣ୍ଟିଂ ପ୍ରେସ୍, ମଧୁସୂଦନ ନଗର, ତୁଳସୀପୁର, କଟକ-୮